# ଜୀବନ ଜଗନ୍ନାଥ



## ଆର୍ଯ୍ୟପଦ୍ମ ଶ୍ରୀ ବୀରବର ଦାଶ

# ଜୀବନ କଲ୍ଲୋଳ

( ଆତ୍ମଜୀବନ ଚରିତ )



ବୀରବର ଦାଶ

# ଜୀବନ କଲ୍ଲୋଳ
(ଆତ୍ମଜୀବନ ଚରିତ)

ଲେଖକ ଓ ପ୍ରକାଶକ
ଆର୍ଯ୍ୟପଦ୍ମ **ଶ୍ରୀ ବୀରବର ଦାଶ**
ଶିବାନନ୍ଦ ନଗର, ବରଗଡ଼
ଜି: ସମ୍ବଲପୁର, ୭୬୮୦୨୮

ମୁଦ୍ରଣ
**ଶରତ ଚନ୍ଦ୍ର ପାତ୍ର**
ପାତ୍ର ପ୍ରିଣ୍ଟିଂ ପ୍ରେସ୍
ଅତାବିରା - ୭୬୮୦୨୭

ପ୍ରଥମ ସଂସ୍କରଣ - ୧୯୮୯
(ଅଗଷ୍ଟ ପନ୍ଦର)

ମୂଲ୍ୟ : ଟ. ୩୦-୦୦
(ତିରିଶ ଟଙ୍କା)



ପ୍ରଚ୍ଛଦ ଅଙ୍କନ :
**ଶ୍ରୀ ଧରଣୀଧର ବିଶ୍ୱାଳ**
ରେଢ଼ିଖିଆଁ, ବରଗଡ଼

**JEEBAN KALLOLA**
( A autobiography )

Author & Publisher :
Aryapadma SRI BIRABAR DASH
Sivananda Nagar, Bargarh
Dist. Sambalpur, 768028

Cover Artist :
DHARANIDHAR BISWAL

First Edition : 1939
( 15th August )

Printer :
SHARAT CHANDRA PATRA
Patra Printing Press, Attabira

Price - Rs. **30/-**
( Thirty only )

# ଉତ୍ସର୍ଗ



୰ କୃତ୍ତିବାସ ଦାଶ　　　　୰ କୌଶଲ୍ୟା ଦେବୀ

ହେ ସ୍ୱର୍ଗତ ପିତାମହ କୃତ୍ତିବାସ ଦାଶ
　　　　ପିତାମହୀ କଉଶଲ୍ୟା ଦେବୀ
ପାଇ ମୁହଁ ତବ ସ୍ନେହ, ଆଶୀର୍ବାଦ ଯାହା
　　　　ବିନିମୟେ ତା'ର ଆଜି ଜଣାଏ ପ୍ରଣତି ।
ଲେଖିଅଛି ଏହି ଗ୍ରନ୍ଥ ମୋ ଜୀବନୀ ଯାହା
　　　　ଅର୍ପୁଅଛି ଚରଣେ ତୁମ୍ଭରି ।
ଗଙ୍ଗାଜଳେ ଗଂଗାକୁ ଯେପରି କରନ୍ତ ଅର୍ଚ୍ଚନା
　　　　ଅର୍ଚ୍ଚୁଅଛି ତୁମ୍ଭଙ୍କୁ ସେପରି ।
ତବ ଜୀବନର ଗାଥା ଏ ଗ୍ରନ୍ଥରେ ହୋଇଛି ଗ୍ରଥିତ
　　　　ଅଧିକାଂଶ, ଯେଣୁ
ଭକ୍ତିପ୍ଳୁତ ପ୍ରାଣେ ସେହିକଥା ସବୁ ଅର୍ପୁଛି ଚରଣେ ତବ
　　　　ବିଞ୍ଚିଦିଅ ମୋ ମସ୍ତକେ ଶୁଭାଶିଷ-ରେଣୁ ।

ବରଗଡ
ତା ୨୭-୬-୮୯

ପ୍ରଣତ
**ବୀରବର**

# ଭୂ ମି କା

ଜୀବନୀ ପୁସ୍ତକର ସଂଖ୍ୟା ଓଡ଼ିଆ ସାହିତ୍ୟରେ ଅଧିକ ନୁହେଁ । ସେଥିଁ କେତେକ ଜୀବନୀ ଗ୍ରନ୍ଥ ଦେଖିବାକୁ ମିଳେ ସେଥିରେ ସାଧାରଣତଃ ଦୁଇ ପ୍ରକାର ଜୀବନୀ ପୁସ୍ତକ ଯଥା ଅନ୍ୟର ଜୀବନୀ ଅନ୍ୟ ଜଣକ ଦ୍ୱାରା ଲିଖିତ ଏବଂ ଅପର ଗୋଟିକ ସଂପୃକ୍ତ ବ୍ୟକ୍ତି ନିଜେ ନିଜର ଜୀବନୀ ଲେଖି ଯାଇଥାନ୍ତି । ପ୍ରଥମଟିର ଲେଖା ନିମିତ୍ତ ସଂପୃକ୍ତ ବ୍ୟକ୍ତି ବିଶେଷଙ୍କ ସମ୍ବନ୍ଧେ ବିବରଣୀ ସଂଗ୍ରହ ଅତ୍ୟନ୍ତ କଷ୍ଟସାଧ୍ୟ । ଦ୍ୱିତୀୟ ପ୍ରକାର ଜୀବନୀ ପୁସ୍ତକର ସ୍ୱଳ୍ପତା ନିମିତ୍ତ ସଂପୃକ୍ତ ବ୍ୟକ୍ତି ବିଶେଷଙ୍କ ସଙ୍କୋଚ ବୋଧ ।

ନିଜ ସମ୍ବନ୍ଧେ ନିଜେ ଲେଖିବା ଅର୍ଥ 'ନିଜେ ଢୋଲ ପିଟି ନିଜର ପ୍ରଚାର' କରିବା ନୀତି ଭବି ଅନେକେ ଜାଣିଶୁଣି ଅପସରି ଯାଇଥା'ନ୍ତି ।

ଉପରୋକ୍ତ କାରଣ ଦୁଇଟି ହେଲା ଜୀବନୀ ସାହିତ୍ୟ ଗ୍ରନ୍ଥର ସ୍ୱଳ୍ପତାର କାରଣ ବୋଲି ମୁଁ ମନେ କରେ । ଅବଶ୍ୟ ଏହି ମତ ମୋର ସଂପୂର୍ଣ୍ଣ ବ୍ୟକ୍ତିଗତ । ସମଷ୍ଟିଗତ ଭବେ ଏଥିର ଆଉ ବି କିଛି କାରଣ ଥାଇପାରେ ।

ଏହି ପୁସ୍ତକରେ ମୁଁ ମୋର ଜୀବନୀ ଲେଖିଛି ସତ୍ୟ କିନ୍ତୁ ମୋ ଜୀବନୀ ଅପେକ୍ଷା ମୋର ପବିତ୍ର ବଂଶର ପୂର୍ବସୂରୀ ମାନଙ୍କ ବିଷୟ ଏଥିରେ ଅପେକ୍ଷାକୃତ ଅଧିକ ଭବେ ସ୍ଥାନ ପାଇଛି । ତାପର ମୋର ପ୍ରିୟ ଜନ୍ମଭୂମି ରେମଣ୍ଡା ଗ୍ରାମର ଉତ୍ପତ୍ତି, ତହିଁର ନାମକରଣ, ସେଥିରେ ଥିବା ବୃହତ୍ ପୁଷ୍କରିଣୀ; ମଠର ଆଦିର ଅବଲୁପ୍ତମାନ ଐତିହ୍ୟ ପ୍ରଦାନ କରିବା ଏକ ଅପରିହାର୍ଯ୍ୟ କର୍ତ୍ତବ୍ୟ ବୋଧ କରି ତାକୁ ସ୍ଥାନ ଦେଇଛି ।

ଉଭୟଥା ପୁସ୍ତକ ଲିଖନର ଆଭିମୁଖ୍ୟ ଥିବା ଦୃଷ୍ଟିରୁ କୁସୁମ ପରଶେ ପଟ ନିସ୍ତରେ ନୀତିରେ ମୁଁ ତହିଁରେ ମୋର ଜୀବନୀକୁ ଯୋଡ଼ ଦେବାର ପ୍ରୟାସ କରିଛି ମାତ୍ର ।

ତ୍ରୁଟୀ ବିଚ୍ୟୁତି ପାଇଁ ପାଠକ ପାଠିକା କ୍ଷମା ଦେବେ ବୋଲି ଆଶା ।

ବରଗଡ

ତା ୨୭-୬-୮୯

ବୀରବର ଦାଶ

# ସୂଚୀପତ୍ର

# ଜୀବନ କଲ୍ଲୋଳ

ବହୁ ଦିନର କଥା । ପୁରୀ ଜିଲ୍ଲାର ବୀର ରାମଚନ୍ଦ୍ରପୁର ଶାସନ । ବହୁ ଦିବସାବଧି ଉକ୍ତ ଗ୍ରାମରେ ବସବାସ କରି ରହି ଆସିଥାନ୍ତି ଏକ ନୈଷ୍ଠିକ, ତାନ୍ତ୍ରିକ ତଥା କୌଳିକ ଉତ୍କଳୀ ବ୍ରାହ୍ମଣ ପରିବାର । ଉକ୍ତ ପରିବାରରୁ ଜାତ ଜନୈକ ବିଂଶତି ବର୍ଷୀୟ ଯୁବକ ନାମ ଦୟାନିଧି ଦାଶ । କୌଣସି ଏକ ଅପ୍ରତ୍ୟାଶିତ ଘଟଣାରେ ମୂହ୍ୟମାନ ହୋଇ ଚାଲି ଆସନ୍ତି ଗୃହରୁ ନିରୁଦ୍ଦିଷ୍ଟ ଭାବେ ।

ଓଡ଼ିଶା ଭୂମିରେ ଉତ୍ତର ପୂର୍ବାଭିମୁଖୀ ହୋଇ ଆଗୁ ଆଗୁ କ୍ରମେ ସେ ପହଞ୍ଚି ଥିଲେ କଳାହାଣ୍ଡି ଜିଲ୍ଲାର ମଦନପୁର - ରାମପୁରରେ । ରାମପୁରରେ ପହଞ୍ଚି ସେଠାରେ ପ୍ରଥମେ ଜନୈକ ବ୍ରାହ୍ମଣ ଗୃହରେ ଆଶ୍ରୟ ପ୍ରାର୍ଥୀ ରୂପେ କିଛି ଦିନ ଅବସ୍ଥାନ କରିଥିଲେ । ସେଠା ଜନ ସାଧାରଣଙ୍କ ସହିତ କ୍ରମଶଃ ତାଙ୍କର ପରିଚୟ ଘଟିଲା ଏବଂ ସେଠାରେ ଏକ ଚାଟଶାଳୀ ଖୋଲି କେତେଜଣ ବାଳକଙ୍କୁ ନେଇ ପାଠ ପଢ଼ା ଆରମ୍ଭ କରିଦେଲେ । ପାଠ ପଢ଼ାଇବା ସଙ୍ଗେ ସଙ୍ଗେ ମଧ୍ୟେ ମଧ୍ୟେ ସେ କେତେକ ସଙ୍ଗତି ସମ୍ପନ୍ନ ବ୍ୟକ୍ତିଙ୍କ ଘରେ ପୁରୋହିତ କର୍ମାଦି କରି ଅଳ୍ପକାଳ ମଧ୍ୟରେ ସମସ୍ତଙ୍କ ନିକଟରେ ତାଙ୍କର କର୍ମକର୍ମାଣୀ ଦିଗରେ ନିଷ୍ଠାପରତା ପ୍ରସାର ଘଟିଲା । ସୌଭାଗ୍ୟ ବଶତଃ ତତ୍କାଳୀନ ରାମପୁର ରଜା ଘରେ ସେ ରାଜ ପୁରୋହିତ ରୂପେ ଅବସ୍ଥାପିତ ହୋଇ ପଡ଼ିଲେ ।

ରାଜ ପରିବାର ସହ ସଂଶ୍ଳିଷ୍ଟ ରହି କ୍ରମେ ସେ ରାଜାଙ୍କର ବିଶ୍ୱାସ ଭାଜନ ହୋଇଥିଲେ । ରଜା ଦୟାନିଧି ଦାଶଙ୍କ ବୁଦ୍ଧି ବିଚକ୍ଷଣତା ପ୍ରଦର୍ଶନ କରି ପରେ ତାଙ୍କୁ ରାଜ୍ୟର ଦେଓ୍ୱାନ ରୂପେ ନିଯୁକ୍ତି ପ୍ରଦାନ କରିଥିଲେ ।

ଦୟାନିଧିଙ୍କ ଦେଓ୍ୱାନି ଗିରି ସମୟରେ ରାଜ୍ୟର ଯଥେଷ୍ଟ ଉନ୍ନତି ସାଧିତ ହୋଇଥିଲା । ସେ ଯେପରି ବିଦ୍ୱାନ ଏବଂ ଗମ୍ଭୀର ପ୍ରକୃତିର ଥିଲେ, ଶାସନ କ୍ଷେତ୍ରରେ ମଧ୍ୟ ସେ ନିଜର ନିଷ୍ଠାପରତା ତଥା ବୁଦ୍ଧି ବିଚକ୍ଷଣତା ଯୋଗୁ ଅଳ୍ପ ସମୟ ମଧ୍ୟରେ ରଜା ତଥା ଜନ ସାଧାରଣଙ୍କର ପ୍ରିୟପାତ୍ର ହୋଇ ଉଠିଲେ ।

ଏହିପରି ଭାବେ ବହୁବର୍ଷ ବିତିଗଲା । ନାନାବିଧ ସୁଖ ସ୍ୱଚ୍ଛନ୍ଦ୍ୟ ମଧ୍ୟରେ ରହି କ୍ରମେ ଦିନାତିପାତ କରିବାକୁ ଲାଗିଲେ । ଦୁର୍ଭାଗ୍ୟବଶତଃ ଦିନକରେ ରାଜାଙ୍କ ସହିତ ଏକ ସାମାନ୍ୟ ଘଟଣା ନେଇ ତାଙ୍କର ମତାନୈକ୍ୟ ଘଟିଲା ଫଳରେ

ଦୟାନିଧି ବାବୁ ଅପ୍ରତ୍ୟାଶିତ ଭବେ ଉକ୍ତ ଦେଓ୍ୱାନି ପଦ ପରିତ୍ୟାଗ କରି ଦେଇ ସମ୍ବଲପୁର ଜିଲ୍ଲାକୁ ଚାଲି ଆସିଥିଲେ ।

ଦୟାନିଧି ଦାଶଙ୍କ ଦେଓ୍ୱାନି ପଦ ତ୍ୟାଗ ସମ୍ବନ୍ଧରେ ଯେଉଁ ଘଟଣା ଘଟିଥିଲା ସେ ତାହା ତାଙ୍କର ଏକ ତାଳପତ୍ର ପୋଥିରେ ଉଲ୍ଲେଖ କରି ଯାଇ ଅଛନ୍ତି । ତହିଁର ମର୍ମ ହେଉଛି ଏହା ଯେ ସେ ସାଧାରଣତଃ କେତେକ ବିଶିଷ୍ଟ ଧରଣର ପଶୁ ପକ୍ଷୀଙ୍କି ବିଶେଷ ଭଲ ପାଆନ୍ତି । ତେଣୁ ସେ ତାଙ୍କ ନିଜ ଘରେ ଯେତେ ଗୋଟି ପଶୁ ପକ୍ଷୀଙ୍କି ପାଳି ରଖିଥିଲେ ସାଧାରଣ କଥାରେ କହିବାକୁ ଗଲେ ତାହା ଏକ ଛୋଟ ଧରଣର ଚିଡ଼ିଆଖାନା ବୋଇଲେ ମଧ୍ୟ ଚଳିପାରେ । ଗୋଟିଏ ପ୍ରକାର ମୃଗ, ମୟୂର, ମଇନା, ମାର୍ଜାର, ମୂଷିକ, ଶୁକପକ୍ଷୀ, ଶାରୀ, ଭୃଙ୍ଗରାଜ ଆଦି ପଶୁପକ୍ଷୀ ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ ।

ସେ ପୋଷିଥିବା ଶୁକ ପକ୍ଷୀ ଗୋଟିକ କେତେ ଗୁଡ଼ାଏ ଭଜନ ଏବଂ ସଂସ୍କୃତ ଶ୍ଳୋକ ସୁନ୍ଦର ଭବେ ବୋଲି ପାରୁଥିଲା । ତାଙ୍କ ଘରକୁ ଆସୁଥିବା ତାଙ୍କର ବନ୍ଧୁ ବାନ୍ଧବ ତଥା ପଡ଼ା ପଡୋଶୀର ଲୋକେ ତାହା ଶୁଣି ଶୁକ ପକ୍ଷୀଟିର ଭୂୟସୀ ପ୍ରଶଂସା କରୁଥାନ୍ତି । କ୍ରମେ ଯେହି କଥା ଲୋକ ମୁଖରୁ ଯାଇ ରଜାଙ୍କ କାନରେ ପଡ଼ିଲା । ଘଟଣାର ସତ୍ୟାସତ୍ୟ ବୁଝିବା ପାଇଁ ରଜା ଦିନେ ଦେଓ୍ୱାନଙ୍କ ବାସଗୃହ ପଡୁଥିବା ରାଜଦାଣ୍ଡରେ ଦେଓ୍ୱାନଙ୍କ ସହ ଯାଇ ଦେଓ୍ୱାନଙ୍କ ବାସଗୃହ ନିକଟରେ କିଛି ସମୟ ଛିଡ଼ା ହୋଇ ଶୁକ ପକ୍ଷୀଟିର ପଠନ ଶୁଣି ପାରିଥିଲେ ଏବଂ ବିଶେଷ ମୁଗ୍ଧ ହୋଇ ପଡ଼ିଥିଲେ ।

ତତ୍ ପରବର୍ତ୍ତୀ ଦିନ ରାଜ ଦରବାରରେ ରଜା ଦେଓ୍ୱାନଙ୍କର ଶୁକ ପକ୍ଷୀଟିର ପଠନ ବୃତ୍ତାନ୍ତ ସମସ୍ତଙ୍କୁ ଜଣାଇବା ସଙ୍ଗେ ସଙ୍ଗେ ଉକ୍ତ ଶୁକ ପକ୍ଷୀଟିକୁ ତାଙ୍କୁ ଦେଇ ଦେବାକୁ ଦୟାନିଧି ବାବୁଙ୍କୁ କହିଲେ । ଦେଓ୍ୱାନ କିନ୍ତୁ ଏଥିରେ ରାଜି ହେଲେ ନାହିଁ । ଛାର ଗୋଟିଏ ଶୁକ ପକ୍ଷୀ ପାଇଁ ରଜା ଓ ଦେଓ୍ୱାନଙ୍କ ମଧ୍ୟରେ ସାମାନ୍ୟ ମତଭେଦ ଦେଖା ଦେଇଥିଲା । ଫଳରେ ଦେଓ୍ୱାନ ଦୟାନିଧି ରତା-ରତି ଦେଓ୍ୱାନିଗିରି ପଦ ତ୍ୟାଗ କରି କଳାହାଣ୍ଡି ସୀମା ପାର ହୋଇ ସମ୍ବଲପୁର ଜିଲ୍ଲାରେ ପହଞ୍ଚି ସ୍ୱସ୍ତିର ନିଃଶ୍ୱାସ ମାରିଥିଲେ ।

ସମ୍ବଲପୁର ଜିଲ୍ଲାକୁ ଆସି ପ୍ରଥମେ ସେ ବରପାଲିରେ ଜନୈକ ମିଶ୍ର ପରିବାରରେ ଆଶ୍ରୟ ଗ୍ରହଣ କରି ରହିଲେ । କେତେକ ମାସ ପରେ ମିଶ୍ର ପରିବାର ତାଙ୍କର ସତର ଶହ ଟଙ୍କା ଅପହରଣ କରି ନେଇଗଲେ । ତାହା ଜାଣିପାରି ଦୟାନିଧିଙ୍କ ମନରେ ଭୀଷଣ ମନସ୍ତାପ ଜାତହେଲା । ତେଣୁ ସେ ସେଠାରେ ଆଉ ରହିବାକୁ ଇଚ୍ଛା ନ କରି ସମ୍ବଲପୁର ଅଭିମୁଖେ ପ୍ରସ୍ଥାନ କଲେ । ଏହି ଘଟଣା

୧୭୫୫ ସାଲରେ ଘଟିଥିବାର ଏକ ତାଳପତ୍ର ଖେଦାରେ ଉଲ୍ଲେଖ ରହିଛି । ଯେଉଁଥିରେ ଲେଖାଅଛି—

ସତର ପଞ୍ଚାବନ ସାଲ
ବସନ୍ତ ଋତୁ ସୁ ନିର୍ମଳ
ଫଗୁଣ ମାଘ କୃଷ୍ଣପକ୍ଷ
ପଣ୍ଡିତ ବାସର ବିଶେଷ
ବରପାଲିରୁ ଆସି ଜାଣ
ଭେଟିଲି ସମ୍ବଳ-ନରେଶ
ଅଜିତ ସିଂହ ଦେବ ରଜା
ସୁଖେ ପାଳନ୍ତି ଜନ ପ୍ରଜା
ଦକ୍ଷିଣ ରାୟଟି ଦେବାନ
ସନ୍‌ମାନ କଲେକ ପ୍ରଦାନ ।

× × ×

ସମ୍ବଲପୁରରେ ସେହି ସମୟରେ ଅଜିତ ସିଂହ ନାମରେ ଜଣେ ରଜା ରାଜୁତି କରୁଥାନ୍ତି । ସମ୍ବଲପୁର ସହରଠାରୁ ୭/୮ ମାଇଲ ବ୍ୟବଧାନରେ ଥିବା ଶାସନ ଗ୍ରାମଟିର ପୂର୍ଣ୍ଣନାମ ଅଜିତପୁର ଶାସନ ଅଟେ । ରଜା ଅଜିତ ସିଂହ ପୁରୀ ଜିଲ୍ଲାରୁ ବିଦ୍ୱାନ ବ୍ରାହ୍ମଣଗଣଙ୍କୁ ଅଣାଇ ଏହି ଗ୍ରାମରେ ରଖିଥିଲେ । ପୁରୀ ଜିଲ୍ଲାସ୍ଥିତ ୧୬ ଶାସନ ଓ ୩୨ କରବାଡ ଢାଞ୍ଚାରେ ଏହି ଗ୍ରାମଟିକୁ ଗଢ଼ିବା ତାଙ୍କର ଅଭିଳାଷ ଥିଲା । ସେଥିସକାଶେ କେତେକ ନିଷ୍କର ଭୂମି ଆଗନ୍ତୁକ ବ୍ରାହ୍ମଣମାନଙ୍କୁ ଦେଇ ସେ ଏହି ଗ୍ରାମଟିକୁ ବସାଇଥିଲେ । ଏବେ ମଧ୍ୟ ଏହି ଗ୍ରାମରେ ବାସ କରୁଥିବା ବ୍ରାହ୍ମଣ ଗଣଙ୍କ ଆଚାର ବ୍ୟବହାର, ସାମାଜିକ ଚଳି ଚଳଣୀ ପୁରୀ ଜିଲ୍ଲାର ଶାସନୀ ବ୍ରାହ୍ମଣ ମାନଙ୍କର ଅନୁରୂପ ଅଟେ ।

ରଜା ଅଜିତ ସିଂହ ୧୬୯୫ ଖ୍ରୀ:ରୁ ୧୭୬୬ ଖ୍ରୀ: ପର୍ଯ୍ୟନ୍ତ ସମ୍ବଲପୁରରେ ନରପତି ଥିଲେ । ତାଙ୍କ ଦରବାରରେ ଦକ୍ଷିଣ ରାୟ ନାମରେ ଜଣେ ଦେଓ୍ୱାନ ଥାନ୍ତି । ରାଜ ପରାମର୍ଶଦାତା ରୂପେ ତାଙ୍କୁ ମିଶାଇ ଆଠଜଣ ପାରିଷଦ ଥିଲେ । ସେମାନଙ୍କ ସହ କଳାହାଣ୍ଡିରୁ ଆଗତ ଦେଓ୍ୱାନ ଦୟାନିଧିଙ୍କୁ ରାଜ ପରାମର୍ଶଦାତା ରୂପେ ସସମ୍ମାନେ ନିଆଗଲା । ଫଳରେ ଦକ୍ଷିଣ ରାୟ ମୁଖ୍ୟ ରହିଲେ ଏବଂ ପରି-ଷଦର ସଂଖ୍ୟା ଆଠ ହେଲା । ଦେଓ୍ୱାନଙ୍କ ସମେତ ସମଗ୍ର ୯ ଜଣ ପାରିଷଦ ରହି ରଜାଙ୍କୁ ଶାସନ କାର୍ଯ୍ୟରେ ସହାୟତା କରିବାକୁ ଲାଗିଲେ ।

ରଜା ଅଜିତ ସିଂହ ପୁରୀରେ ବିବାହ ହୋଇଥିଲେ । ତେଣୁ ଅଧିକାଂଶ

ସମୟ ସେ ପୁରୀରେ ଅବସ୍ଥାନ କରୁଥାନ୍ତି । ତାଙ୍କର ଅନୁପସ୍ଥିତିରେ ରାଜ୍ୟ ପରିଚାଳନାରେ ଯେପରି କୌଣସି ପ୍ରତିବନ୍ଧକ ଦେଖା ନ ଦେବ ଏବଂ ଦକ୍ଷିଣ ରାୟ ଦେଓ୍ୱାନ ଯେପରି କ୍ଷମତାଲିପ୍ସୁ ନ ହୋଇ କୌଣସି ଅହେତୁକ କାର୍ଯ୍ୟ କରି ନ ବସିବେ ସେଥିପାଇଁ ତାଙ୍କୁ ନିୟନ୍ତ୍ରିତ କରିବାକୁ ଏହି ଆଠଗଡ଼ଣ ବ୍ୟକ୍ତିଙ୍କୁ ରାଜା ଅଜିତ ସିଂହ ପରାମର୍ଶଦାତା ରୂପେ ବ୍ୟବସ୍ଥିତ କରି ରଖିଥାଆନ୍ତି ।

ସୋମଲାଈ ମନ୍ଦିରକୁ ଲାଗିକରି ଏକ ସୁନ୍ଦର ଉଦ୍ୟାନ ଥାଏ । ରାଜା ଅଜିତ ସିଂହଙ୍କ ନିର୍ଦ୍ଦେଶକ୍ରମେ ତହିଁରେ ଏକ ବାସଗୃହ ଦୟାନିଧିଙ୍କ ସକାଶେ ନିର୍ମିତ ହେଲା ଏବଂ ଦୟାନିଧି ଦାଶ ଉକ୍ତ ଗୃହରେ ସପରିବାର ବାସ କରି ରହିଲେ ।

ଦୟାନିଧି ଥିଲେ ଜଣେ ତାନ୍ତ୍ରିକ । ତନ୍ତ୍ର ଶାସ୍ତ୍ରରେ ତାଙ୍କର ଅସାଧାରଣ ନୈପୁଣ୍ୟ ଥାଏ । ସମ୍ବଲପୁରକୁ ଆସି କ୍ରମେ ସେ ମା ସୋମଲାଈଙ୍କର ଜଣେ ପରମ ଭକ୍ତ ରୂପେ ପରିଗଣିତ ହୋଇଗଲେ । ସୋମଲାଈଙ୍କୁ ସେ ପ୍ରତିଦିନ ଗୋଟିଏ ଲେଖା ଛାଗ ବଳି ଦେଉଥାନ୍ତି ।

ରାଜା ଅଜିତ ସିଂହଙ୍କ ଆହ୍ୱାନକ୍ରମେ ଥରେ ସେ ପୁରୀ ଯାଇଥାନ୍ତି । ତାଙ୍କର ପୁରୀ କ୍ଷେତ୍ରରେ ଅବସ୍ଥାନ କାଳରେ ଦେବୀଙ୍କୁ ବଳିଦେବା କଥା ନେଇ ଏକ ସମସ୍ୟା ଦେଖାଦେଲା । କାରଣ ପୁରୀ କ୍ଷେତ୍ରର ମନ୍ଦିର ପାର୍ଶ୍ୱବର୍ତ୍ତୀ କେତେକ ସ୍ଥାନରେ ବଳି ଦିଆଯାଇ ପାରେନା । ଦାଶଙ୍କ ମୁଖରୁ ବଳି କଥା ଶୁଣି ରାଜା ଅଜିତ ସିଂହ ଦ୍ୱିଧାଗ୍ରସ୍ତ ହୋଇ ପଡ଼ିଲେ । ପରିଶେଷରେ ମୁକ୍ତିମଣ୍ଡପ ପଣ୍ଡିତ ସଭା ଏକଥା ନେଇ ବିଚାର କଲେ । ବିଚାରରେ ସ୍ଥିର ହେଲା ଯେ ସେ କେତେ ବଡ ତାନ୍ତ୍ରିକ ଏବଂ ତାଙ୍କ ମନ୍ତ୍ରଶକ୍ତି କେତେଦୂର ଶକ୍ତିଶାଳୀ ତାହାର ପରଖ କରିବା ପାଇଁ ତାଙ୍କୁ ପଥର ନିର୍ମିତ ଏକ ଛାଗ ଦିଆଯାଉ । ସେ ତାଙ୍କ ଦେବୀଙ୍କୁ ତାହା କାଟି ବଳି ଦିଅନ୍ତୁ । ସଭାର ନିଷ୍ପତ୍ତିକ୍ରମେ ଦାଶଙ୍କ ଆଗରେ ଗୋଟିଏ ପ୍ରସ୍ତର ଛାଗ ରଖାଗଲା । ଦାଶେ ଏଥିରେ ଟିକିଏ ବି ବିଚଳିତ ନ ହୋଇ ସମସ୍ତଙ୍କ ସମକ୍ଷରେ ମନ୍ତ୍ରପୂତ ଖଡ୍ଗ ସାହାଯ୍ୟରେ ଏକା ଚୋଟକେ ପ୍ରସ୍ତର ଛାଗଟିର ମସ୍ତକ ଛେଦନ କରି ଦେଲେ । ଝର ଝର ହୋଇ ରକ୍ତ ବହିଗଲା । ଉକ୍ତ ରକ୍ତକୁ ସେ ମା ସୋମଲାଈଙ୍କୁ ଭକ୍ତି ସହକାରେ ଅର୍ପଣ କରି ଦେଲେ । ଦୟାନିଧିଙ୍କର ତନ୍ତ୍ର ବିଦ୍ୟାର ନିଷ୍ଠା ସେହିଦିନ ପ୍ରମାଣିତ ହୋଇଗଲା ।

ଦୟାନିଧି ବଳି ପାଇଁ ଯେଉଁ ଖଣ୍ଡା ବ୍ୟବହାର କରୁଥିଲେ ତାହା ଏବେ ମଧ୍ୟ ତାଙ୍କ ଦାୟାଦ ଗଣ ରେମଣ୍ଡା ଗ୍ରାମରେ ଘରେ ରଖି ପୂଜା କରୁ ଅଛନ୍ତି ।

ଦୟାନିଧିଙ୍କ ମୃତ୍ୟୁ ସମ୍ବଲପୁରରେ ୧୭୮୦ ଖ୍ରୀ: ରେ ହୋଇଥିଲା । ତାଙ୍କର ମୃତ୍ୟୁ ପରେ ତଦୀୟ ପୁତ୍ର ବିଶ୍ୱନାଥ ସମ୍ବଲପୁରରେ ଆଉ ନ ରହି କାଦୋବାହାଲ ଗ୍ରାମକୁ ଚାଲି ଆସି ସେଠାରେ ରହିଥିଲେ । ୧୮୩୦ ଖ୍ରୀ: ରେ ବିଶ୍ୱନାଥଙ୍କର ଦେହାବସାନ ଘଟିଥିଲା । ବିଶ୍ୱନାଥଙ୍କ ମୃତ୍ୟୁ ପରେ ତଦୀୟ ପୁତ୍ର ରାମଚନ୍ଦ୍ର ଦାଶଙ୍କ ପତ୍ନୀ ବିୟୋଗ ଘଟିବାରୁ ସେ କାଦୋବାହାଲରୁ ରେମଣ୍ଡା ଗ୍ରାମକୁ ଚାଲି ଆସି ରହିଲେ । ତଦବଧି ଦୟାନିଧି ଦାଶଙ୍କ ଉପାର୍ଜିତ ସମ୍ପତ୍ତିର କୌଣସି ହ୍ରାସତା ଘଟି ନ ଥିଲା । ଅତି ସଙ୍ଗତି ସମ୍ପନ୍ନ ବ୍ୟକ୍ତି ପରି ରାମଚନ୍ଦ୍ର ଚଳି ଆସୁଥିଲେ । ରେମଣ୍ଡା ଆସିବା ସମୟରେ ଅନ୍ୟାନ୍ୟ ଅସ୍ଥାବର ସମ୍ପତ୍ତି ସହ ସେ ନିଜ ସଙ୍ଗରେ ୨୬ ଗୋଟି ଘୋଡା ଆଣିଥିଲେ ।

ରେମଣ୍ଡାରେ ପହଞ୍ଚି ସେ ଦ୍ୱିତୀୟ ଦାର ପରିଗ୍ରହ କଲେ । ଏକ କୁଳୀନ ଧନୀ ବ୍ୟକ୍ତି ଆଦିକନ୍ଦ ଶତପଥୀଂକ ଫୁଲ ନାମ୍ନୀ ଏକ କନ୍ୟାକୁ ରାମଚନ୍ଦ୍ର ବିବାହ ହୋଇଥିଲେ । ଆଦିକନ୍ଦ ସ୍ୱୀୟ ଜାମାତାଙ୍କୁ ରାଜକୀୟ ଢଙ୍ଗରେ ବିବାହ କରାଇ ଯୌତୁକ ସ୍ୱରୂପ ରେମଣ୍ଡା ଗ୍ରାମରେ ଥିବା ତାଂକର ଏକ ବାସଗୃହ ଏବଂ ୬ ଏକର ପରିମିତ ଜମି ପ୍ରଦାନ କରିଥିଲେ । ତଦବଧି ଉକ୍ତ ପରିବାର ଅର୍ଥାତ୍ ରାମଚନ୍ଦ୍ରଂକର ଦାୟାଦଗଣ ଉକ୍ତ ଗୃହରେ ବସବାସ କରି ଆସିବା ସଙ୍ଗେ ସଙ୍ଗେ ସେହି ଜମି ମଧ୍ୟ ନିରଙ୍କୁଶ ରୂପେ ଭୋଗ କରି ଆସୁ ଅଛନ୍ତି ।

ରାମଚନ୍ଦ୍ରଂକର ପ୍ରଥମା ପତ୍ନୀ ରୁକ୍ମିଣୀ ଦେବୀ ଶ୍ୱଶୁର ଘରକୁ ଆସିବାର ଅଳ୍ପ କେତେ ବର୍ଷ ପରେ ମୃତ୍ୟୁବରଣ କରିଥିଲେ । ତାଂକ ଗର୍ଭରୁ କୌଣସି ସନ୍ତାନ ଜନ୍ମି ନ ଥିଲେ ।

ରାମଚନ୍ଦ୍ରଂକର ଦ୍ୱିତୀୟା ପତ୍ନୀ ଫୁଲ ଦେବୀଂକ ଗର୍ଭରୁ ୧୮୪୮ ଖ୍ରୀ:ରେ କୃତ୍ତିବାସ ନାମଧେୟ ଏକ ପୁତ୍ର ସନ୍ତାନ ଜାତ ହୋଇଥିଲା । ୧୩ ବର୍ଷ ହେବା ସମୟରେ କୃତ୍ତିବାସଂକର ମାତୃ ବିୟୋଗ ଘଟିଥିଲା । ରାମଚନ୍ଦ୍ରଂକ ପରିବାର ଦୟାନିଧି ଦାଶଂକ ଅମଳରୁ ଅତ୍ୟନ୍ତ ଭୋଗ ବିଳାସରେ କାଳାତିପାତ କରି ଆସୁ-ଥାନ୍ତି । କଥାରେ ଅଛି ବସି ଖାଇଲେ ନଈ ବାଲି ସରେ । କେବଳ ଭୋଗ ବିଳା-ସରେ ଜୀବନଯାପନ କରିବା ହେତୁ କ୍ରମେ ପରିବାରରେ ଆର୍ଥିକ ଦୁଃସ୍ଥିତି ଦେଖା ଦେଲା । ସଞ୍ଚିତ ଧନର ଅବକ୍ଷୟ ଘଟି ରାମଚନ୍ଦ୍ର ଦାଶ ଋଣଗ୍ରସ୍ତ ହୋଇ ପଡ଼ିଲେ ।

ଫୁଲ ଦେବୀଂକ ମୃତ୍ୟୁ ପରେ ତାଂକ ପରିବାରରେ ୧୩ ବର୍ଷ ବୟସର କୃତ୍ତିବାସ ଏବଂ ୧୦ ବର୍ଷ ବୟସର ଅନ୍ୟ ଏକ ପୁତ୍ର ଭଗୀରଥିଙ୍କ ବ୍ୟତୀତ ଆଉ କେହି ରହିଲେ ନାହିଁ । ତେଣୁ ପିତା ପୁତ୍ର ମିଳିତ ଭାବେ ରୋଷେଇ କରିବାକୁ

ଲାଗିଲେ । ଏହି ସମୟରେ ଯାଇ ତାଙ୍କ ମନରେ ଚେତା ପଶିଲା । ଘରେ ଥିବା ଘୋଡାମାନଙ୍କୁ ବିକ୍ରୀ କରି ଦେଲେ । ଏଣିକି ଋଣ କରି ଚଳିବା ବ୍ୟତୀତ ଅନ୍ୟ ପନ୍ଥା କିଛି ନ ଥିଲା ।

# ବଂଶାବଳୀ



# ନଅଙ୍କ ଦୁର୍ଭିକ୍ଷ

୧୮୬୬ ସାଲରେ ଓଡ଼ଶା, ମଧ୍ୟପ୍ରଦେଶ ଆଦି ରାଜ୍ୟରେ ଆଶାନୁରୂପ ବୃଷ୍ଟି ନ ହେବାରୁ ଉକ୍ତ ଦୁଇ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଥିଲା । ସେହି ବର୍ଷ ଓଡ଼ଶା ଗଜପତିଙ୍କର ନବମ ଅଙ୍କ ପଡ଼ିଥିବା ହେତୁ ଓଡ଼ଶା ଲୋକେ ତାକୁ ନଅଙ୍କ ଦୁର୍ଭିକ୍ଷ ବୋଲି କହି ଆସିଛନ୍ତି । ସମ୍ବଲପୁର ସେତେବେଳେ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ଥାଏ । ତତ୍ ପୂର୍ବରୁ ଏହା ୧୮୬୦ ରୁ ୧୮୬୨ ପର୍ଯ୍ୟନ୍ତ ବଙ୍ଗପ୍ରଦେଶ ସହ ମିଶି ରହିଥିଲା । ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶରେ ୧୮୬୩ ରୁ ୧୯୦୫ ସାଲ ଜୁଲାଇ ୧୯ ତାରିଖ ଯାଏ ରହି ଆସିଥିଲା । ତତ୍କାଳୀନ ଭାରତ ସରକାର ଅର୍ଥାତ ଲର୍ଡ କର୍ଜନଂକ ରେଜୁଲ୍ୟୁସନ ନମ୍ବର ୨୪୯୧ ତା ୧୯ । ୭ । ୧୯୦୫ ଆଦେଶ ମତେ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶଠୁ ବିଚ୍ଛିନ୍ନ ହୋଇ ଓଡ଼ଶା ପ୍ରଦେଶ ଭୁକ୍ତ ହୋଇଥିଲା ।

୧୮୬୬ ସାଲର ଅନାବୃଷ୍ଟି ହେତୁ ପ୍ରକୃତ ଦୁର୍ଭିକ୍ଷ କଷ୍ଟ ଲୋକେ ୧୮୬୭ ଖ୍ରୀଷ୍ଟାବ୍ଦରେ ଭୋଗ କରିଥିଲେ । ମଧ୍ୟପ୍ରଦେଶ ସରକାର ସ୍ଥାନେ ସ୍ଥାନେ ଅନ୍ନସତ୍ର ମାନ ଖୋଲି ଲୋକଙ୍କୁ ଖାଇବାକୁ ଦେବାର ବ୍ୟବସ୍ଥା କରି ଦେଲେ ସିନା କିନ୍ତୁ ଅନ୍ନସତ୍ର ଖୋଲିବା ଆଗରୁ ଏବଂ ପରେ ମଧ୍ୟ ବହୁ ଲୋକ ଖାଇବାକୁ ନ ପାଇ ମୃତ୍ୟୁ ମୁଖରେ ପଡଗଲେ । ଦୀର୍ଘ ଦିନ ଧରି ଖାଇବାକୁ ପାଇ ନ ଥିବାରୁ ହଠାତ୍ ପେଟ ବିକଳରେ ଗୁଡାଏ ଖାଇଦେଇ କେତେ ସମୟ ପରେ ଲୋକେ ମରି ଯାଉଥାଆନ୍ତି !

ରେମଣ୍ଡା ଗ୍ରାମରେ ଏହିପରି ଏକ ଅନ୍ନସତ୍ର ଖୋଲାଯାଇ ଥିଲା । ଜାତି-ଆଣ ପ୍ରଥା ଥିବା ହେତୁ ଏହି ସଂସ୍ଥା ମାନଂକରେ ବ୍ରାହ୍ମଣମାନଂକ ଦ୍ୱାରା ରୋଷେଇ କରା ଯାଉଥାଏ ।

ସରକାରଂକ ନିର୍ଦ୍ଦେଶ ଅନୁଯାୟୀ ଏଥିପାଇଁ ସାନ ବଡ ବ୍ୟକ୍ତି ବିଶେ-ଷଂକର ମର୍ଯ୍ୟାଦା ପ୍ରତି ଲକ୍ଷ୍ୟ ନ ରଖି ଗାଁରେ ବସବାସ କରୁଥିବା ସମସ୍ତ ବ୍ରାହ୍ମଣଙ୍କୁ ଏହି ରନ୍ଧୁଣିଆ କାମ ପାଳି ଅନୁସାରେ କରିବାକୁ ପଡୁଥାଏ ।

ରାମଚନ୍ଦ୍ର ଦାଶ କିନ୍ତୁ ଏହି ସର୍ତ୍ତ ମାନି ନ ଥିଲେ । ତେଣୁ ତାଂକ ବିରୁଦ୍ଧରେ ଗ୍ରାମାଧୀପ ସୁବେଦାର ପଦାଭିସିକ୍ତ ଏକ ସରକାରୀ ବ୍ୟକ୍ତିଂକ ନିକଟରେ ଅଭି-ଯୋଗ ଆନୟନ କଲେ । ସୁବେଦାର ତାଙ୍କୁ ଡକାଇ ଯେତେବେଳେ ସରକାରୀ ଆଦେଶ ପାଳନ ଅଲବତ୍ କରିବାକୁ ହେବ ବୋଲି କହନ୍ତି, ଦାଶେ ତାଙ୍କୁ ପ୍ରତି-ଉତ୍ତର ଦେବାକୁ ଯାଇ କହିଲେ ଯେ ତିନି ପୁରୁଷ ଧରି ଆମ୍ଭ ବଂଶର ଲୋକେ

ଶାପନ କାର୍ଯ୍ୟ ଅର୍ଥାତ୍ ଦେଓ୍ୱାନଗିରି କରି ଆସିଛୁ । ତେଣୁ ଯେଉଁଥିଲା କାମ ମୁଁ ଶିଖି ନାହିଁ ଆଉ ଯାହାହେଲେ ବି ମୁଁ ତାହା କରିବି ନାହିଁ । ଆପଣ ଯାହା ଇଚ୍ଛା ତାହା କରି ପାରନ୍ତି । ସୁବେଦାର ଦାଶଂକ ଏହି ଦମ୍ଭୋକ୍ତି ତଥା ସମ୍ଭ୍ରାନ୍ତ ଚେହେରା, ଦୀର୍ଘ ବପୁ, ଗୋରା ତକତକ ଭେଗୀ ଶରୀର ଦେଖି ତାଂକ ଉପରେ ଖୁସି ହୋଇ ଅନ୍ନସତ୍ରର ତତ୍ତ୍ୱାବଧାନ କାର୍ଯ୍ୟ କରିବାକୁ ଅନୁରୋଧ କଲେ । ଉଭ-ୟଂକ ମଧ୍ୟରେ ତାପରେ ଏକ ପ୍ରକାର ମଧୁରଳାପ ଘଟିବାରୁ ଦାଶେ ଶେଷରେ ଉକ୍ତ କାମ କରିବାକୁ ରାଜି ପଡ଼ିଥିଲେ । ଯେଉଁଦିନଠାରୁ ସୁବେଦାର ରାମଚନ୍ଦ୍ରଙ୍କୁ ସିଂହ ଉପାଧି ପ୍ରଦାନ କରି ସିଂହ ସାହେବ ବୋଲି ସୁବେଦାର ଡକାଡକି କରି-ବାରୁ କ୍ରମେ ଲୋକଂକ ମଧ୍ୟରେ ମଧ୍ୟ ସେ ରାମସିଂହ ନାମରେ ପରିଚିତ ହୋଇଥିଲେ ।

ରାମଚନ୍ଦ୍ର ବାବୁ ନିଜର ଖାନଦାନି ପ୍ରତି ବଡ ସଜାଗ ହୋଇ ଚଳୁଥାନ୍ତି । ସେଥିପାଇଁ ସେ ତାଙ୍କର ଜ୍ୟେଷ୍ଠ ପୁତ୍ରର ବିବାହ ଲହଣ୍ଡା ଗ୍ରାମର ତତ୍କାଳୀନ ଧନୀ ବ୍ୟକ୍ତି ଭୁବନେଶ୍ୱର ଦାଶଙ୍କ ଜ୍ୟେଷ୍ଠା କନ୍ୟା କୌଶଲ୍ୟାଙ୍କ ସହ ଏବଂ କନିଷ୍ଠ ପୁତ୍ରର ବିବାହ ତାଲବ ଗୌନ୍ତିଆ ଘରେ କରିଥିଲେ ।

ଭୁବନେଶ୍ୱର ଦାଶ କେବଳ ଯେ ଧନୀ ବ୍ୟକ୍ତି ଥିଲେ ତାହା ନୁହେଁ, ସେ ଜଣେ ଉଚ୍ଚ ସଂସ୍କୃତି ସମ୍ପନ୍ନ ନୈଷ୍ଠିକ ବ୍ରାହ୍ମଣ ଥିଲେ । ପାଦରେ ଚାଲି ଚାଲି ସେ ସାତଥର ଗଙ୍ଗାସ୍ନାନ କରିବାକୁ ଯାଇଥିବାର ଜନଶ୍ରୁତି ଅଛି । ଏହି ପଦଯାତ୍ରା ନିମିତ୍ତ ଯିବା ଆସିବା ମିଶି ସର୍ବମୋଟ ୪ ମାସ ସମୟ ଲାଗୁଥିଲା । ବ୍ରାହ୍ମଣ ହୋଇ କାନ୍ଧରେ ତୀର୍ଥଯାତ୍ରୀ ହେତୁ ଭାର ବୋହିବାକୁ ପଡୁଥିଲା । ଭୁବନେଶ୍ୱର ବାବୁ ନାନା ଦୁଃଖ କଷ୍ଟ ପ୍ରତି ଶୋଚନା ନ କରି ସାତ ସାତ ଥର ଗଙ୍ଗାସ୍ନାନ କରିବା ଘଟଣା ତାଙ୍କ ଗଭୀର ଆତ୍ମବିଶ୍ୱାସ ତଥା ଆଧ୍ୟାତ୍ମିକ ନିଷ୍ଠାର ପରିଚୟ ଦିଏ ।

ସେ ଯାହା ହେଉ ରାମଚନ୍ଦ୍ର ବାବୁ ସେହିପରି ଏକ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ସମ୍ପର୍କ ସ୍ଥାପନ କରିଥିବାରୁ ତାଂକର ସମ୍ଭ୍ରାନ୍ତଗୁଣ ତଥା ଉଚ୍ଚ ଆଭିଜାତ୍ୟର ସୂଚନା ମିଳେ ।

# ବାପ ରୋପିଲା ତାଳ

ଆମ ଓଡ଼ଆରେ ଗୋଟେ ଢଗ ଅଛି ଯେ ବାପ ରୋପିଲା ତାଳ, ପୁଅକୁ ହେଲା କାଳ । କୃତ୍ତିବାସ କ୍ରମେ ଯୁବକ ଅବସ୍ଥାରେ ପହଞ୍ଚି ଗଲେ ! ତାଙ୍କର ଦ୍ୱିତୀୟ ବିବାହ ମଧ୍ୟ ହୋଇଗଲା । ତାଙ୍କ ସ୍ତ୍ରୀ କୌଶଲ୍ୟା ଦେବୀ ଶ୍ୱଶୁର ଘରକୁ ଆସି ଦେଖିଲେ ଯେ ଘରର ଅବସ୍ଥା ଅତି ଦୟନୀୟ । ଏକ ଧନୀ ଗୃହର ଅଳିଅଳ କନ୍ୟା, କେତେ ପ୍ରକାର ସୁଖର କଳ୍ପନା ମନରେ ପୋଷି ଶ୍ୱଶୁର ଘରକୁ ଆସିଥିଲେ କିନ୍ତୁ ସେଠି ପହଞ୍ଚି ଦେଖିଲେ ଯାହା ସେଥିରେ ତାଙ୍କ ମନରେ ଦାରୁଣ ଦୁଃଖ ଜାତ ହେଲା । ନିଜେ ଆଣିଥିବା ସାମଗ୍ରୀ ଦ୍ୱାରା ଅବଶ୍ୟ ୨/୩ ମାସ ଚଳିଗଲା । ତାପରେ ଚଳିବା ଅସମ୍ଭବ ମନେ କରି କୌଶଲ୍ୟା ଦେବୀ ତାଙ୍କ ମାଆଂକ ପାଖକୁ ଖବର ପଠାଇଲେ ଯେ ଖାଇବା ସକାଶେ ଅନ୍ତତଃ କିଛି ଚାଉଳ ପଠାଇ ଦେବାକୁ ।

ଖବର ପାଇ କୌଶଲ୍ୟାଂକ ପିତା ଭୁବନେଶ୍ୱର ୨ଟି ଶଗଡ ଗାଡରେ ୪ ଜଣଂକର ଚଳନୋପଯୋଗୀ ବର୍ଷକର ସମସ୍ତ ଖର୍ଚ୍ଚ ପଠାଇ ଦେବା ସଙ୍ଗେ ସଙ୍ଗେ ଝିଅକୁ ବି କହି ପଠାଇଲେ ଯେ ପୁଣି ଯଦି ଟିକିଏ ବି କୌଣସି କଥାର ଅଭବ ଘଟେ ତେବେ ସମ୍ବାଦ ଦେବୁ । ଇତ୍ୟବସରରେ କୃତ୍ତିବାସ ବାବୁ ନିଜର ଏକ ଉପାର୍ଜନ ଯୋଗ୍ୟ ଧନ୍ଦା ବାଛି ନେଇ ସେ ଦିଗରେ ଲାଗି ପଡଲେ । ମୂଳ ଧନ୍ଦା ରୂପେ ନିଜ ଜମି ଚାଷ, ଶ୍ୱଶୁର ଘରୁ ହଳ ବିହନ ସାହାଯ୍ୟ ପାଇ ଆରମ୍ଭ କରିଦେଲେ । ନିଜେ ତାଳପତ୍ର ପୋଥିରେ ବିଭିନ୍ନ ପ୍ରକାର ଗ୍ରନ୍ଥ ଲେଖିବା ଏବଂ ତାକୁ ବିକ୍ରୀ କରି ଦୁଇ ପଇସା ଉପାର୍ଜନ କରିବା, ପୁଣି ଗତିରେ ଗାଁରେ ଥିବା ବିଶିଷ୍ଟ ବ୍ୟକ୍ତିଂକ ଘରେ ଗ୍ରନ୍ଥାଦି ଗାଇବା ଦ୍ୱାରା ତାଂକ ପାରିବାରିକ ଖର୍ଚ୍ଚାଦି ତୁଲାଇବାରେ ଆଉ ଅସୁବିଧା ଘଟିଲା ନାହିଁ ।

ଇତି ମଧ୍ୟରେ ତାଂକର ସାନ ଭଉଣୀର ମଧ୍ୟ ମୃତ୍ୟୁ ହୋଇଗଲା । ସେହି ଭଉଣୀର ସ୍ୱାସ୍ଥ୍ୟ ବି କେବେ ଭଲ ରହୁ ନ ଥିଲା । ତେଣୁ ପ୍ରତି ମାସରେ ତା ପାଇଁ ଔଷଧ ଖର୍ଚ୍ଚ କିଛି କିଛି କୃତ୍ତିବାସଙ୍କୁ କରିବାକୁ ପଡୁଥିଲା । ସେ ମରିଯିବା ପରେ ବାପ ପୁଅ ଦୁଇଜଣ ଏବଂ ପତ୍ନୀ କୌଶଲ୍ୟା ହିଁ କେବଳ ଗୃହରେ ରହିଲେ । କୃତ୍ତିବାସ ଦେଖିଲେ ଯେ ତାଙ୍କ ପିତା, ସ୍ଥାନୀୟ ଜନୈକ ଉତ୍କଟ ସୁଧଖୋର ବ୍ୟକ୍ତିଙ୍କ ଠାରୁ କେତେକ ଟଙ୍କା ଓ ଧାନ ଷ୍ଟାମ୍ପ ଲେଖି ଦେଇ କରଜ ଆଣିଛନ୍ତି । ବିଭିନ୍ନ ଧନ୍ଦା ମାଧ୍ୟମରୁ ଉପାର୍ଜିତ ଧନରେ ତାଙ୍କର ଚଳନୋପଯୋଗୀ ଖର୍ଚ୍ଚ ବାଦ ଯାଇ କିଛି ବଳକା ଧନ ମଧ୍ୟ ସଞ୍ଚିତ ହେଲା । କୃତ୍ତିବାସ ବାବୁ ଏକ

ପ୍ରକାର ଶାନ୍ତରେ ଜୀବନ ଯାପନ କରି ବସିବା ସମୟରେ ଦିନେ ଶୁଣିବାକୁ ପାଇଲେ ଯେ ସାହୁକାର ତାଙ୍କ ପିତା କରିଥିବା ଋଣ ନେଇ ତାଙ୍କ ଜମି ଏବଂ ଘର ନେବା ପାଇଁ ଫନ୍ଦ କରୁଛନ୍ତି । ତେଣୁ ନିଜ ପିତା ରାମଚନ୍ଦ୍ରଙ୍କୁ ଡାକି ନେଇ ସେ ସାହୁକାର ଘରେ ପହଞ୍ଚି ଧାନ ଏବଂ ଟଙ୍କା କେତେ ହେବ ତାର ହିସାବ ଯୋଡବାକୁ କହିଲେ । ସାହୁକାର କିନ୍ତୁ ଧାନ କିମ୍ବା ଟଙ୍କା ନେବାକୁ ରାଜିହେଲେ ନାହିଁ । ସେ ରାଜିହେଲେ ନେଇଥିବା କରଜ ଟଙ୍କାରେ ମୂଳ ସୁଧ ମିଶି ଯାହା ହେଉଛି ସେଥିରେ ସେ ତାଙ୍କର ଥିବା ୬ ଏକର ଜମି ଏବଂ ବାସଗୃହଟି ନେବେ । ଏକଥା ଶୁଣି କୃତ୍ତିବାସ ହତାଶ ହୋଇ ପଡ଼ିଲେ । ଘରେ ନିଜ ପିତାଙ୍କୁ ପଚାରିଲେ ତୁମେ ତାଙ୍କ ଘରୁ ଆଣିଥିବା ଋଣର ପରିମାଣ କେତେ ? ତାଙ୍କ ପିତା ରାମଚନ୍ଦ୍ର କହିଲେ ସେ ଥରେ ଟ.୬, ଆଉଥରେ ୨୧ ଟଙ୍କା ୫ ଅଣା ଆଉ ଧାନ ୨୦ ଖଣ୍ଡି । ଏତିକି ମୂଳ ଟଙ୍କା ଆଉ ଧାନ ପାଇଁ ସେ ଦାବୀ କରୁଛନ୍ତି ଯେ ସତାଇଶ ଟଙ୍କା ପାଞ୍ଚଅଣା ମୂଳ ପାଇଁ ୫୦୦ ଟଙ୍କା ଏବଂ ୨୦ ଖଣ୍ଡି ଧାନ ଅର୍ଥାତ ୨ ପୁଡୁଗ ୪ ଖଣ୍ଡି ଧାନ ପାଇଁ ଶହେ ପୁଡୁଗ ଧାନ ଦେବ ତ ଦିଅ ନଚେତ୍ ଜମି ଆଉ ଘରରୁ ଅନ୍ତର ହୁଅ । ତଥାପି କୃତ୍ତିବାସ ଏଥିପାଇଁ ସାହାସ ହରାଇ ନ ଥିଲେ ଏବଂ ସାହୁକାରର ସେହି ଟଙ୍କା ଓ ଧାନ କିସ୍ତି କରି ପରିଶୋଧ କରି ଦେବାକୁ ତାଙ୍କୁ କହିଲେ ମୁଦ୍ଧା ସେମାନେ ତାହା ସ୍ୱୀକାର ନ କରିବାରୁ ଶେଷରେ'ସମସ୍ତ ଟଙ୍କା ଏବଂ ଧାନ ଏକ ଦିନରେ ପରିଶୋଧ କରି ଦେଇ ପିତାଙ୍କ କୃତ ଋଣରୁ ମୁକ୍ତି ଲଭି ଥିଲେ । ତାଙ୍କ ପିତା ଯେଉଁ କେତେଖଣ୍ଡ ଷ୍ଟାମ୍ପ (ଦଲିଲ) ଲେଖିଦେଇ ତାଂକ ଠାରୁ ଋଣ ଆଣିଥିଲେ ଏବଂ ଧାନ ଓ ଟଂକା ପରିଶୋଧ ପରେ ତାଂକ ଦ୍ୱାରା ଲିଖିତ ଷ୍ଟାମ୍ପ ତାଂକଠୁ ଯାହା ଫେରାଇ ଆଣିଥିଲେ ତାହା ଏ ପର୍ଯ୍ୟନ୍ତ ତାଂକ ଘରେ ସାଇତା ହୋଇ ରହିଅଛି । କୃତ୍ତିବାସ ଦାଶ ତାଂକ ନିଜ ବାକ୍ସରେ ସେହି ତିନି-ଖଣ୍ଡ ଦଲିଲକୁ ତାଂକ ଜୀବନର ଏକ ବଡ଼ ପୌରଷେୟ ମନେ କରି ତାକୁ ବଡ ଯତ୍ନର ସହିତ ସାଇତି ରଖି ଯାଇଛନ୍ତି । ତାଂକ ମୃତ୍ୟୁ ପରେ ତାହା ସେହିପରି ଏବେ ଥୁଆ ହୋଇ ରହିଛି ।

# କୃତ୍ତିବାସଙ୍କ କୃତିତ୍ୱ ଓ କୌଶଲ୍ୟାଙ୍କ କୌଶଳ

ଋଣ ପରିଶୋଧ ପରେ କୃତ୍ତିବାସ ଉପାର୍ଜନ ବୃଦ୍ଧି ପାଇଁ ଘରେ ଗୋଟିଏ ଚାଟଶାଳୀ ଖୋଲି ଦେଲେ । ନିଜେ ଘରେ ନ ଥିଲାବେଳେ ସେହି ଚାଟଶାଳୀରେ ପିଲାଙ୍କୁ କୌଶଲ୍ୟା ଦେବୀ ବି ପଢାଉଥାନ୍ତି । ଇତ୍ୟବସରରେ ରାମ-ଚନ୍ଦ୍ର ଦାଶଙ୍କର ମଧ୍ୟ ଦେହାବସାନ ଘଟି ସାରିଥିଲା ।

ପରିବାରରେ କ୍ରମେ ଗୋଟି ଗୋଟି କରି ପାଞ୍ଚ ଗୋଟି ପୁତ୍ର କନ୍ୟା ଜନ୍ମଲାଭ କଲେ । ପରିବାର ବୃଦ୍ଧି ହେବା ଦେଖି କୃତ୍ତିବାସ ଓ କୌଶଲ୍ୟା ଦୁହେଁଯାକ ମିଳି ପରିଶ୍ରମ କରି ନିଜ ହାତରେ ବର୍ଷକୁ ଗୋଟିଏ ଲେଖା କରି କୋଠରୀ ତିଆରି କରିଥିଲେ ।

ପୁତ୍ର ମାନଙ୍କ ମଧ୍ୟରେ ଜ୍ୟେଷ୍ଠ ପୁତ୍ର ନରହରି ୧୮୭୨ ଖ୍ରୀ:ରେ, ମଧ୍ୟମ ପୁତ୍ର ଶ୍ୟାମ ସୁନ୍ଦର ୧୮୮୪ ରେ ଏବଂ ତୃତୀୟ ପୁତ୍ର ମନବୋଧଙ୍କ ଜନ୍ମ ୧୮୮୯ ଖ୍ରୀ:ରେ ହୋଇଥିଲା । ଏହା ବାହାରେ ଶ୍ରୀମତୀ ଓ ପ୍ରିୟବତୀ ନାମରେ ୨ଟି କନ୍ୟା ସନ୍ତାନ ମଧ୍ୟ ଜନ୍ମ ଲାଭ କରିଥିଲେ ।

କୃତ୍ତିବାସ ପ୍ରତ୍ୟେକ ପୁତ୍ର କନ୍ୟାଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରିଥିଲେ । ତାଳପତ୍ର ପୋଥି ଲିଖନ, ଗନ୍ଥଗାୟନ, ଚାଟଶାଳୀ ଖୋଲି ତହିଁରେ ଶିକ୍ଷାପ୍ରଦାନ ଆଦି କାମ କରିବା ଥିଲା କୃତ୍ତିବାସଙ୍କ ମୁଖ୍ୟ ଉପାର୍ଜନ ପନ୍ଥା । ତାଙ୍କ ଜୀବନ କାଳ ମଧ୍ୟରେ ସେ ହଜାର ହଜାର ତାଳପତ୍ର ପୋଥି ଲେଖିଛନ୍ତି ଏବଂ ସେ ଗୁଡ଼ିକୁ ବିକ୍ରୟ କରି ସେ ବହୁ ଅର୍ଥ ଉପାର୍ଜନ କରି ଥିବାର ଜଣାପଡେ ।

ପତି ପତ୍ନୀ ଉଭୟେ ତାଙ୍କ ଜୀବନ କାଳ ମଧ୍ୟରେ ନିରବଚ୍ଛିନ୍ନ ପରିଶ୍ରମ, କଠୋର ସାଧନା ତଥା ସ୍ୱକୀୟ ଚେଷ୍ଟାରେ ନିର୍ଦ୍ଦୋଷ ଅର୍ଥ ଉପାର୍ଜନ କରିବା ପ୍ରବୃତ୍ତି ଥିବା ହେତୁ କ୍ରମେ ପରିବାରର ଶ୍ରୀବୃଦ୍ଧି ସାଧିତ ହୋଇଥିଲା । ତାଙ୍କ ମୃତ୍ୟୁ ପରେ ସେ ଯେଉଁ ପୋଥି ଗୁଡ଼ିକ ନିଜ ହାତରେ ଲେଖି ଘରେ ସାଇତି ଯାଇଥିଲେ ତାକୁ ସଂରକ୍ଷଣ କରିବାରେ ତଦୀୟ ଦାୟାଦ ଗଣ ଅସମର୍ଥ ହୋଇ ପଡ଼ିଲେ । ଏହି ପରିପ୍ରେକ୍ଷୀରେ ତାଙ୍କର ଜନୈକ ପୌତ୍ର ଅର୍ଥାତ୍ ଏହି ଗ୍ରନ୍ଥର ଲେଖକ ବୀରବର ଦାଶ ସେ ସମସ୍ତ ପୋଥିକୁ ଭୁବନେଶ୍ୱର ମ୍ୟୁଜିୟମକୁ ପଠାଇ ଦେଇଥିଲେ । ଉକ୍ତ ପୋଥି ଗୁଡ଼ିକ ମ୍ୟୁଜିୟମ ସଂଗ୍ରହାଳୟରେ ସୁରକ୍ଷିତ ହୋଇ ରହିଅଛି ।

ମ୍ୟୁଜିୟମ କର୍ମକର୍ତ୍ତା ଏଥିପାଇଁ ଯେଉଁ ପତ୍ର ବୀରବର ବାବୁଙ୍କ ନିକଟକୁ ପଠାଇ ଥିଲେ ତହିଁର ବିବରଣ ଅପର ପୃଷ୍ଠାରେ ରହିଅଛି ।

**ପ୍ରଥମ ପତ୍ର —**

No. 1444 Dt. 22 - 6 - 67

From, Sri M. P. Dash, M.A.
Curator, Orissa State Museum,
Bhubaneswar

ଶ୍ରୀଯୁକ୍ତ ବୀରବର ଦାଶ, ଶିକ୍ଷକ, ବରଗଡ, ଖଜୁରିଟିକରା
ପୋ. ଅ. ବରଗଡ, ଜି. ସମ୍ବଲପୁର

ଶ୍ରୀଯୁକ୍ତ ମହାଶୟ,

ଡକ୍ଟର ଶ୍ରୀଯୁକ୍ତ ନବୀନ କୁମାର ସାହୁ ଙ୍କ ଜରିଆରେ ଆପଣ ଯେଉଁ ତାଳପତ୍ର ପୋଥିତକ ପଠାଇ ଥିଲେ ସେ ଗୁଡକ ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି (Gallary) ବିଭାଗରେ ସଂରକ୍ଷିତ ହେବା ଉଦ୍ଦେଶ୍ୟରେ ମୋ ନିକଟରେ ଆସି ପହଞ୍ଚିଛି । ଏଭଳି ମୂଲ୍ୟବାନ ଗ୍ରନ୍ଥ ଗୁଡକର ସଂଗ୍ରହ ଦାୟିତ୍ୱ ଆପଣ ନେଇ ଥିବାରୁ ଓଡଶା ସରକାରଙ୍କ ସାଂସ୍କୃତିକ ବିଭାଗ ତରଫରୁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି ।

ଆଶାକରେ ଆପଣ ଆହୁରି ଅଧିକ ସଂଖ୍ୟାରେ ଧ୍ୱଂସାଭିମୁଖୀ ତାଳପତ୍ର ପୋଥି ତଥା ଅନ୍ୟାନ୍ୟ ଦୁଷ୍ପ୍ରାପ୍ୟ ଜିନିଷ ସଂଗ୍ରହ କରି ପ୍ରାଚୀନ ଗୌରବର ସଂରକ୍ଷଣ ଦିଗରେ ବିଶେଷ ଆଗ୍ରହୀ ହେବେ । ଇତି ।

ଆପଣଙ୍କର ବିଶ୍ୱସ୍ତ
ସ୍ୱାଃ ନଃ ଶ୍ରୀ ମହେଶ ପ୍ରସାଦ ଦାଶ
ତା ୨୨ । ୬ । ୬୭

**ଦ୍ୱିତୀୟ ପତ୍ର —**

No. 100 Dt. 13 - 1 - 68

From Sri H. C. Das, M. A,
Curator in charge of Manuscripts Section
Orissa State Museum,
Bhubaneswar

ଶ୍ରୀଯୁକ୍ତ ମହାଶୟ,

ଓଡଶା ରାଜ୍ୟ ସଂଗ୍ରହାଳୟର ତାଳପତ୍ର ପୋଥି ବିଭାଗ ପକ୍ଷରୁ ପ୍ରାଚୀନ ଗ୍ରନ୍ଥ ଗୁଡକର ସଂଗ୍ରହ ନିମିତ୍ତ ବିଶେଷ ଗୁରୁତ୍ୱ ଦିଆ ଯାଉଛି । ତେଣୁ ଆପଣ ସେହି ଗ୍ରନ୍ଥ ଗୁଡକର ଯଦି ସନ୍ଧାନ ପା'ନ୍ତି, ତାହେଲେ ଅନୁଗ୍ରହ ପୂର୍ବକ ଯଥାଶୀଘ୍ର

ସମ୍ବଳ ଆମକୁ ଜଣାଇ ଦିଅନ୍ତୁ କିମ୍ବା ନିଜେ ସଂଗ୍ରହ କରି ଆମ ନିକଟରେ ଜମା ଦିଅନ୍ତୁ । ତାଳପତ୍ର ପୋଥି କ୍ରୟ କମିଟିରେ ସେଗୁଡକୁ ଉପସ୍ଥାପିତ କରି ଆପଣଙ୍କୁ ତହିଁର ଉପଯୁକ୍ତ ମୂଲ୍ୟ ଦିଆଯିବାର ବ୍ୟବସ୍ଥା ଗ୍ରହଣ କରଯିବ ।

୧ । କବି ଚନ୍ଦ୍ର ରାୟ ଦିବାକର ମିଶ୍ରଙ୍କ ଲିଖିତ ଗ୍ରନ୍ଥ—
କ) ଧୂର୍ତ୍ତ ଚରିତ, ଖ) ଦେବୀ ଶତକ, ଗ) ରସ ମଞ୍ଜରୀ
ଘ) ହରି ଚରିତ ଚମ୍ପୂ, ଙ) ପାରିଜାତ ହରଣ ନାଟକ
ଚ) ପ୍ରଭାବତୀ ନାଟକ ଓ ଅନ୍ୟାନ୍ୟ

୨ । କବି ଡିଣ୍ଡିମ ଜୀବ ଦେବାଚାର୍ଯ୍ୟଙ୍କ ପ୍ରଣୀତ ଗ୍ରନ୍ଥ—
କ) ଭକ୍ତି ଭାଗବତ ମହାକାବ୍ୟ ଖ) ଭାହାବତୀ ନାଟିକା
ଗ) ଭକ୍ତି ବୈଭବ ନାଟକ ଓ ଅନ୍ୟାନ୍ୟ

୩ । ବିଶ୍ୱନାଥ କବିରାଜଙ୍କ ପ୍ରଣୀତ ଗ୍ରନ୍ଥ—
କ) ପ୍ରଭାବତୀ ପରିଣୟ ଖ) ନରସିଂହ ବିଜୟ
ଗ) କୁବଳୟାଶ୍ୱ ଚରିତ ଓ ଅନ୍ୟାନ୍ୟ

୪ । ରାଘବାନନ୍ଦ ସାନ୍ଧି ବିଗ୍ରହିକ ମହାପାତ୍ରଙ୍କ ପ୍ରଣୀତ ଗ୍ରନ୍ଥ—
କ) ଛନ୍ଦୋ ବିବେକ ଖ) ଉଷା ପରିଣୟ
ଗ) ବାଙ୍ମୟ ବିବେକ ଓ ଅନ୍ୟାନ୍ୟ

୫ । ଚନ୍ଦ୍ରଶେଖର ସାନ୍ଧି ବିଗ୍ରହିକ ମହାପାତ୍ରଙ୍କ ପ୍ରଣୀତ ଗ୍ରନ୍ଥ—
କ) ଭାଷାର୍ଣ୍ଣବ ଖ) ପୁଷ୍ପମାଳା ଓ ଅନ୍ୟାନ୍ୟ

୬ । ମହା ମହୋପାଧ୍ୟାୟ ଚଣ୍ଡିଦାସଙ୍କ ପ୍ରଣୀତ ଗ୍ରନ୍ଥ—
କାବ୍ୟ ପ୍ରକାଶ ଦୀପିକା ଓ ଅନ୍ୟାନ୍ୟ ।

ଏତଦ୍‌ବ୍ୟତୀତ ରାୟ ରାମାନନ୍ଦ ପଟ୍ଟନାୟକଙ୍କ ପ୍ରଣୀତ ଜଗନ୍ନାଥ ବଲ୍ଲଭ ନାଟକ, ଶତଂଜୀବ ମିଶ୍ରଙ୍କ ପ୍ରଣୀତ ମୁଦିତ ମାଧବ, ନିତ୍ୟାନନ୍ଦଙ୍କ ପ୍ରଣୀତ ଶିବ ଲୀଳାମୃତ ମହାକାବ୍ୟ, କମଳଲୋଚନ ଖଡ୍‌ଗରାୟଙ୍କ ଗୀତ ମୁକୁଳ, ବ୍ରଜଯୁବ ବିଳାସ, ସଙ୍ଗୀତ ଚିନ୍ତାମଣି, ରାମଚନ୍ଦ୍ର ଖଡ୍‌ଗରାୟଙ୍କ ନରହରି ଚରିତ, ନାରାୟଣ ମଙ୍ଗରାଜଙ୍କ ପ୍ରଣୀତ ହରି ଭକ୍ତି ସୁଧାକର ଓ ସଙ୍ଗୀତ ନାରାୟଣ ଆଦି ଗ୍ରନ୍ଥ ଗୁଡ଼ିକ ସଂଗୃହିତ

ହେଲେ ରାଜ୍ୟ ସଂ ଗ୍ର ହା ଳ ୟ ତରଫରୁ ସେଗୁଡ଼ିକ ଆଗ୍ରହର ସହିତ କ୍ରୟ କରାଯିବ । ଇତି

ଆପଣଙ୍କ ବିଶ୍ୱସ୍ତ
Sd/- H. C. Das
13 - 1 - 68
Curator in-charge MSS Section
Orissa State Museum
Bhubaneswar

ଶ୍ରୀଯୁକ୍ତ ବୀରବର ଦାଶ, ଶିକ୍ଷକ
ଖଜୁରୀଟିକ୍ରା-ବରଗଡ଼
ପୋ. ଅ. ବରଗଡ଼, ଜି. ସମ୍ବଲପୁର

ତୃତୀୟ ପତ୍ର —

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଅଧୀକ୍ଷକଙ୍କ ଦପ୍ତର, ଭୁବନେଶ୍ୱର
No. 2060 Dt. 14 - 9 - 73
ପ୍ରେରକ— ଶ୍ରୀ ନୀଳମଣି ମିଶ୍ର, କ୍ୟୁରେଟର,
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର
ପ୍ରାପକ— ଶ୍ରୀଯୁକ୍ତ ବୀରବର ଦାଶ, ପ୍ରଧାନ ଶିକ୍ଷକ
ଅଫିସର କଲୋନୀ ସ୍କୁଲ, ବରଗଡ଼
ପୋ. ଅ. ବରଗଡ଼, ଜି. ସମ୍ବଲପୁର

ମହାଶୟ,

ଚଳିତ ବର୍ଷ ୧୬ ଜୁଲାଇରେ ଅଧୀକ୍ଷକ, ରାଜ୍ୟ ଅଭିଲେଖାଗାରଙ୍କ ନିକଟକୁ ପଠାଇଥିବା ଆପଣଙ୍କ ପତ୍ର ପାଇଲି ।

ଡକ୍ଟର ନବୀନ କୁମାର ସାହୁଙ୍କ ଜରିଆରେ ଆପଣ ଯେଉଁ ପୋଥି ଗୁଡ଼ିକ ପଠାଇଥିଲେ ସେଥିରୁ ଡୋର ଛିଡ଼ିଯାଇ ସଂପୂର୍ଣ୍ଣ ପତ୍ର ଗୋଳମାଳ ହୋଇ ଯାଇଥିଲା । ସେଗୁଡ଼ିକୁ ସଜାଇ ବହୁ କଷ୍ଟରେ ୨ ଖଣ୍ଡ ପୋଥି ବାହାର କଲୁ । ଅବଶିଷ୍ଟ ଅନ୍ଯ କେତେକ ଖୋଲା ପୋଥି ରହିଛି ।

ଆପଣଙ୍କ ପୋଥି ଗୁଡ଼ିକ ରାଜ୍ୟ ସଂଗ୍ରହାଳୟରେ ପୋଥି ବିଭାଗରେ ଯଥା ସ୍ଥାନରେ ସଂରକ୍ଷିତ ହୋଇଛି ।

ଆପଣଙ୍କ ବିଶ୍ୱସ୍ତ
ସ୍ୱା: ନ: ନୀଳମଣି ମିଶ୍ର, ୧୩-୯-୭୩
କ୍ୟୁରେଟର, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

କୃତ୍ତିବାସ ଦାଶ ତାଙ୍କର ଜୀବନକାଳ ମଧ୍ୟରେ ପାରିବାରିକ ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ପ୍ରାୟ ସମସ୍ତ ସମୟ ବ୍ୟୟ କରିଯାଇଥିଲେ ମଧ୍ୟ ତନ୍ମଧ୍ୟରୁ କେତେକ କାର୍ଯ୍ୟ ଯେ ଜାତୀୟ କାର୍ଯ୍ୟର ଅନ୍ତର୍ଭୁକ୍ତ ହୋଇଯାଉଥିଲା ତାହା ସେ ଜାଣିପାରି ନ ଥିଲେ ସତ୍ୟ କିନ୍ତୁ ତାଙ୍କର ମୃତ୍ୟୁର ବହୁକାଳ ପରେ ଜାତୀୟ ଇତି-ହାସରେ ତାଙ୍କ ନାମ ଯେ ବିଜଡ଼ିତ ହୋଇ ପାରିଥିଲା । ଏହାହିଁ ଗୌରବର ବିଷୟ ।

ସେ ଯେଉଁ କଷ୍ଟ ସ୍ୱୀକାର କରି ତାଳଗଛ ମାନଙ୍କରୁ ତାଳପତ୍ର ସଂଗ୍ରହ କରୁଥିଲେ, ତାକୁ ଛାଞ୍ଚି ପୋଛି ପରିଷ୍କାର କରି ରଖୁଥିଲେ ଏବଂ ଚକ୍ଷୁ, ଚିତ୍ତ, ହସ୍ତାଙ୍ଗୁଳି ପ୍ରୟୋଗ ପୂର୍ବକ ଶ୍ରମ ଓ କଷ୍ଟପ୍ରଦ ଲୁହାର ଲେଖନୀରେ ଯାହା ସବୁ ଗ୍ରନ୍ଥ ଗୁଡ଼ିକ ଲେଖି ଯାଇଥିଲେ ସେଗୁଡ଼ିକ ବହୁ ଆୟାସପ୍ରଦ । ଆଜି ପୋଥି ଲେଖା, ଲେଖା ପରେ ପତ୍ରମାନଙ୍କ ଦେହରେ ହଳଦୀ, ତେଲ ଏବଂ କାଳି ସଂମିଶ୍ରିତ କରି ବୋଳାଯିବା ବିଷୟ, ତାପରେ ଘଣ୍ଟା ଘଣ୍ଟା ଧରି ସେସବୁ ଲିଖିତ ପତ୍ରକୁ ଖରାରେ ଶୁଖାଇବା ଏବଂ ଶୁଖିଯିବା ପରେ ତାକୁ ପୋଛି ପାଛି କରି ପୃଷ୍ଠା ଅନୁ-ଯାୟୀ ସଜାଇ ଡୋର ଦେଇ ଗୁନ୍ଥି ରଖିବା କାମ ଯେ କେତେ ଶ୍ରମସାଧ୍ୟ ତାହା ଯିଏ ଆଖିରେ ନ ଦେଖିଛି ସେ ଜାଣି ପାରିବ ନାହିଁ । ନିଜ ପିତାମହଙ୍କ ଏହି କାର୍ଯ୍ୟ କରିବାରେ ଲେଖକ ଶତାଧିକ ଥର ଯେ ସହଯୋଗ କରିଅଛି ଏକଥା ଆଜି ଲେଖିବାକୁ ଗଲାବେଳେ ସେହି ସମୟର ଦୃଶ୍ୟ ତାର ଆଖି ସାମନାରେ ଭସି ଉଠୁଛି । କଥାରେ ଅଛି ସଦ୍ ଉଦ୍ଦେଶ୍ୟ ଏବଂ ନିଷ୍ଠାର ସହିତ କରଯାଇଥିବା ଶ୍ରମର ମୂଲ୍ୟ କେବେ ବ୍ୟର୍ଥ ହୁଏନା ।

କୃତ୍ତିବାସ ଦାଶଂକର ସାଧନାର ମୂଲ୍ୟ ପୋଥି ଗୁଡ଼ିକ ଆଜି ସେ ଦିବଂ-ଗତ ହୋଇ ଯାଇଥିଲେ ମଧ୍ୟ ରାଜ୍ୟ ସଂଗ୍ରହାଳୟରେ ଯେ ତାହା ସ୍ଥାନ ପାଇ ପାରିଅଛି ଏବଂ ସେଥିପାଇଁ ସେଠାରେ କେତେକ ସ୍ଥାନ ଆବୋରି ବସି ରହିଛି ତାହାହିଁ ତାଂକର ଗୌରବ ଏବଂ ସାରସ୍ୱତ କଳାର ଅଧିନାୟକତ୍ୱ ପ୍ରଚାର କରୁ-ଅଛି । ବାସ୍ତବିକ, ସେ ଜଣେ ଯେପରି କରିତ୍କର୍ମା ବ୍ୟକ୍ତି ଥିଲେ ତାଙ୍କରି ଅନୁରୂପ ଏକ ପତ୍ନୀ ମଧ୍ୟ ପାଇଥିଲେ । ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ପତ୍ନୀ କୌଶଲ୍ୟା ଦେବୀ ଥିଲେ ଅନ୍ୟତମା ପ୍ରେରଣାଦାତ୍ରୀ । ହିନ୍ଦୁ ସଂସ୍କୃତିରେ ଏପରି କୌଣସି ବ୍ରତ, ଉଷା, ଉପବାସ ନାହିଁ ଯାହାକି ସେ କରି ନ ଥିଲେ । ଉଭୟ ପତିପତ୍ନୀ ୨୪ ବର୍ଷ ଧରି ବର୍ଷକୁ ୨୪ ଗୋଟି କରି ଏକାଦଶୀ ବ୍ରତ କରିଥିଲେ । ଷଡ଼-ଜୟନ୍ତୀ ଏବଂ ଅନ୍ୟାନ୍ୟ ବ୍ରତାଦି ଯାହାସବୁ ହିନ୍ଦୁ ଗୃହସ୍ଥର ପାଳନୀୟ ସେ ସବୁ କରୁଥାନ୍ତି । ସେଥିପାଇଁ ଉଭୟେ ସର୍ବଦା ସୁସ୍ଥ ଏବଂ କାର୍ଯ୍ୟକ୍ଷମ ଥାନ୍ତି ।

ନିୟମିତ ଭୋଜନ, କଠୋର ପରିଶ୍ରମ ହେତୁ ଏକ ସୁସ୍ଥତର ଜୀବନ ଯାପନ କରି ଆସୁଥିବା ବେଳେ କୃତ୍ତିବାସ ତାଙ୍କ ମୃତ୍ୟୁର ୧୦ ମାସ ଆଗରୁ ବାତ ରୋଗରେ ପୀଡ଼ିତ ହୋଇ ଶଯ୍ୟାଶାୟୀ ହୋଇ ପଡ଼ିଲେ ।

ଦୀର୍ଘ ୬୪ ବର୍ଷ ଧରି ଲୁହାର ଲେଖନୀ ବ୍ୟବହାର କରିଥିବା ଯୋଗୁଁ ପରିଶେଷରେ ତାଙ୍କର ଡାହାଣ ହାତର ପାପୁଲିରେ ଯନ୍ତ୍ରଣା ଜାତ ହେଲା । ଡାହାଣ ହାତ ପାପୁଲିର ତର୍ଜନୀ, ମଧ୍ୟମା ଓ ବୃଦ୍ଧାଙ୍ଗୁଠି ୩ ଗୋଟି ଫୁଲିଗଲା । ଯେତେ ଚିକିତ୍ସା କରାଗଲା ତାହା ବ୍ୟର୍ଥତାରେ ପର୍ଯ୍ୟବେଶିତ ହେଲା । ୧୦ ମାସ ପର୍ଯ୍ୟନ୍ତ ରୋଗ ଶଯ୍ୟାରେ ପଡ଼ିରହି ଗତ ତା ୪ । ୧ । ୧୯୩୩ରେ ୮୪ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା ।

କୃତ୍ତିବାସ ଦାଶଂକ କୃତିତ୍ୱ ଓ ପତ୍ନୀ କୌଶଲ୍ୟା ଦେବୀଙ୍କ କର୍ମ କୁଶଳତା, ବାଣୀ କୁଶଳତା ତଥା ପତିଂକ ପ୍ରତି ଭକ୍ତି ପରାୟଣତା ଯୋଗୁଁ ନଷ୍ଟଭ୍ରଷ୍ଟ ହୋଇ ଯାଇଥିବା ଏକ ପରିବାରର ହୃତଗୌରବ ଫେରି ଆସିଥିଲା । କୌଶଲ୍ୟା ଦେବୀ ପ୍ରତ୍ୟହ ପ୍ରତ୍ୟୁଷରୁ ଗାତ୍ରୋତ୍‌ଥାନ କରି ସର୍ବ ପ୍ରଥମେ ସ୍ୱୀୟ ପତିଦେବଙ୍କୁ ପ୍ରଣତି ଜ୍ଞାପନ କରୁଥିଲେ । ତାପରେ ବିଭିନ୍ନ ଦେବଦେବୀଂକ ନିକଟରେ ମୁଣ୍ଡିଆ ମାରି ସାରି ଗୃହିକ କର୍ମରେ ବ୍ୟାପୃତା ରହୁଥିଲେ ।

ଯେତେ ଉତ୍ତର ହେଲେ ମଧ୍ୟ ପତିଦେବ ଅନ୍ନ ଭୋଜନ ନ କଲେ ସେ କେବେ ମଧ୍ୟ ଭୋଜନ କରୁ ନ ଥିଲେ । ପତିଂକର ମୃତ୍ୟୁର ୧୪ ବର୍ଷ ପରେ ମାଘ କୃଷ୍ଣ ଏକାଦଶୀ ତା ୨୬ । ୧ । ୪୭ ଦିନ ତାଂକର ପରଲୋକ ପ୍ରାପ୍ତି ଘଟିଥିଲା ।

## ରେମଣ୍ଡା ଗ୍ରାମର ଉତ୍ପତ୍ତି, ସ୍ଥିତି ତଥା ପ୍ରଶସ୍ତି

କୃତ୍ତିବାସ ଦାଶ ତାଙ୍କ ପିତୃ ପିତାମହଙ୍କ ଠାରୁ ଯାହା ଶୁଣିଥିଲେ ଏବଂ ଲୋକ ମୁଖରେ ଯାହା ଶ୍ରୁତ ହୋଇ ଆସିଥିଲା ତହିଁର ବିବରଣୀ ନିମ୍ନମତେ ରହିଥିବାର କିମ୍ବଦନ୍ତୀ ଅଛି ।

ସର୍ବପ୍ରଥମେ ଏହି ଗ୍ରାମରେ ମାତ୍ର ୬ ଘର ଖଡ଼ିଆଳ (ଖଡାଲ) ଜାତିର ଲୋକ ବସତି ସ୍ଥାପନ କରି ରହିଥିଲେ । ସେମାନଙ୍କର ସଂଜ୍ଞା ଥିଲା ମୁଣ୍ଡା । ସେମାନେ ତିନିଗୋଟି ଭାଇ ଥିଲେ । ଖଡ଼ିଆଳ (ଆଦିବାସୀ) ସମାଜରେ ରାମ ମୁଣ୍ଡ ସଂଗ୍ରୀ ମୁଣ୍ଡା ଓ ଅର୍ଜୁନ ମୁଣ୍ଡାଙ୍କ ପ୍ରାଧାନ୍ୟ ତତ୍କାଳୀନ ସମୟରେ ବିଶେଷ ରୂପେ

ରହିଥିଲା । ସେହି ତିନିଭାଇ ପରେ ବିଭକ୍ତ ହୋଇ ତିନି ଗୋଟି ସ୍ଥାନରେ ଯାଇ ରହିଲେ । ସେମାନେ ଯେଉଁ ଯେଉଁ ସ୍ଥାନରେ ଯାଇ ରହିଲେ ସେମାନଙ୍କର ନାଁ ଅନୁସାରେ ଲୋକେ ସେହି ଗାଁ ମାନଙ୍କର ନାମକରଣ କରି ଡାକିବାରେ ଲାଗିଲେ । ରାମ ମୁଣ୍ଡା ଯେଉଁ ଗାଁରେ ରହୁଥିଲେ ଲୋକେ ତାକୁ ପ୍ରଥମେ ରାମମୁଣ୍ଡା; ସଂକ୍ରୀ-ମୁଣ୍ଡା ଓ ଅର୍ଜ୍ଜୁନ ମୁଣ୍ଡା ରହୁଥିବା ଗ୍ରାମ ମାନଙ୍କୁ ମଧ୍ୟ ସେହିପରି ଡକା ଗଲା । ପରେ ଲୋକଂକ ଦ୍ୱାରା ତାହା କ୍ରମଶ ଅପଭ୍ରଷ୍ଟ ହୋଇ ରାମମୁଣ୍ଡାରୁ ରେମଣ୍ଡା, ସଂକ୍ରୀମୁଣ୍ଡାରୁ ସଂକ୍ରୀଡା ଏବଂ ଅର୍ଜ୍ଜୁନମୁଣ୍ଡାରୁ ଅର୍ଜ୍ଜୁଣ୍ଡା ହୋଇ ଥିବାର କିମ୍ବଦନ୍ତୀରୁ ଜଣାପଡେ ।

ଭେଡେନ ଥାନା ମଧ୍ୟରେ ଏହି ତିନିଗୋଟି ଗ୍ରାମର ଆୟତନ ସର୍ବ-ବୃହତ୍ ତଥା ପୁରାତନ ମଧ୍ୟ ଅଟେ ।

କ୍ରମେ ବିଭିନ୍ନ ଜାତିର ଲୋକେ ଆସି ଏହି ଗ୍ରାମ ମାନଙ୍କରେ ବସତି ସ୍ଥାପନ କରି ଥିବାରୁ ଗ୍ରାମ ଗୁଡ଼ିକର ସଂପ୍ରସାରଣ ଘଟିଅଛି ।

କାହାରି କାହାରି ମତରେ ରେଁ + ମୁଣ୍ଡାରୁ ରେମଣ୍ଡା ଶବ୍ଦର ଉତ୍ପତ୍ତି ବୋଲି କୁହା ଯାଇଥାଏ । କାରଣ ରେଁ ଶବ୍ଦର ଅର୍ଥ ସୁବର୍ଣ୍ଣ । ମୁଣ୍ଡା ଶବ୍ଦର ଅର୍ଥ ଖଣ୍ଡ ବିଶେଷ । ରେଁମୁଣ୍ଡା ଅର୍ଥ ସୁବର୍ଣ୍ଣ ଖଣ୍ଡ । ଏହି ଗ୍ରାମର ଭୂମି ଅତ୍ୟନ୍ତ ଉର୍ବର ମଧ୍ୟ । ତାକୁ ପ୍ରକାରନ୍ତରେ ସ୍ୱର୍ଣ୍ଣପ୍ରସୂ ଭୂମି ବୋଲି କହିଲେ ମଧ୍ୟ ଚଳେ । ତେଣୁ ଗ୍ରାମର ନାମକରଣରେ ଏହି ଯୁକ୍ତି ମଧ୍ୟ ଯେ ନ ଖାଟିବ ଏପରି କଥା ନାହିଁ । ଉଭୟ ଯୁକ୍ତି ଚିନ୍ତାପୂର୍ଣ୍ଣ ଏବଂ ଯୁକ୍ତିସମ୍ମତ । ତଥାପି ପ୍ରଥମ ଯୁକ୍ତିଠାରୁ ଦ୍ୱିତୀୟ ଯୁକ୍ତିର ଯଥାର୍ଥ୍ୟ କେତେଦୂର ରହିଛି ତାହା ଚିନ୍ତା ସାପେକ୍ଷ । କିମ୍ବଦନ୍ତୀ ମତେ ପ୍ରଥମ ନାମକରଣ ଉପରେ ଗୁରୁତ୍ୱ ଦିଆଯାଇ ପାରେ । କାରଣ ତା ସହିତ ସଂକ୍ରୀଡା ଏବଂ ଅର୍ଜ୍ଜୁଣ୍ଡା ଏହି ଦୁଇ ଗ୍ରାମର ନାମକରଣରେ ଯଥେଷ୍ଟ ସାମଞ୍ଜସ୍ୟ ରହୁଛି ।

ଗ୍ରାମର ପ୍ରାଚୀନତା ନେଇ ବହୁ କଥା ଶୁଣାଯାଏ । କିନ୍ତୁ ଗ୍ରାମରେ ଥିବା ସୋମଲାଇ ଠାକୁରାଣୀଂକ ଅବସ୍ଥିତିରୁ ଗ୍ରାମଟିର ପ୍ରାଚୀନତା ଐତିହାସିକ ଗବେ-ଷଣା ମତେ ସହଜେ ଅନୁମେୟ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ଐତିହାସିକ ଟଲେମୀ ସମ୍ବଲପୁର ରାଜ୍ୟକୁ ଶବରଇ ବା ମୁଣ୍ଡା ମାନଂକର ଦେଶ ବୋଲି ବର୍ଣ୍ଣନା କରିଅଛନ୍ତି । ବଳରାମ ଦେବ ରାଜୁତି କରିବା ପୂର୍ବରୁ ଏହି ଅଞ୍ଚଳ ଆଦିବାସୀ ଅଧ୍ୟୁଷିତ ଥିଲା । ତଥାକଥିତ ଆଦିବାସିଗଣ ସମ୍ବଲପୁର ଜିଲ୍ଲାର ବିଭିନ୍ନ ଗ୍ରାମରେ

ଏବଂ ସମ୍ବଲପୁର ସହରରେ ସୋମଲାଇ ଠାକୁରଣୀଙ୍କୁ ସ୍ଥାପନା କରି ପୂଜା କରୁଥାନ୍ତି ।

ଆଗରୁ ଅବଶ୍ୟ ଉଲ୍ଲେଖ କରଯାଇଛି ଯେ ରେମଣ୍ଡା ଗ୍ରାମରେ ମଧ୍ୟ ସେହିପରି ଏକ ମୁଣ୍ଡା ଜାତୀୟ ଆଦିବାସୀ ବାସ କରୁଥିଲେ । ତାହାଁର ମୁଖିଆ ବା ସାଧୁ ଭଷାରେ କହିଲେ ଦଳପତି ରମ ମୁଣ୍ଡା ଥିବାର କିମ୍ବଦନ୍ତୀ କହେ । ଉକ୍ତ ଗ୍ରାମର କେତେଜଣ ବ୍ୟକ୍ତି ଦିନେ ଗ୍ରାମରେ ଥିବା ଏକ ଭୂଖଣ୍ଡରେ ହଳ କରୁଥାନ୍ତି । ହଳିଆ ମାନେ ହଳ କରୁଥିବା ବେଳେ ଏକ ପ୍ରସ୍ତର ଖଣ୍ଡ ସେମାନଂକର ଲଙ୍ଗଳ ମୁନରେ ବାଜି ବ୍ୟାଘାତ ସୃଷ୍ଟି କରୁଥାଏ । ତେଣୁ ତାକୁ ହଟାଇ ଦେବା ପାଇଁ ସେମାନେ ମନସ୍ଥ କରି ହାତରେ ଧରି ତାକୁ ନେଇ ହିଡରେ ରଖି ଦେଲେ । ପ୍ରଥମ ଦିନ ଏହା କରି ତା ଊରଦିନ ହଳ କଲାବେଳେ ସେମାନେ ଦେଖିଲେ ଯେ ପଥର ଖଣ୍ଡକ ପୁଣି ଜମି ଭିତରେ ପଡ଼ ରହିଛି ଏବଂ ଲଙ୍ଗଳ ମୁନରେ ବାଜି ବାଧା ଜନ୍ମାଉ ଅଛି । ସେଦିନ ମଧ୍ୟ ପଥରଟିକୁ ଉଠାଇ ପୂର୍ବ ଦିନ ପରି ହିଡ ଉପରେ ରଖିଦେଲେ । ଆଶ୍ଚର୍ଯ କଥା ପଥର ପୁଣି ଜମି ଭିତରେ ଆସି ପଡ଼ି ରହିଲା । ଏହା ଦେଖି ଜଣେ ଉଦ୍ଧତ ହଳିଆ ଏଥର ପଥରଟାକୁ ହାତରେ ନ ଉଠାଇ ଲଙ୍ଗଳ ମାଧ୍ୟମରେ ଭୂଷି ଭୂଷି ଜମିର ହିଡକଡକୁ ନେବାକୁ ଚେଷ୍ଟା କଲା । ଲଙ୍ଗଳର ଲୁହାଫାଳ ପଥର ଦେହରେ ବାରମ୍ବାର ବାଜିଲା । ବାରମ୍ବାର ବାଜିବା ଦ୍ୱାର କ୍ରମେ ପଥର ଦେହରୁ ରୁଧିର ନିର୍ଗତ ହେଲା ଏବଂ ସାର କିଆରୀଟିଯାକ କ୍ରମେ ପ୍ରସରି ସମଗ୍ର କିଆରୀ ପରିଶେଷରେ ରୁଧିରକ୍ତ ହୋଇଗଲା । ତାହା ଦେଖି ସମସ୍ତ ହଳିଆ ଭୟ ପାଇଗଲେ । ସେଦିନ ହଳ କରା ସେତିକିରେ ବନ୍ଦ କରି ଦେଇ ଗାଁକୁ ଚାଲି ଆସିଲେ । ଗାଁରେ ସେ କଥା ନେଇ ପରସ୍ପର ଆଲୋଚନାଦି କରି ତାହା ଗୋଟିଏ ଦେବ୍ହେଲିଆ ଜାଗା ବୋଲି ପ୍ରମାଦ ଗଣିଲେ ।

ସେଦିନ ରତିରେ ଗାଁରେ ଥିବା ମୁଖିଆ ସ୍ୱପ୍ନ ଦ୍ୱାର ଅବଗତ ହେଲେ ଯେ ସେହି ପଥର ଖଣ୍ଡକ ହେଉଛନ୍ତି ମା ସୋମଲାଇ ଠାକୁରଣୀ । ଗ୍ରାମାଧୀପ ବା ସର୍ଦ୍ଦାର ତାପରେ ପୂଜା ଆଦି କରି ସେହି ପ୍ରସ୍ତର ଖଣ୍ଡକୁ ଆଡମ୍ବର ସହ ଗ୍ରାମକୁ ଆଣି ଗ୍ରାମର ମଧ୍ୟବର୍ତ୍ତୀ ସ୍ଥଳରେ ସ୍ଥାପନା କରି ପୂଜା କରିବାକୁ ଲାଗିଲେ । ପରେ ସେଠାରେ ଯଥାବିଧି ଏକ କୁଟୀର ନିର୍ମିତ ହୋଇଥିଲା । ତଦବଧି ଉପ ସୋମଲାଇ ରୂପେ ଉକ୍ତ ପ୍ରସ୍ତର ରୂପୀ ବିଗ୍ରହ ସୋମଲାଇ ଠାକୁରଣୀ ରୂପେ ପୂଜିତ ହୋଇ ଆସୁ ଅଛନ୍ତି । ଯେଉଁ ଜମିରୁ ଦେବୀ ଆବିର୍ଭୂତା ହୋଇଥିଲେ ତାକୁ ସୋମଲାଇ ବାହାଲି ନାମରେ ଲୋକେ କହିବା ଆରମ୍ଭ କରିଦେଲେ । ବୋଲିବା ବାହୁଲ୍ୟ ଯେ ଏବେ ମଧ୍ୟ ଉକ୍ତ ଜମି ସୋମଲାଇ ବାହାଲି ରୂପେ କହୁଛନ୍ତି । ପ୍ରାୟ ୮ ଏକର

ପରିମିତ ସେହି ଜମି ଅତ୍ୟନ୍ତ ଉର୍ବର ତଥା ଧୋଇ, ମନ୍ଦିର ସମ୍ମୁଖ ନିଷ୍କରଙ୍କ ଅଟେ । ଶହ ଶହ ବର୍ଷ ଧରି ଉକ୍ତ ଜମିକୁ ମନ୍ଦିରର ସେବକ, ସେବକ ଅନୁକ୍ରମେ ଜମାଣି କରି ଆସୁଛନ୍ତି । ଆଦିବାସି ମାନଙ୍କର ଦେବୀ ବୋଲି ଏବେ ମଧ୍ୟ ମନ୍ଦିରରେ ଆଦିବାସୀ ଶ୍ରେଣୀୟ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଦେବୀ ବହୁକାଳରୁ ପୂଜିତ ହୋଇ ଆସୁ ଅଛନ୍ତି ।

ସମ୍ବଲପୁରର ରାଜା ବଳରାମ ଦେବ ୧୫୪୫ ଖ୍ରୀ: ରୁ ୧୫୬୦ ଖ୍ରୀ: ମଧ୍ୟରେ ସୋମଲାଇଙ୍କୁ ନିଜର ଇଷ୍ଟଦେବୀ ରୂପେ ସ୍ୱୀକାର କରି ନେବାରୁ ସଙ୍କୁଡ଼ ଭୋଗ ପାଇଁ ମନ୍ଦିରରେ ବ୍ରାହ୍ମଣ ପୂଜକ କୌଣସି କୌଣସି ସ୍ଥଳେ ଗନ୍ଧ (ରାଜପୁତ୍) ଜାତିର ପୂଜକ ନିଯୁକ୍ତ ହେଲେ । ରେମଣ୍ଡା ଗ୍ରାମରେ ମଧ୍ୟ ଆଦିବାସୀଙ୍କ ପରେ କୁଲିତା ଜାତିର ବ୍ୟକ୍ତି ବିଶେଷ ଗ୍ରାମାଧୀପ ହୋଇଥିଲେ । ତେଣୁ ସଂଖୁଡ଼ ଭୋଗ ପାଇବାର ସୁବିଧା ନିମିତ୍ତ ରେମଣ୍ଡାର ସୋମଲାଇ ମନ୍ଦିରରେ ସହରା ଓ ବ୍ରାହ୍ମଣ ଏପରି ଦୁଇ ପ୍ରକାର ପୂଜକ ନିଯୁକ୍ତି ପାଇ କାର୍ଯ୍ୟ କରି ଆସୁ ଅଛନ୍ତି ।

ଏପରି ଭାବେ ବହୁ ବର୍ଷ ବିତିଗଲା । ଦେବୀ କୁଟୀରରେ ଥାଇ ପୂଜିତ ହେଉଥାନ୍ତି । ମଧ୍ୟପ୍ରଦେଶ ଅନ୍ତର୍ଗତ ବିମା ରାଜ୍ୟର ଜନୈକ ବ୍ୟକ୍ତି ରାଜ ନିଗ୍ରହ ହେତୁ ଉକ୍ତ ସ୍ଥାନ ତ୍ୟାଗ କରି ଚାଲି ଆସିଲେ । ସେ ବହୁ ଶକଟରେ ତାଙ୍କର ଆସବାବ ପତ୍ର, ଧନ ସମ୍ପତ୍ତି ଆଦି ଲଦି କରି ବିମା ରାଜ୍ୟ ଛାଡ଼ ଅନିର୍ଦ୍ଦିଷ୍ଟ ଭାବେ ଆସୁଥାନ୍ତି । ଘର ଛାଡ଼ ଆସିବା ବେଳେ ସେ ୨ଟି ଶକଟରେ ଗୋଟିକରେ ତାଙ୍କ ଘର ଭଙ୍ଗା ମାଟି କିଛି ଏବଂ ଅନ୍ୟ ଶକଟରେ ତାଙ୍କ ଘର ପାଖେ ତାଙ୍କ ନିଜ ଅକ୍ତିଆରରେ ଥିବା ଏକ ବଡ ପଥରକୁ ଲଦି କରି ଚାଲି ଆସିଲେ । ମାଟି ଏବଂ ପଥର ଲଦିବାର ଉଦ୍ଦେଶ୍ୟ ହେଲା ଏହା ଯେ ମାଟି ଆଣୁଥିବା ଶକଟର ଅଖ ଯେଉଁଠି ଭାଙ୍ଗିବ ସେ ସେଠାରେ ଏକ ପୋଖରୀ ଖୋଳାଇବେ । ପଥର ଆଣୁଥିବା ଶକଟଟିର ଅଖ ଯେଉଁଠି ଭାଙ୍ଗିବ ସେଠାରେ ସେ ଏକ ମନ୍ଦିର ତୋଳାଇବେ । ଘଟଣାକ୍ରମେ ମାଟି ଶକଟର ଅଖ ରେମଣ୍ଡା ଗ୍ରାମର ଉପକଣ୍ଠବର୍ତ୍ତୀ ସ୍ଥାନରେ ଭାଙ୍ଗି ଗଲା ଏବଂ ପଥର ଆଣୁଥିବା ଶକଟଟିର ଅଖ ସୋମଲାଇ ମନ୍ଦିର ପାଖେ ଭାଙ୍ଗି ଗଲା । ଉକ୍ତ ବ୍ୟକ୍ତିଙ୍କର ନାମ ଶିବ ଭୋଇ । ତେଣୁ ସେ ରେମଣ୍ଡାରେ ଏକ ବୃହତ୍ ଜଳାଶୟ ଖୋଳାଇ ଥିଲେ । ୯୬ଏକର ବିଶିଷ୍ଟ ଉକ୍ତ ଜଳାଶୟର ନାମ 'ବଡକଟା' ଅଟେ । ଏହି ଘଟଣା ଘଟିବା ପୂର୍ବରୁ ସୋମଲାଇ ଠାକୁରାଣୀ ଏକ କୁଟୀରରେ ରହିଥାନ୍ତି । ତେଣୁ ସେହି ସ୍ଥାନରେ ସେ ଏକ ବିରାଟ ମନ୍ଦିର ତିଆରି କରାଇ ଦେଲେ । ମନ୍ଦିରଟି ଗ୍ରାମର ଠିକ୍ ମଧ୍ୟ ସ୍ଥଳରେ ରହିଅଛି ।

ଘଟଣାର ସ୍ମାରକ ସ୍ୱରୂପ ତଥାକଥିତ ପ୍ରସ୍ତର ଗୋଟିକ ମନ୍ଦିରର ଦକ୍ଷିଣ

ପୂର୍ବ କୋଣରେ ପଡ଼ ରହିଛି । ମନ୍ଦରକୁ ପ୍ରାୟ ଏକ ଫୁଟ ଛାଡ଼ ପଥର ଯେମିତି ପଡ଼ିଥିଲା ସେପରି ଭାବେ ମୂକସାକ୍ଷୀ ରୂପେ ପଡ଼ ରହି ଅତୀତ ସ୍ମୃତିକୁ ଲୋକଙ୍କ ମନରେ ଜାଗ୍ରତ କରିବାରେ ଯେପରି ତତ୍ପର ହୋଇ ରହିଛି । ବହୁ ବ୍ୟକ୍ତି ତା ଉପରେ ବସାବସି କରନ୍ତି । ଫଳରେ ତାହା ଏବେ ଚିକ୍କଣ ହୋଇ ଗଲାଣି ।

ମନ୍ଦରଟିର ଗଠନ ପରିପାଟୀ ଏତେ ସୁଦୃଢ଼; ପ୍ରଶସ୍ତ ତଥା ସୁଉଚ୍ଚ ଯେ ତାହାରି ଅନୁରୂପ ମନ୍ଦର ଜିଲ୍ଲାର ଆଉ କୌଣସି ସ୍ଥାନରେ ଥିବା ପରି ମନେ ହୁଏନା ।

୧୯୫୩-୫୪, ୧୯୫୪-୫୫ ସାଲରେ ଗ୍ରାମବାସୀ ମିଳିତ ଉଦ୍ୟମରେ ମନ୍ଦରର ଜୀର୍ଣ୍ଣ ସଂସ୍କାର କରିଥିଲେ । ସେଥିପାଇଁ ମନ୍ଦରଟି ଏବେ ଦର୍ଶକ ମନରେ ଏକ ଅଭିନବ ଭବ ସଞ୍ଚାର କରୁଅଛି । ଯେତେ ଦୂର ସମ୍ଭବ ଶିବ ଭେଇ ମନ୍ଦର-ଟିକୁ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ନିର୍ମାଣ କରିଥିବାର ମନେ ହୁଏ । ଯେହେତୁ ଏଥିପାଇଁ ମଧ୍ୟ ଏକ ନିଷ୍କଳଂକ ପ୍ରମାଣ ରହିଅଛି ।

ସୋମଲାଇ ମନ୍ଦର ସକାଶେ ଏକ ପ୍ରକାର ସୁଦୃଶ୍ୟ କାଷ୍ଠାଦିର ସଂଯୋଗ କରି ଛାତଟାଏ ବିରଚ ଆକାରରେ ତିଆରି ହୋଇଥିଲା ଏବଂ ତା ଉପରେ ନଡା ଛପର ଥିଲା । ସେହି ଛାତର ତଳ ଭାଗରେ ମନ୍ଦରର ଚଟାଣରେ ବସି ଉପରକୁ ଅନାଇଲେ ଜଣା ପଡୁଥିଲା ବିଜ୍ଞାଣୀଙ୍କ ଅପରୂପ ସୂକ୍ଷ୍ମାତି ସୂକ୍ଷ୍ମ କାଠ ଖୋଦେଇ କାମ । ଛାତର ବିମ୍ ମାନଂକରେ ଏବଂ ଅନ୍ୟ ଅଂଶ ମାନଂକରେ ଯାହା ଅକିଂତ ହୋଇ ରହିଥିଲା । ପ୍ରକାଣ୍ଡ ପ୍ରକାଣ୍ଡ କାଠଗଡ ମାନ କେଉଁଠୁ ଆଣି ମନ୍ଦର ନିର୍ମାତା ସେଠାରେ ଠୁଳ କରଇ ଥିଲେ ତାହା ଚିନ୍ତା କଲେ ମନ ଭବନାରେ ଦ୍ରବୀଭୂତ ହୋଇ ପଡୁଥିଲା । କିନ୍ତୁ ହାୟ୍ ସେହି ସୁନ୍ଦର କାରୁକାର୍ଯ୍ୟ ବିଶିଷ୍ଟ କାଠ ଖୋଦେଇ କାମ ୧୯୫୧-୫୨ ସାଲରେ ଜନୈକ ଅଫିମ ଛିଟାଖୋର ବ୍ୟକ୍ତିର ଅସାବଧାନତା ଯୋଗୁ ଛାତରେ ନିଆଁ ଲାଗି ଭସ୍ମୀଭୂତ ହୋଇଗଲା । ଏ କଥା ଲେଖିବାର ତାତ୍ପର୍ଯ୍ୟ ଯେ ରେମଣ୍ଡା ସୋମଲାଇ ମନ୍ଦରର ଉକ୍ତ କାଠ ଖୋଦେଇ କାମ ପରି ହୁମା ଶିବ ମନ୍ଦରଟି ମଧ୍ୟ ନିର୍ମିତ ହୋଇଥିଲା । ହୁମା ମନ୍ଦରର କାଠ କାମ ଯେ ଦେଖିଛି ସେ ନିଃସନ୍ଦେହ ରୂପେ କହିଦେବ ଯେ ରେମଣ୍ଡା ସୋମଲାଇ ମନ୍ଦରର କାଠ କାମ ସହିତ ତା'ର ସୌସାଦୃଶ୍ୟ ରହିଛି । ହୁମା ଶିବ ମନ୍ଦରରେ ଏକ ପ୍ରସ୍ତର ଫଳକ ଲାଗିଛି ଏବଂ ତହିରେ ଲେଖା ଅଛି ଯେ ତାହା ସମ୍ବଲପୁରର ରାଜା ବଳିୟାର ସିଂହଙ୍କ ଦ୍ୱାରା ନିର୍ମିତ ହୋଇ ଅଛି । ସାଲ କଥା ଲେଖାନାହିଁ ସତ୍ୟ କିନ୍ତୁ ଇତିହାସ କହେ ବଳିୟାର ସିଂହ ୧୬୧୭ ଖ୍ରୀ: ରୁ ୧୬୫୭ ଖ୍ରୀ: ଯାଏ ସମ୍ବଲପୁରରେ ରାଜୁତି କରିଥିଲେ ।

ତେଣୁ ଏହା ନିଃସନ୍ଦେହ ଯେ ରେମଣ୍ଡା ସୋମଲାଇ ମନ୍ଦରଟି ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭରେ ହୁଏତ ନିର୍ମିତ ହୋଇ ଥାଇ ପାରେ ।

## ରେମଣ୍ଡା ମୁଖ୍ୟ ବଳଦେବ ମନ୍ଦିର—

ଲେଖକ ନିଜର ପିତାମହଙ୍କ ଠାରୁ ଶୁଣିଛି ଯେ ଏହି ମନ୍ଦର ନିର୍ମାଣ ବେଳେ ତାଙ୍କୁ ୧୦ ବର୍ଷ ହୋଇଥିଲା ଏବଂ ସେ ମନ୍ଦର ନିର୍ମାଣର ସମସ୍ତ କଥା ଜାଣିଛନ୍ତି ବୋଲି କହିଥିଲେ । ତାଙ୍କର ଜନ୍ମ ୧୮୪୮ ସାଲ । ତେଣୁ ଏହି ମନ୍ଦର ନିର୍ମାଣ କାମ ୧୮୫୮ ଖ୍ରୀଃ ରୁ ଆରମ୍ଭ ହୋଇଥିଲା । ନରସିଂହ ମେହେର ନାମକ ଜଣେ ବ୍ୟକ୍ତି (ରେମଣ୍ଡାରେ ଥିବା ନିଗକାର ମେହେରଙ୍କ ବଂଶଧର) ଏହି ମନ୍ଦର ନିର୍ମାଣ କରିଥିଲେ । ମନ୍ଦର ନିର୍ମାଣର ଅବ୍ୟବ୍ୟହିତ ପରେ ଉକ୍ତ ବ୍ୟକ୍ତି ସପରିବାର ବିନିକା ଗ୍ରାମରେ ଯାଇ ଅବସ୍ଥାନ କଲେ । ତାଙ୍କର ଦାୟାଦ ଗଣ ବିନିକାରେ ଏବେ ଅଛନ୍ତି । ନରସିଂହ ମେହେର କେବଳ ମାତ୍ର ମନ୍ଦର ଗୋଟିକ ତୋଳି ଦେଲେ ସିନା କିନ୍ତୁ ଠାକୁର ମାନଙ୍କ ପାଇଁ ଭୋଗ, ପୂଜକ ନିଯୁକ୍ତି ଆଦି ସମସ୍ତ କାର୍ଯ୍ୟ ଗ୍ରାମାଧୀପ ବ୍ୟବସ୍ଥା କରି ଦେଇଥିଲେ ।

ଗ୍ରାମାଧୀପ ପୂଜକ ମାନଙ୍କ ନିମିତ୍ତ ଏ.୨୨-୯୪ଡ. ବିସ୍ତର ଜମି ପ୍ରଦାନ କରି ଦେଇ ଅଛନ୍ତି । ଠାକୁର ମାନଙ୍କ ପ୍ରତିଦିନ ଭୋଗ ରନ୍ଧା ହେବା ନିମିତ୍ତ ନୂତନ ହାଣ୍ଡି ଆଟିକା ଦେବାପାଇଁ କୁମ୍ଭାରମାନଙ୍କୁ ମଧ୍ୟ ନିଷ୍କର ଭୂମି ଦେବା ସଙ୍ଗେସଙ୍ଗେ ଜଣେ ବ୍ରାହ୍ମଣ ପ୍ରତିଦିନ ସନ୍ଧ୍ୟା ସମୟରେ ଠାକୁର ମାନଙ୍କ ଆଗେ ଗୀତ ଗୋବିନ୍ଦରୁ କେତେକ ଛାନ୍ଦ ବୋଲିବା ବ୍ୟବସ୍ଥାର ତାଙ୍କୁ ମଧ୍ୟ ଏକ ଜମି ଦେଇଥିଲେ । ଉକ୍ତ ଜମିନର ନାମ ଗୀତ ଗୋବିନ୍ଦ ବାହାଲି ନାମରେ ନାମିତ ଥିଲା । ଲେଖକ ତାର ବାଲ୍ୟବସ୍ଥାରେ ଦେଖିଛି ଯେ ସେହି ସମୟରେ ବଂଶୀଧର ଶତପଥୀ ନାମରେ ଜଣେ ବ୍ୟକ୍ତି ଏହି କାର୍ଯ୍ୟ କରୁଥିଲେ ।

ଅତିଥି ଅଭ୍ୟାଗତ ଗାଁକୁ ଯେଉଁ ମାନେ ଆସିବେ ସେମାନଙ୍କୁ ଖାଇବାକୁ ଦେବା ସକାଶେ ପ୍ରତିଦିନ ୨ କୁଟା ଚାଉଳ ଅର୍ଥାତ୍ ୧୬ ତାମ୍ବି ରନ୍ଧା ହୋଇ ବଣ୍ଟା ଯାଉଥିଲା । ଗାଁରେ ବିଦେଶାଗତ କୌଣସି ବ୍ୟକ୍ତି ରାତିରେ ଭୋକରେ ଶୋଇବେ ନାହିଁ ବୋଲି ଗ୍ରାମାଧୀପ ଏ ପ୍ରକାର ବ୍ୟବସ୍ଥା କରି ଦେଇ ଥିଲେ । ଏହି ବ୍ୟବସ୍ଥା ମନ୍ଦର ନିର୍ମିତ ହେବା କାଳରୁ ହୋଇ ଆସୁଥିଲା । ୧୯୩୨ ସାଲ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ଚାଲି ଥିବାର ଲେଖକ ପ୍ରତ୍ୟକ୍ଷ କରିଅଛି । ତାପରେ ଏହା କମି କମି ଆସି ଶେଷରେ ୨ ତାମ୍ବି ଯାଏ ରନ୍ଧା ହୋଇ ବଣ୍ଟନ କରଯାଇ ଏବେ ତାହା ସମ୍ପୂର୍ଣ୍ଣ ରୂପେ ବନ୍ଦ ହୋଇ ଯାଇ ଥିବାର ଶୁଣାଯାଏ ।

ବର୍ଷରେ ଜନ୍ମାଷ୍ଟମୀ ପର୍ବ, କାର୍ତ୍ତିକ ପୂର୍ଣ୍ଣିମା, ଦୋଳ ପୂର୍ଣ୍ଣିମା, ରଥଯାତ୍ରା

ଆଦି ପର୍ବ ଅତି ଆଡମ୍ବର ସହକାରେ ପାଳିତ ହୋଇ ଆସୁଥିଲେ ମଧ୍ୟ ରଥଯାତ୍ରା ଉତ୍ସବଟିର ପାଳନ ବିଧିବଦ୍ଧ ଭାବେ ହେଉଥିବାର ଜଣାପଡେ ।

ସ୍ଥାନୀୟ ବଳଦେବ ମନ୍ଦରକୁ ସ୍ଥାନୀୟ ଜନସାଧାରଣ 'ବଡଗୁଡ' ନାମରେ ନାମିତ କରି କହନ୍ତି ।

ବଡ ଗୁଡରେ ବଡ ଆଳତୀ ନ ହେଲେ କେତେକ ବିଶିଷ୍ଟ ବ୍ୟକ୍ତି ଆଗେ ରାତ୍ରି ଭୋଜନ କରୁ ନ ଥିଲେ । ବଡ ଆଳତୀ ବେଳେ ପ୍ରତ୍ୟହ ରାତି ୯ଟା ବେଳେ ମନ୍ଦରରେ ଯୋଡ ନାଗରା, ଘଣ୍ଟ, ଘଣ୍ଟା, ବୀର କାହାଳୀ ଆଦି ବାଜିବାର ବ୍ୟବସ୍ଥା ଥିଲା । ବଡ ଆଳତୀ ବେଳେ ଜଣେ ବ୍ୟକ୍ତି ଚାମର, ବ୍ୟଞ୍ଜନ ଆଦି ୮/୧୦ ଗୋଟି ଧରି ନିର୍ଦ୍ଦିଷ୍ଟ ସମୟରେ ମନ୍ଦରରେ ପହଞ୍ଚି ଯାଉଥିଲେ ଏବଂ ସେତେବେଳେ ତାହା ମନ୍ଦର ଅଭ୍ୟନ୍ତର ପ୍ରଦେଶରେ ଥିବା ପ୍ରଶସ୍ତ ସ୍ଥଳରେ ଥୋଇ ଦେଇ ନିଜେ ଗୋଟିଏ ଚାମର ଧରିବା ସଙ୍ଗେ ସଙ୍ଗେ ଉପସ୍ଥିତ ଭକ୍ତବୃନ୍ଦ ତାପରେ ଗୋଟିଏ ଲେଖା ଚାମର ଧରି ଠାକୁର ମାନଙ୍କୁ ବିଞ୍ଚୁ ଥିବାର ଲେଖକ ଦେଖିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଶତାଧିକ ଥର ଏହି କାର୍ଯ୍ୟରେ ଯୋଗଦାନ କରି ଆସି ଅଛି । ଲାବଣ୍ୟ ମେହେର ନାମକ ଜନୈକ ବ୍ୟକ୍ତି ଚାମର ସଂରକ୍ଷଣ କାମ ବହୁ ବର୍ଷ ଧରି କରି ଆସୁଥିଲେ । ଅଧୁନା ତାହା ଆଉ ସେପରି ଭାବରେ ହେଉନାହିଁ ।

ବଡ ଗୁଡ଼ ବ୍ୟତୀତ ଆଉ ଏକ ମନ୍ଦର ଅଛି । ତାହା ମୁଖ୍ୟତଃ ନରସିଂହ ଗୁଡ଼ ନାମରେ ଖ୍ୟାତ ।

ଏକ ବୃହତ ନରସିଂହ ଶାଳଗ୍ରାମ ମୂର୍ତ୍ତି ସେହି ମନ୍ଦରରେ ପୂଜିତ ହେବା ସଙ୍ଗେ ସଙ୍ଗେ ଦୁଇଗୋଟି ଜଗନ୍ନାଥ ବିଗ୍ରହ ମଧ୍ୟ ପୂଜା ପାଉଅଛନ୍ତି । ବଡ ଗୁଡ଼ପରି ସେହି ମନ୍ଦର ପାଇଁ ମଧ୍ୟ ଗ୍ରାମାଧୀପ ୯.୪-୫୫ଡ଼. ନିଷ୍କର ଭୂମି ଖଞ୍ଜି ଦେଇ ଅଛନ୍ତି । ପ୍ରଥମେ ଏକ ମାଟି ଚିଆରି ଘରେ ଠାକୁର ମାନେ ରହୁଥିଲେ । ୧୯୪୨-୪୩ ସାଲରେ ମନବୋଧ ସାହୁ ନାମରେ ଜଣେ ଶିକ୍ଷିତ ବ୍ୟକ୍ତି ଏଥିପାଇଁ ଏକ ପକ୍କା ମନ୍ଦର ତୋଳାଇ ଦେଲେ ।

ଗ୍ରାମର କୁମ୍ଭାରପଡାରେ ବାଳମକୁନ୍ଦ ରଣା ନାମରେ ଜଣେ ଧନୀ ବ୍ୟକ୍ତି ରାମଜୀ ମନ୍ଦର ନାମରେ ଏକ ମନ୍ଦର ତୋଳି ଦେଇ ସେଥିପାଇଁ ଜମି ଆଦି ମଧ୍ୟ ବ୍ୟବସ୍ଥା କରି ଦେଇଛନ୍ତି ।

କୁଷ୍ଟାପଡାରେ ମାହେଶ୍ୱରୀ ଦେବୀଙ୍କ ପାଇଁ ଏକ ମନ୍ଦର କୁଷ୍ଟା ଜାତିର ବ୍ୟକ୍ତିଗଣଙ୍କ ମିଳିତ ପ୍ରଚେଷ୍ଟାରେ ନିର୍ମିତ ହୋଇ ଥିବାର ଜଣାପଡେ ।

## ବସନ୍ତରାସ —

ପ୍ରାୟ ସତୁରି କି ଅଶି ବର୍ଷ ତଳେ ଏହି ଗାଁରେ ଶ୍ରୀଧର ଗୌନ୍ତିଆ ନାମରେ ଜଣେ ଗ୍ରାମାଧୀପ ଥିଲେ । ତାଙ୍କରି ସମୟରେ 'ବସନ୍ତ ରାସ' ଉତ୍ସବ ରେମଣ୍ଡାରେ ୧୪ ବର୍ଷ ଧରି ହୋଇ ଥିବାର ଏକ ମଧୁର ଜନଶ୍ରୁତି ରହି ଆସି ଅଛି । ନୟାଗଡ ଅଞ୍ଚଳର ହୋଟମାନ ସିଂହ ନାମରେ ଜଣେ ବ୍ୟକ୍ତି ଆସି ଏହି 'ରାସ' ର ଗୁରୁ ଭାବରେ ରହି ଦଳେ ପିଲାଙ୍କୁ ଏହି ନାଟ ଶିଖାଇ ଥିଲେ । 'ବସନ୍ତ-ରାସ' ନାମକ ଏକ ବଙ୍ଗଳା ଯାତ୍ରା ତାଳପତ୍ର ଖେଦା ଶ୍ରୀ ଚନ୍ଦନ କବି ବଙ୍ଗଳା ଭାଷାରେ ଲେଖିଥିଲେ । ହୋଟମାନ ସିଂହ ଉକ୍ତ ପୋଥିଟିକୁ ସଙ୍ଗରେ ନେଇ ଅତି କଦାକାର ଭାବେ ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ଆସି ଏହି ଗ୍ରାମର 'ବଡଗୁଡ଼' ରେ ସଦାବର୍ତ୍ତ ଅନ୍ନ ଖାଇ ଦିନାକେତେ ରହିଲେ । ରାତିରେ ମନ୍ଦର ପ୍ରାଙ୍ଗଣରେ ଶୋଉ ଥାନ୍ତି । ଶୋଇବା ପୂର୍ବରୁ ସେ ପ୍ରତ୍ୟହ ଘଣ୍ଟେ ଦୁଇଘଣ୍ଟା କରି ଆଣିଥିବା ପୋଥିରୁ କେତେକ ଗୀତ ଗାଇବାରେ ଲାଗିଲେ । ମନ୍ଦର ସଂଲଗ୍ନ ଘର ମାନଙ୍କୁ ତାହା ଶୁଭିଲା । ସୁନ୍ଦର ଗଳା, ପୁଣି ଯାତ୍ରା ଗୀତ ତେଣୁ ଲୋକେ ମୁଗ୍ଧ ହୋଇ ତାଙ୍କ ପାଖକୁ ଆସି କ୍ରମେ ଦୀର୍ଘ ସମୟ ଧରି ଶୁଣିଲେ । କ୍ରମେ ତାହା ଗୌନ୍ତିଅାଙ୍କ କାନକୁ ଗଲା ।

ଶ୍ରୀଧର ଦିନେ ତାଙ୍କୁ ଡକାଇ ପଠାଇଲେ । ବିଭିନ୍ନ କଥାବାର୍ତ୍ତାରୁ ଜାଣିଲେ ଯେ ଦଳେ ପିଲାଙ୍କୁ ପାଇଲେ ସେ ବସନ୍ତରାସ ଶିଖାଇବେ । ପ୍ରାଥମିକ ପରୀକ୍ଷାରୁ ଗୌନ୍ତିଆ ଜାଣିଲେ ଯେ 'ରାସ' ଶିଖାଇବାରେ ହୋଟମାନ ଜଣେ ଓସ୍ତାଦ ଅଟନ୍ତି । ତେଣୁ ତାଙ୍କୁ ରାଜକୀୟ ସମ୍ମାନ ଦେଇ ଗ୍ରାମରେ ରଖାଗଲା ଏବଂ ସେ ବସନ୍ତ ରାସ ଯାତ୍ରା ଗ୍ରାମରେ ଆରମ୍ଭ କଲେ । ରାସନୃତ୍ୟ ଗୁରୁ ହିସାବରେ ତାଙ୍କର ଯଥେଷ୍ଟ ଅଭିଜ୍ଞତା ଥାଏ । ତତ୍କାଳୀନ ଅବସ୍ଥାରେ ଗାଁ ଗହଳିରେ ଉକ୍ତାଙ୍କ ଧରଣର ନାଟ ବା ଯାତ୍ରା ହେଉ ନ ଥିଲା । ତେଣୁ ସେହି ଯାତ୍ରା ଦେଖିବା ନିମିତ୍ତ ଆଖ ପାଖ ଗ୍ରାମ ମାନଙ୍କରୁ ବହୁ ଲୋକ ଆସୁଥିଲେ । ଏହି ଯାତ୍ରା ସେହି ସମୟରେ ଏତେ ଚିତ୍ତାକର୍ଷକ ହେଉଥିଲା ଯେ ରାସ ଦେଖିଥିବା ବ୍ୟକ୍ତି ଆଜିକାଲିକାର ନାଟକ, ଗୀତିନାଟ୍ୟ ଆଦି ମୋଟେ ପସନ୍ଦ କରନ୍ତି ନାହିଁ । ଉକ୍ତ ଯାତ୍ରା ୨୧ ଦିନଯାଏ ହେଉଥିଲା । ପ୍ରତିବର୍ଷ ବସନ୍ତ ଋତୁରେ ଉକ୍ତ ଯାତ୍ରା ଗାଁରେ ୧୪ ବର୍ଷ ଯାଏ ଜାରି ଯାଇ ଥିବାର ଜନଶ୍ରୁତି ରହିଛି ।

## ଗ୍ରାମରେ ମିଲିଟେରୀ ଶାସନ—

ସର୍ବ ପ୍ରଥମେ ଏହି ଗ୍ରାମର ଗୌନ୍ତିଆ ଆଦିବାସୀ ବ୍ୟକ୍ତି ବିଶେଷ ଥିଲେ ।

ତାଙ୍କ ପରେ ଶିବ ଭେଇ ଗ୍ରାମାଧୀପ ହୋଇ ରହିଲେ । ଶିବ ଭେଇଙ୍କ ମୃତ୍ୟୁ ପରେ ତଦୀୟ ପୁତ୍ର ବାଲୁଙ୍କ ଗୌନ୍ତିଆ ହୋଇଥିଲେ । ତାଙ୍କର ୨ଟି ସ୍ତ୍ରୀ । ୧ମା ସ୍ତ୍ରୀଙ୍କ ଗର୍ଭରୁ ଶ୍ରୀଧର ଏବଂ ୨ୟା ସ୍ତ୍ରୀଙ୍କ ଗର୍ଭରୁ ଗିରିଧାରୀ, ହର ଏବଂ କାର୍ତ୍ତିକ ଜନ୍ମ ଗ୍ରହଣ କଲେ । ବଡ ହିସାବରେ ଶ୍ରୀଧର ଗୌନ୍ତିଆ ହେବାରୁ ତଦୀୟ ବିମାତା ଗର୍ଭରୁ ଜାତ ଭଇମାନେ ବିଦ୍ରୋହୀ ହୋଇ ପଢ଼ ଶ୍ରୀଧରଙ୍କ ଉପରେ ଅତ୍ୟାଚର ଆରମ୍ଭ କରି ଦେଲେ । ନିଜ ଜୀବନ ଓ ଧନର ସୁରକ୍ଷା ପାଇଁ ଶ୍ରୀଧର ନାଗପୁର ଯାଇ ୨ ଜଣ ମିଲିଟେରୀ ସିପାହୀ ଗ୍ରାମରେ ରଖିବାକୁ ସରକାରଙ୍କ ଠାରେ ଆବେଦନ କଲେ । ସେମାନଙ୍କ ବେତନ ୨ ବର୍ଷର ଜମା କରି ଦେବାକୁ ଆଇନ ଥିବାରୁ ସେ ତାହା କରି ଦେବା ଫଳରେ ମାଧୋଦିନ ପାଣ୍ଡେ ଓ ମହାବୀର ନାମରେ ୨ ଜଣ ମିଲିଟେରୀ ସିପାହୀ ଆସି ଶ୍ରୀଧରଙ୍କ ଶାସନ କାର୍ଯ୍ୟରେ ସହାୟତା କରିଥିଲେ । ଶ୍ରୀଧରଙ୍କୁ ଯେଉଁମାନେ ହଇରଣ କରୁଥିଲେ ସେମାନଙ୍କୁ ଏହି ୨ ଜଣ ସିପାହୀ ମାଡ ଦେଇ ସାବାଡ କରି ଦେଉଥାନ୍ତି । ଫଳସ୍ୱରୂପ କେତେକ ଦିନପରେ ଗ୍ରାମରେ ଶାନ୍ତି ବିରାଜମାନ କରିଥିଲା ।

ମିଲଟିରୀ ଗାର୍ଡ ମାନଙ୍କୁ ଗାଉଁଲି ଭଷାରେ ରେମଣ୍ଡାର ଜନସାଧାରଣ ମିନ୍‌ଟିନ୍ ଗାର୍ଡ ବୋଲି କହୁଥାନ୍ତି । ଉକ୍ତ ସୈନିକ ଦ୍ୱୟଙ୍କ ମଧ୍ୟରୁ ମାଧୋଦିନ ପାଣ୍ଡେ ଥିଲା ପହିଲମାନ । ସେ ଜାତିରେ ମରହଟ୍ଟା ବ୍ରାହ୍ମଣ, ଅବିବାହିତ । ହୃଷ୍ଟ ପୁଷ୍ଟ ଶରୀର । ଗୌନ୍ତିଆଙ୍କର ଶତ୍ରୁସ୍ଥାନୀୟ ବ୍ୟକ୍ତି ବିଶେଷଙ୍କୁ ସେ ଦୂରରୁ ଥାଇ ଏପରି କୌଶଳରେ ନିଜର ପିନ୍ଧିଥିବା ପାଦର ଯୋତା ଫୋପାଡୁଥିଲେ ଯେ ତାହା ଯାଇ ତାଙ୍କର ଇଚ୍ଛାମତେ ନିର୍ଦ୍ଦିଷ୍ଟ ବ୍ୟକ୍ତିର ଗାଲ, ଛାତି, ପିଠିରେ ଯାଇ ପଡୁଥାଏ ।

କୃତ୍ତିବାସ ଦାଶଙ୍କ ଘରକୁ ଲାଗି କରି ଏକ ବ୍ୟକ୍ତିଙ୍କ ଘର ଥାଏ । ତାଙ୍କର ଏକ ବୟସ୍କା ଝିଅ ସହିତ ମାଧୋଦିନର ଗୁପ୍ତ ପ୍ରଣୟ ଥାଏ । ପଡୋଶୀ ହିସାବରେ ଉକ୍ତ ପରିବାର, ଦାଶଙ୍କ ପରିବାର ପ୍ରତି ଅସୂୟା ଭବ ଦେଖାଉ ଥାନ୍ତି । ଦିନେ ଉକ୍ତ ପରିବାରର ମୁଖ୍ୟା ସ୍ଥାନୀୟା ସ୍ତ୍ରୀଲୋକ ଜଣକ ଦାଶଙ୍କ ବିରୁଦ୍ଧରେ କେତେକ ମିଛକଥା ଯୋଡ଼ ମାଧୋଦିନ ଦ୍ୱାରା ତାଙ୍କୁ ଦଣ୍ଡ ଦେବାକୁ ପ୍ରବର୍ତ୍ତାଇ ଦେଲେ । ମାଧୋଦିନ ତ ସାର୍ବଭୌମ କ୍ଷମତାର ଅଧିକାରୀ ଥାଏ । ଏହି ପରିପ୍ରେକ୍ଷୀରେ ସେ କୃତ୍ତିବାସ ଦାଶଙ୍କୁ ନିଜ ଦପ୍ତରକୁ ଡକାଇ ନେଇ ମାଡ ଦେବାକୁ ଉଦ୍ୟତ ହେଲେ ।

କୃତ୍ତିବାସ ନିରୀହ, ସରଳ, ନିଷ୍କପଟ ବ୍ୟକ୍ତି । ତାଙ୍କ ବିରୁଦ୍ଧରେ ଏପରି ଅଭିଯୋଗ ଆସିବ ଏହା ଥିଲା ତାଙ୍କ କଳ୍ପନାତୀତ । କୃତ୍ତିବାସ ଦୟନୀୟ ଭବେ

ମାଧୋଦିନର ଦସ୍ତରରେ ବସିଥାନ୍ତି, ଏତିକି ବେଳେ ଅପ୍ରତ୍ୟାଶିତ ରୂପେ ଶ୍ରୀଧର ଗୌନ୍ତିଆ ସେଠାରେ ପହଞ୍ଚି ଗଲେ । ତାଙ୍କୁ ଦେଖି ସେ ବିସ୍ମିତ ହେବା ସାଙ୍ଗେ ସାଙ୍ଗେ ମାଧୋଦିନଙ୍କୁ କହିଲେ ଯେ ୟେ ହେଉଛନ୍ତି ମୋର ହିତୈଷୀ ବ୍ୟକ୍ତି । ୟାଙ୍କ ଦେହରେ କେବେ ମଧ୍ୟ ହାତ ଦେବ ନାହିଁ । ମାଧୋଦିନ ତାହା ଶୁଣି ଦୁଃଖ ପ୍ରକାଶ କରି ପାଁ ଲଗୁ ମହାରଜ୍; ମେରା କସୁର ହୋ ଗୟା କହି ୨ଟି ଟଙ୍କା ଦେଇ ଦାଶଙ୍କୁ କ୍ଷମା ମାଗିଥିଲା । ଶ୍ରୀଧର ବାବୁ ମଧ୍ୟ ତାଙ୍କୁ ଘରକୁ ଡାକି ନେଲେ ଏବଂ ଗୌନ୍ତିଆଣୀଙ୍କ ଆଗରେ ଦାଶେ ଯେତେବେଳେ ସମସ୍ତ କଥା କହି ଦେଲେ ଗୌନ୍ତିଆ ଓ ଗୌନ୍ତିଆଣୀ ଦାଶଙ୍କୁ ସମବେଦନା ଜଣାଇ ଗୋଟିଏ ନୂତନ ଗାମୁଛା ଏବଂ କିଛି ଉଖୁଡ଼ା ତହିଁରେ ବାନ୍ଧି ଦେଇ ବିଦାୟ କରିଥିଲେ ।

## ହନୁମାନ ମନ୍ଦିର —

ଗାଁରେ ଆଗେ ଗୋଟିଏ ଥାନା ଥିଲା । ୬ ଜଣ ସିପାହୀ ଓ ଜଣେ ଥାନାବାବୁ ରହିଥାନ୍ତି । ରେମଣ୍ଡା ଥାନାଟିର ଆୟତନ ଯାହା ଥିଲା ସେହି ହିସା-ବରେ ରେମଣ୍ଡା ଗ୍ରାମଟିର ଅବସ୍ଥିତି ଥାନା ପରିସୀମା ବୃତ୍ତର କେନ୍ଦ୍ରସ୍ଥଳରେ ନ ଥିବାରୁ ଚୋରି, ଡକାୟତି ଧରିବାକୁ ଥାନାରୁ ବହୁତ ଦୂର ଯିବାକୁ ପଡ଼ୁଥିଲା । ସେଥିପାଇଁ ରେମଣ୍ଡାରୁ ପୋଲିସ ଅଫିସ ଭେଡେନକୁ ଉଠିଗଲା ୧୯୦୬ ଖ୍ରୀଃରେ ।

କୃତ୍ତିବାସ ଦାଶଙ୍କ ମଧ୍ୟମ ପୁତ୍ର ଶ୍ୟାମସୁନ୍ଦର ଦାଶ ବାଲ୍ୟକାଳରୁ ଈଶ୍ୱର ଭକ୍ତି ପରାୟଣ ଥିଲେ । ଦିନେ ପୁରାଣ ପାଠ ଶୁଣିବାକୁ ଯାଇ ଅବଗତ ହେଲେ ଯେ କଳିଯୁଗରେ ହନୁମାନ ହେଉଛନ୍ତି ପ୍ରତ୍ୟକ୍ଷ ଦେବତା । କାରଣ ଅଷ୍ଟ ଚିରଞ୍ଜିବୀ ମଧ୍ୟରୁ ସେ ଅନ୍ୟତମ । ତାଙ୍କର ଏକ ମୂର୍ତ୍ତି ଆଣି ଘରେ ପୂଜା କରିବା ତାଙ୍କର ଚିରପୋଷିତ ଅଭିଳାଷ । ବିଗ୍ରହ ନିର୍ମାଣ ପାଇଁ ସେ ଏକ ପ୍ରସ୍ତର ଖୋଜୁ-ଥାନ୍ତି । ଭଗବାନ ଭକ୍ତର ମନୋବାଞ୍ଛା ପୂରଣ କରିବାରେ ସର୍ବଦା ତତ୍ପର । ସେ ସେତେବେଳେ ସ୍କୁଲରେ ପଢୁଥାନ୍ତି । ଦିନେ ରାତିରେ ସ୍ୱପ୍ନ ଦେଖିଲେ ଯେ ତାଙ୍କ ଘର ବାଟକୁ ଲାଗି ୨ ହାତ ଅନ୍ତରରେ ସର୍ବସାଧାରଣ ରାସ୍ତାରେ ୨ ଫୁଟ ଗଭୀରରେ ଏକ ପ୍ରସ୍ତର ରହିଛି ଏବଂ ସେ ତାକୁ ଖୋଳି ବାହାର କରୁଛନ୍ତି ।

ରାତିରେ ଏହି ସ୍ୱପ୍ନ ଦେଖି ଥିବାରୁ ସକାଳୁ ତାଙ୍କର ଏକ ଘନିଷ୍ଟ ବନ୍ଧୁ କେଶବ ଶତପଥୀଙ୍କୁ ଏକଥା କହିଲେ ! କେଶବ ଏ କଥା ଶୁଣି କହିଲେ ଚାଲ ମାଟି ଖୋଳିବା । ପିତାମାତା କାଳେ ଏଥିରେ ବାଧା ଦେବେ ଏହା ଚିନ୍ତା କରି ମନର କଥା ମନରେ ରଖି ଶ୍ୟାମସୁନ୍ଦର ବାବୁ ନୀରବ ରହୁଥାନ୍ତି ।

ଆଉଦିନେ ପୁଣି ସେହି ସ୍ୱପ୍ନ ଦେଖିଲେ । ଏଥର ବି ଚୁପ ରହିଲେ । ଏପରି ଭବେ ୧୫ ଦିନ ବିତିଗଲା । ଆଉ ଦିନେ ଯେତେବେଳେ ଠିକ୍ ପୂର୍ବଦିନ ମାନଙ୍କ ପରି ସେହି ସ୍ୱପ୍ନ ଦେଖନ୍ତି ତେବେ ଏଥର ସେ କୌତୁହଳୀ ହୋଇ ସେକଥା ତାଙ୍କ ମାଆ କୌଶଲ୍ୟା ଦେବୀଙ୍କ ଆଗରେ ପ୍ରକାଶ କଲେ । ପିଲାର ମୁହଁରୁ ସ୍ୱପ୍ନ କଥା ଶୁଣି କୌଶଲ୍ୟା ବି କହିଲେ ଯେ ବାବୁ, ମୁ ବି ଠିକ୍ ସେହିପରି ଏକ ସ୍ୱପ୍ନ ଗତ ରତିରେ ଦେଖିଲି । ହୁଏତ ନିଜେ ହନୁମାନ ଆସି ଏହା ନିର୍ଦ୍ଦେଶ ଦେଇଛନ୍ତି । ତୋର ବାପା ଆସନ୍ତୁ ତାଙ୍କୁ କୁହି ମାଟି ଖୋଳିବା । ଯଦି ସତରେ ହନୁମାନ ଏହା କହିଥାନ୍ତି ତେବେ ପଥର ନିଷ୍ଚୟ ବାହାରିବ । କୃତ୍ତିବାସ ଦାଶଙ୍କ କାନକୁ କଥାଟି ଗଲା ଏବଂ ସେ ଏଥିରେ ବିସ୍ମୟ ପ୍ରକାଶ କରି ସଙ୍ଗେ ସଙ୍ଗେ ମାଟି ଖୋଳିବାକୁ ବାହାରି ପଡଲେ । ମାଟି ଖୋଳା ହେଲା । କିଛି ମାଟି ଖୋଳି ସାରି-ଛନ୍ତି ତାପରେ ଦେଖିଲେ ଯେ ୪ ଇଞ୍ଚ ମୋଟା ଆୟତାକାର ବିଶିଷ୍ଟ ଦେଢଫୁଟ ଲମ୍ୱ ଥିବା ଏକ ସୁନ୍ଦର ମୂର୍ତ୍ତି ଗଠନ ଉପଯୋଗୀ ଏକ ପ୍ରସ୍ତର ବାହାରି ପଡ଼ଲା । ପଥରଟିକୁ ଦେଖି ସମସ୍ତେ ହତ୍‌ବାକ୍ ହୋଇଗଲେ । ତାପରେ ପିତାପୁତ୍ର ଉଭୟ ପଥର ଖଣ୍ଡକୁ ଧୂଆ ଧୋଇ କରି ଦେଇ ତତ୍‌କ୍ଷଣାତ୍ ଯାଗେଶ୍ୱର ମାହାଣା ନାମ-ଧେୟ ଜନୈକ ମୂର୍ତ୍ତି ଖୋଦନକାରୀ ବ୍ୟକ୍ତିଙ୍କ ନିକଟରେ ପହଞ୍ଚି ତାଙ୍କୁ ସମସ୍ତ କଥା କହି ହନୁମାନଙ୍କ ଏକ ବିଗ୍ରହ ଗଢ ଦେବାକୁ ଅନୁରୋଧ କଲେ ।

ଯାଗେଶ୍ୱର ପ୍ରାୟ ସପ୍ତାହକ ପରେ ଏକ ସୁନ୍ଦର ମୂର୍ତ୍ତି ବାମ ହାତରେ ପର୍ବତ, ଡାହାଣ ହାତରେ ଗଦା ଧରିଥିବା ଦକ୍ଷିଣମୁଖୀ ଏକ ହନୁମାନ ବିଗ୍ରହ ଅତି ସୁନ୍ଦର ଭବେ ଗଢଦେଲେ ।

ଶ୍ୟାମସୁନ୍ଦର ମୂର୍ତ୍ତିଟିକୁ ପ୍ରତିଷ୍ଠା କରଇ ଏଣିକି ଘରେ ପୂଜା କରିବାକୁ ଲାଗିଲେ । ଏପରି ଭବେ କେତେକ ମାସ କଟିଗଲା । ଦିନେ ଶ୍ୟାମସୁନ୍ଦର ଭବିଲେ ଯେ ହନୁମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ମନ୍ଦର ଦରକାର । ପୋଡା ଇଟା କିମ୍ବା ଚୂନ ମିଳିବା ତାଙ୍କ ପକ୍ଷେ କାଠିକର ପାଠ ।

ହଠାତ୍ ଦିନେ ସେ ଭବିଲେ ଯେ ମନ୍ଦର ନିର୍ମାଣ କରିଦେବା ପାଇଁ ସେ ଥାନାବାବୁ ଲୋକନାଥ ବିଶୀଙ୍କୁ କହିବେ । କିପରି ଭବେ ଏବଂ କଣ ବୋଲି ସେ ଥାନାବାବୁଙ୍କୁ କହିବେ ଏହା ଚିନ୍ତା କରୁ କରୁ ତାଙ୍କ ମନେହେଲା ଯେ ସେ ଏଥିପାଇଁ ଏକ ଗୀତ ଲେଖି ଥାନାବାବୁଙ୍କୁ ଭେଟିବେ ଏବଂ ତାଙ୍କୁ କହିବେ । ତା ଆରଦିନ ଗୀତଟାଏ ଲେଖିଲେ ଏବଂ ଥାନାବାବୁଙ୍କୁ ଯାଇ ଦେଲେ । ଥାନାବାବୁ ଲୋକନାଥ ବିଶୀ ଗୀତଟି ପାଠକରି ସଙ୍ଗେ ସଙ୍ଗେ କହିଁଲେ ଯେ ବାବୁ, ମୁ ଏଥି-

ପାଇଁ ଗତ ରାତିରେ ଏକ ସ୍ୱପ୍ନ ଦେଖିଛି । ସେଥିରେ ମହାବୀର ମୋତେ ଆଦେଶ ଦେଇଛନ୍ତି ଯେ ଗୋଟିଏ ଛୋଟିଆ ମନ୍ଦିର ତୋଳି ଦେବାକୁ । ଠିକ୍ ଅଛି, କାଲି ଏହାର ଶୁଭ ଦେବା ଏବଂ ମନ୍ଦିର ତିଆରି କରିବା । ସେତେବେଳେ ରେମଣ୍ଡା ଥାନା ଘର ନିର୍ମାଣ କାମ ଲାଗିଥାଏ ।

ଥାନାବାବୁ ଲୋକନାଥ ବିଶୀ ତାପରେ କୃତ୍ତିବାସ ଦାଶଙ୍କ ଘରର ଏକ ଅଂଶରେ ରାସ୍ତା କଡକୁ ଲାଗି ଏକ ମନ୍ଦିର ତିଆରି କରାଇ ଦେଲେ । ତଦବଧି ହନୁମାନ ଠାକୁର ଦାଶ ଘରେ ପୂଜିତ ହୋଇ ଆସୁଛନ୍ତି । ସନ ୧୯୭୪ ସାଲରେ ଶ୍ୟାମସୁନ୍ଦର ଦାଶଙ୍କ ଭାଇ ମନବୋଧ ଦାଶ ମନ୍ଦିରଟିକୁ ପୁଣି ନୂତନ ଭାବେ ତୋଳାଇ ଦେଇ ଅଛନ୍ତି ।

ମନ୍ଦିର ତୋଳା ହେବାର ବହୁ ବର୍ଷ ପରର ଏକ ଘଟଣା । ଗାଁରେ ମାଧୋଦିନ ପହିଲମାନର ରାଜୁତି ଚାଲିଥାଏ । ଆଗରୁ କୁହାଯାଇଛି ଯେ ମାଧୋଦିନ କୃତ୍ତିବାସ ଦାଶ ରହୁଥିବା ଘରପାଖେ ଥିବା ପଡୋସୀ ଘରକୁ ଯିବା ଆସିବା କରୁଥାଏ ଏବଂ ପଡୋସୀ ଘର ଲୋକେ ଦାଶ ପରିବାର ପ୍ରତି ଅସୂୟା ଭାବ ଦେଖାଇ ଆସୁଥାନ୍ତି । ବୈରସାଧନ ପାଇଁ ଥରେ ଚେଷ୍ଟା କରି ଦାଶଙ୍କୁ ମାତ କରାଇ ପାରି ନ ଥିବାରୁ ମନରେ ପ୍ରତିଶୋଧ ବହ୍ନି ପ୍ରଜ୍ୱଳିତ ହେଉଥାଏ । ଏହି ପରିସ୍ଥିତିରେ ଦିନେ ଉକ୍ତ ପଡୋସୀ ଘର ଧାନ ଭରଣ ଶଗଡ ଆଣୁଥିବା ବେଳେ ହନୁମାନ ମନ୍ଦିର ଥିବା ବାହାର ପିଣ୍ଡାରେ ଆଘୂଡ଼ ହୋଇ ଖଣ୍ଡିଆ ଖାବରା ହୋଇ ଗଲା । ବୋଲିବା ବାହୁଲ୍ୟ ଯେ କୃତ୍ତିବାସ ଦାଶଙ୍କ ପତ୍ନୀ ମନ୍ଦିର ବାହାର ପଟ କାଛରେ ମାଟି ଲେପିଦେଇ ପିଣ୍ଡା ଆକାରରେ ତିଆରି କରିଥିଲେ । ପଡୋସୀ ଘର ଶଗଡ ଦ୍ୱାରା ତାହା କ୍ଷତ ବିକ୍ଷତ ହେବା ଦେଖି ତାଙ୍କୁ କେତେକ କଥା ଏଥିପାଇଁ କହି ପକାଇଲେ । ସେମାନେ ତ ଏଥିପାଇଁ ସମୟ ଖୋଜୁଥିଲେ । ଏଙ୍କର କଥା ଶୁଣି ସେମାନେ ବି ମଫସଲି ପ୍ରକୃତିରେ ଗାଳି ହେବା ଆରମ୍ଭ କରିଦେଲେ ଏବଂ ପରିଣାମରେ ମାଧୋଦିନ ଦ୍ୱାରା ଉକ୍ତ ପିଣ୍ଡାକୁ ମୂଳରୁ ଛାଞ୍ଚି ଦେବାକୁ ଷଡଯନ୍ତ୍ର କରି ମାଧୋଦିନଙ୍କୁ ନାନା କଥା କହି ଉସୁକାଇ ଦେଲେ । ଫଳରେ ମାଧୋଦିନ ନିଜ ତଥା କଥିତା ପ୍ରଣୟିନୀଙ୍କୁ ତୁଷ୍ଟ କରିବା ପାଇଁ ଏକ କୋଡ଼ ଦ୍ୱାରା ମନ୍ଦିର ସଂଲଗ୍ନ ପିଣ୍ଡାକୁ ଉତ୍ତର ପଟୁ ହାଣି ହାଣି ଦକ୍ଷିଣ ପଟକୁ ଅଗ୍ରସର ହେଲେ । ହନୁମାନଂକ ମନ୍ଦିର ସୀମାରେ ପହଞ୍ଚି ଯେତେବେଳେ ହାଣି ବସିଲେ ସେତେବେଳେ କୋଡ଼ର ମାଡ ମାଟିରେ ନ ପଡ଼ି ସିଧାସଳଖ ମାଧୋଦିନର ମୁଣ୍ଡ ଉପରେ ଯାଇ ପଡ଼ିଲା ଏବଂ ସେ ତତ୍କ୍ଷଣାତ୍ ସେହି ସ୍ଥାନରେ ତଳେ ପଡ ଯାଇ ମୂର୍ଚ୍ଛା ହୋଇ ଯିବା ସଙ୍ଗେ ସଙ୍ଗେ ମୁଣ୍ଡ ଫାଟି

ଭୀଷଣ ରକ୍ତସ୍ରାବ ଘଟିଲା । କିଛି ସମୟ ପରେ ତାର ଚେତା ଫେରିଲା । ଲୋକେ ତ ଆଗରୁ ଜମା ହୋଇ ମଜା ଦେଖୁଥାନ୍ତି । ସମକ୍ଷରେ ତାର ଏ ପ୍ରକାର ହୀନ-ମନ୍ୟରେ ସେ ନିଜକୁ ଅପମାନିତ ବୋଧ କରି ମ୍ରିୟମାଣ ହୋଇ ପଡ଼ଥାଏ ।

ଲୋକଙ୍କ ମଧ୍ୟରୁ ତାପରେ ଜଣେ କେହି କହିଲେ ଯେ ଅନ୍ୟର କଥାରେ ପଡ଼ି ତୁମ୍ଭେ ହନୁମାନଜୀଙ୍କ ମନ୍ଦିର ହାଣୁଥିଲ ଏଥିରେ ହନୁମାନ ବା ସହନ୍ତେ କିପରି ? ତେଣୁ ସେ ନିଜେ ତୁମ୍ଭଙ୍କୁ ଶାସ୍ତି ପ୍ରଦାନ କଲେ । ଏଥିରେ କାହାର ବା ହାତ ଅଛି ?

ସେପାଏ ସେ ଜାଣି ନ ଥିଲା ଯେ ସେଠାରେ ହନୁମାନଜୀଙ୍କ ମନ୍ଦିର ଅଛି ବୋଲି । ତାପରେ ସେ ଋଷି ମନ୍ଦିରରେ ବାର ବାର ମୁଣ୍ଡିଆ ମାଇଲା । ନାନା ପ୍ରକାର ଭେଟ ଅାଣି ଠାକୁରଙ୍କୁ ପ୍ରଦାନ କଲା । କାରଣ ସେ ନିଜେ ହନୁମାନଙ୍କ ଜଣେ ଭକ୍ତ ।

ସେହି ଦିନଠାରୁ ସେ ସେହି ବାଟରେ ଗଲାବେଳେ ମନ୍ଦିରରେ ଠାକୁରଂକ ଦର୍ଶନ କରି ଯିବା ଆସିବା କଲା ଏବଂ କୃତ୍ତିବାସଙ୍କୁ ପୁନର୍ବାର କ୍ଷମା ମାଗି ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାରେ ଲାଗିଲା ।

## ଭଗବାନ ଭକ୍ତର ଡାକ ଶୁଣନ୍ତି ।

ବାନ୍ଧ ଜାଣିଲେ ଖୋଷା ସୁନ୍ଦର କହି ଜାଣିଲେ କଥା ମଧୁର ପରି ଡାକି ଜାଣିଲେ ଭଗବାନ ମଧ୍ୟ ସେ ଯୁଗ ହେଉ ବା ଏ ଯୁଗ ହେଉ ସେ ବରାବର ଭକ୍ତର ଡାକ ଶୁଣିଥାନ୍ତି । କୃତ୍ତିବାସ ଦାଶଂକ ଜୀବନରେ ଏଭଳି ତ ବହୁ ଘଟଣା ଘଟିଥିଲା ତଥାପି ତନ୍ମଧ୍ୟରୁ ଗୋଟିଏ ଘଟଣା ହେଲା ଏହି—

ଆଗରୁ ଅବଶ୍ୟ ଲେଖା ଯାଇଛି ଯେ ସେ ତାଂକ ପିତାଂକ କୃତ ଋଣ ପରି-ଶୋଧ ପାଇଁ ବହୁବିଧ ପନ୍ଥାର ଆଶ୍ରୟ ନେଇଥିଲେ । ବିଭିନ୍ନ ପନ୍ଥା ମଧ୍ୟରୁ ଗନ୍ଥ ଗାୟନ କରିବା ଥିଲା ତାଙ୍କର ଗୋଟିଏ ଅନ୍ୟତମ ପନ୍ଥା । ସେ ଗାଁରେ ପ୍ରତିବର୍ଷ ବିଭିନ୍ନ ପଡାରେ ଗ୍ରୀଷ୍ମ ଋତୁ ବେଳେ ରମାୟଣ, ମହାଭାରତ ଆଦି ପୁରାଣ ପାଠ କରୁଥାନ୍ତି । ଏପରି ସମୟ ଆସେ ଯେତେବେଳେ ଦିନ ମଧ୍ୟରେ ସକାଳେ ଗୋଟିଏ ସ୍ଥାନରେ, ଦ୍ୱିପ୍ରହରେ ଗୋଟିଏ ଜାଗାରେ ଏବଂ ରାତିରେ ବି ଅନ୍ୟ ଏକ

ସ୍ଥାନରେ ପୁରାଣ ପାଠ କରୁଥିଲେ । ଫଳରେ ତାଙ୍କୁ ପେଟ ବଥା ରୋଗ ଆକ୍ରମଣ କଲା ଏବଂ ସେ ଏହି ରୋଗ ୧୪ ବର୍ଷ ଧରି ଭୋଗ କରିଥିଲେ ।

ଦିନକର କଥା । ସେ ଦିନ ରାତିରେ ତାଂକର ପେଟ ବଥା ଏତେ ତୀବ୍ରତର ଭାବେ ଯନ୍ତ୍ରଣା ପ୍ରଦାନ କଲା ଯେ ସେ ଆଉ ଶୋଇ ପାରିଲେ ନାହିଁ । ସେଥିପାଇଁ ଯେତେ ପ୍ରକାର ଔଷଧ କରି ଖାଇଲେ କାହିଁରେ ମଧ୍ୟ ବେମାର ଉପଶମ ନ ହେବାରୁ ଅନନ୍ୟୋପାୟ ହୋଇ ଶେଷରେ ଅତି ବିକଳ ଭାବେ ସେ ଭଗବାନ କୃଷ୍ଣଙ୍କୁ ଏକ ଗୀତ ରଚନା କରି ରାତିର ବହୁ ସମୟ ଯାଏ କେବଳ ସେହି ଗୀତ ବୋଲିବାରେ ଲାଗିଲେ । କେତେଥର ସେ ବୋଲି ଥିଲେଯେ ତାଂକର ଆଉ ମନେ ରହି ନ ଥିଲା ସତ କିନ୍ତୁ ଏପରି ବୋଲୁ ବୋଲୁ ଶେଷରେ ଆଖିରେ ନିଦ ଆସିଯାଇ ଥିଲା । ସକାଳ ପାହିଲା ବେଳକୁ ସେ ଅନୁଭବ କଲେ ଯେ ତାଂକ ରୋଗ ଛାଡ ଯାଇଛି । ସେଦିନ ତାଂକର ସେହି ବିକଳ ପ୍ରାର୍ଥନା ଭଗବାନଂକ କାନରେ ଯାଇ ବାଜିଲା ଏବଂ ସେ ଭକ୍ତର ଆତୁରତା ଶ୍ରବଣ କରି ଚିରଦିନ ପାଇଁ ତାଂକ ଦୀର୍ଘ ଦିନ ଧରି ରହିଥିବା ବ୍ୟାଧି ଦୂର କରି ଦେଲେ । ସେହିଦିନ ଠାରୁ ପ୍ରତ୍ୟହ ଭୋରରୁ ସେ ସେହି ଗୀତ ଗୋଟିକ ଅତ୍ୟନ୍ତ ସୁଶ୍ରାବ୍ୟ କଣ୍ଠରେ ବୋଲୁଥିଲେ । ଗୀତଟିକୁ ଏବେ ମଧ୍ୟ ତାଙ୍କର କନିଷ୍ଠ ପୁତ୍ର ମନବୋଧ ଦାଶ ସ୍ୱୀୟ ପିତାଙ୍କ ପଦାଙ୍କ ଅନୁସରଣ କରି ପ୍ରତ୍ୟହ ପ୍ରଭାତରୁ ବୋଲୁଛନ୍ତି । ଗୀତଟି ହେଲା —

ଅରକ୍ଷି ପଶର କୃଷ୍ଣ ଲଗାଉ କେତେ ଅରକ୍ଷି
ତବ ନାମ ରଟି ରଟି କେବେ ଦୁଃଖ ନ ଗଲାଟି
ଅରକ୍ଷି ପଶର କୃଷ୍ଣ ..........

କୋଳରେ ଧରି ଯଶୋଦା ଖଣ୍ଡିଲେ ଅପୁତ୍ରୀ ବାଧା
ଅମୃତ ରୋଗ ବିଳସୀ, ମାତା ଗଳା ଦେଲ କାଟି
ବ୍ରହ୍ମା ମନେ ଗର୍ବ କଲେ ବଛା ବାଳକ ହରିଲେ
ଭିଆଇ ଅଶେଷ ବଛା ଭଙ୍ଗିଲ ଗାରିମା ଗୋଟି
ବରୁଣ ମନରେ ଭବି କେବେ ନ ପାରିଲେ ଲଭି
ନନ୍ଦକୁ ଫେରାଇ ନେଇ ଲଭିଲା ଦର୍ଶନ ଗୋଟି
କୁବୁଜା କୁଜ ସଲଖି ବାମଭୁଜେ ଦେଲ ଟେକି
କୁରୂପାକୁ ରୂପ ଦେଲ ମୋହିଲା ସକଳ ସୃଷ୍ଟି
ଗଉତମ ଋଷି ନାରୀ ଅହଲ୍ୟା ନାମେ ସୁନ୍ଦରୀ
ତବ ପାଦ ପଦ୍ମ ଲାଗି ତା, ପାପଭାର ଗଲା ତୁଟି

ଏବଇ ଦ୍ୱନ୍ଦ୍ୱ କୁରୁତି, ସଦା ଧ୍ୟାୟୀ ଦାରୁମୂର୍ତ୍ତି
ଆତଙ୍କ ଦାରିଦ୍ର୍ୟ ଦୁଃଖୀ ମୋ ମୁଖେ କର ସୁଧା ବୃଷ୍ଟି

ଅରକ୍ଷି ପଶର କୃଷ୍ଣ ।



ରେମଣ୍ଡା ଏକ ପୁରାତନ ଏବଂ ଜନବହୁଳ ଗ୍ରାମ । ୧୮୬୨ ଖ୍ରୀ: ରେ ଏହି ଗ୍ରାମରେ ମିଡଲ ଭର୍ଣ୍ଣାକ୍ୟୁଲର ସ୍କୁଲ ସ୍ଥାପିତ ହୋଇଥିଲା । ସେହି ସମୟରେ ଏହି ପ୍ରକାର ସ୍କୁଲକୁ ଦୁଇ ପ୍ରକାରେ ନାମିତ କରଯାଉଥିଲା । ଭିଲେଜ ସ୍କୁଲ ଓ ଟାଉନ ସ୍କୁଲ । ରେମଣ୍ଡା ମିଡ଼ଲ ସ୍କୁଲକୁ ଭିଲେଜ ସ୍କୁଲ କୁହାଯାଉଥାଏ । ହିନ୍ଦ ଭଷା ମାଧ୍ୟମରେ ଲେଖାପଢା ତଥା ପରୀକ୍ଷା ମଧ୍ୟ ଚାଲୁଥାଏ । ଓଡ଼ିଆ ଥିଲା ଇଚ୍ଛାଧୀନ ବିଷୟ । ମିଡଲ ସ୍କୁଲରେ ବିଜ୍ଞାନ, ଜ୍ରଇଂ, ବୀଜଗଣିତ, କ୍ଷେତ୍ରତତ୍ତ୍ୱ ଆଦି ବିଷୟ ଗୁଡକ ଅତି ବିସ୍ତାର ସହ ଶିକ୍ଷା ଦିଆଯାଏ ।

ଶିକ୍ଷକ ମାନେ ଧଳା ପାଇଜାମା, କଳା କୋଟ ଓ ମୁଣ୍ଡରେ ଟୋପି ଲଗାଇ ସ୍କୁଲକୁ ପାଠ ପଢାଇବାକୁ ଯାଉଥାନ୍ତି । ଗାଁରେ ସ୍କୁଲ ଥିବା ହେତୁ କୃତ୍ତିବାସ ଦାଶ ତାଙ୍କର ତିନିଗୋଟି ପୁତ୍ରଙ୍କୁ ଉକ୍ତ ସ୍କୁଲରେ ପଢାଇ ଥିଲେ । ଜ୍ୟେଷ୍ଠ ପୁତ୍ର ନରହରି ଦାଶ ମିଡ଼ଲ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ଶିକ୍ଷକ ମାନଙ୍କ ତାଲିମ ପାଇଁ ସେହି ସମୟରେ ନାଗପୁର ଟ୍ରେନିଂ ସ୍କୁଲକୁ ଅଧ୍ୟୟନ କରିବା ସକାଶେ ଯିବାକୁ ପଡୁଥିଲା ।

ସେହି ପରିପ୍ରେକ୍ଷୀରେ ନରହରି ନାଗପୁର ଯାଇ ନର୍ମାଲ ଟ୍ରେନିଂ ପ୍ରାପ୍ତ ହୋଇଥିଲେ । ଯିବା ଆସିବା ପାଇଁ ସେହି ସମୟରେ କୌଣସି ଯାନବାହନର ସୁବିଧା ନ ଥାଏ । ନରହରି ଦାଶ ଚାଲି ଚାଲି ନାଗପୁର ଯାଇଥିଲେ । ତଦୀୟ ଭଇ ଶ୍ୟାମସୁନ୍ଦର ମିଡଲ ପରୀକ୍ଷୋତୀର୍ଣ୍ଣ ହୋଇ ଶିକ୍ଷକତା କରିଥିଲେ । ତାଙ୍କ ପଛକୁ ଶ୍ରୀ ମନବୋଧ ଦାଶ ମଧ୍ୟ ଶିକ୍ଷକତା କରିଥିଲେ । ଶ୍ୟାମସୁନ୍ଦର ସି. ପି. ସମୟରେ ଶିକ୍ଷକତା ଆରମ୍ଭ କରିଥିଲେ ମାତ୍ର ତାଲିମ ପାଇବା ପୂର୍ବରୁ ସମ୍ବଲପୁର ଜିଲ୍ଲା ଓଡ଼ିଶାରେ ମିଶି ଯାଇଥିଲା । ତେଣୁ ସେ ଏବଂ ତେଦୀୟ ଭଇ ବରଗଡ ଗୁରୁ ଟ୍ରେନିଂ ସ୍କୁଲରେ ଅଧ୍ୟୟନ କରି ତାଲିମପ୍ରାପ୍ତ ହୋଇଥିଲେ । ତିନି ଭଇ ଶିକ୍ଷା ବିଭାଗରେ ରହି ବେଶ ଦକ୍ଷତା ସହିତ କାର୍ଯ୍ୟ କରୁଥିବାର ପ୍ରଶସ୍ତି ରହି ଆସିଥିଲେ ହେଁ ଶ୍ୟାମ ସୁନ୍ଦର ବାବୁ ସର୍ବୋପରି ଜଣେ ଗରିଷ୍ଠ ସ୍ଥାନୀୟ ଶିକ୍ଷକ ତତ୍କାଳୀନ ସମୟରେ ଥିଲେ ଏହା ସର୍ବଜନ ବିଦିତ ଥିଲା ।

ତିନିଜଣ ଯାକ ଚାକିରୀ କଲାରୁ କୃତ୍ତିବାସ ଦାଶଙ୍କ ପରିବାରର ଆର୍ଥିକ

ଅବସ୍ଥା ଦିନୁଦିନ ଉନ୍ନତ ଅବସ୍ଥାରେ ଆସି ପହଞ୍ଚି ପାରିଥିଲା । କଥାରେ ଅଛି ମଣିଷ ଭଗ୍ୟରେ ତିନି ପୁରୁଷ ଯାଏ ଧନ ରହେ । ତାପରେ ପତନ ଘଟେ । ପତନ ପରେ ପୁଣି ଉତ୍ଥାନ ହୁଏ । ଦୟାନିଧି ଦାଶ ଦିନେ ଦେଓ୍ୱାନ ଥିଲେ । ସ୍ୱୀୟ ବିଚକ୍ଷଣ ବୁଦ୍ଧି ଯୋଗୁଁ ସେ ଯେଉଁ ଧନ ଉପାର୍ଜନ କରିଥିଲେ ତାହା ସେ, ତାଙ୍କର ପୁତ୍ର ବିଶ୍ୱନାଥ, ପୌତ୍ର ରାମଚନ୍ଦ୍ରଂକ ପର୍ଯ୍ୟନ୍ତ ରହିଲା । ରାମଚନ୍ଦ୍ର ତଥାପି ତାଂକର ଉତ୍ତର ଜୀବନରେ ଅଭାବଗ୍ରସ୍ତ ହୋଇ ପଡ଼ିଲେ । ଯୋଗକୁ ତାଂକର ବାଳପୁତ୍ର କୃତ୍ତିବାସ ଯେପରି ଅଶେଷ କୃତିତ୍ୱ ଘେନି ଜନ୍ମ ପରିଗ୍ରହ କଲେ । ଫଳରେ ଦାଶ ପରିବାର ପୁନରୟ ଉନ୍ନତ ଅବସ୍ଥାରେ ଆସି ପହଞ୍ଚି ପାରିଥିଲା ।

ନା ନା ଅସୁବିଧା, ବହୁବିଧ ପ୍ରତିବନ୍ଧକ ମଧ୍ୟରେ ରହି ମଧ୍ୟ କୃତ୍ତିବାସ ଏବଂ ତଦୀୟ ପତ୍ନୀ କୌଶଲ୍ୟା, ନାନାବିଧ ଉଦ୍ୟୋଗ, ପରିଶ୍ରମ, କର୍ମନିଷ୍ଠତା ତଥା ଈଶ୍ୱର ଭକ୍ତି ପରାୟଣତା ଯୋଗୁଁ ତଦୀୟ ପିତାଙ୍କ ଋଣରୁ ପ୍ରଥମେ ମୁକ୍ତିଲାଭ କରି କ୍ରମେ ନିଜର ୨ ଗୋଟି ଦୁହିତା ଓ ତିନିଗୋଟି ପୁତ୍ରଙ୍କୁ ଉପଯୁକ୍ତ ଶିକ୍ଷା ପ୍ରଦାନ ତଥା ବିବାହ ଆଦି କରାଇ ପାରିଥିଲେ । କିନ୍ତୁ ଭଗ୍ୟର ବିଡମ୍ବନା ବଶତଃ ତିନିଗୋଟି ବଧୂ ଘରକୁ ଆସିଥିଲେ ମଧ୍ୟ ତନ୍ମଧ୍ୟରୁ କେହି ଜଣେ ମଧ୍ୟ ସନ୍ତାନ-ବତୀ ହୋଇପାରି ନ ଥିଲେ । ପ୍ରବାଦ ଅଛି—

ହାତେ ଧନ, କର୍ମେ ପୁଅ ।

ଏହାରି ଅର୍ଥ ମଣିଷ ହାତ ବୋଇଲେ ଉଦ୍ୟମ, ଉତ୍ସାହ, ଅଧ୍ୟବସାୟ ବଳରେ ପ୍ରଚୁର ଧନର ଅଧିକାରୀ ହୋଇପାରେ, ସମାଜରେ ନିଜର ସୂକ୍ଷ୍ମାତିସୂକ୍ଷ୍ମ ବୁଦ୍ଧି, ଜ୍ଞାନ ବଳରେ ପ୍ରତିଷ୍ଠା ଅର୍ଜନ କରିବାରେ ସାମର୍ଥ୍ୟବାନ ହୋଇପାରେ କିନ୍ତୁ କର୍ମରେ ଅର୍ଥାତ୍ ଭଗ୍ୟରେ ନ ଥିଲେ ସେ ପୁଅ ପାଇ ପାରେ ନାହିଁ ।

କୃତ୍ତିବାସଙ୍କ ପରିବାରରେ ଗୋଟିଏ ଛୋଟ ପୁଅ ଘର ଅଗଣାରେ ଗୁରୁଣ୍ଡି ବୁଲନ୍ତା, ଏହି ଚିନ୍ତା ଘରର ସମସ୍ତଙ୍କ ଅନ୍ତରକୁ ସ୍ପର୍ଶ କରିଥିଲା । ଗୃହାଗତ ବଧୂଗଣ ଏଥିପାଇଁ କେତେବାର ବ୍ରତ କରିବାରେ ଲାଗିଥାନ୍ତି । ତଥାପି କେହି ସେହି ସୌଭଗ୍ୟ ଲାଭ କରିପାରି ନ ଥାନ୍ତି । ଇତ୍ୟବସରରେ କୃତ୍ତିବାସଙ୍କର ମଧ୍ୟମ ପୁତ୍ର ଶ୍ୟାମସୁନ୍ଦରଙ୍କର ପତ୍ନୀ ଯମୁନା ଦେବୀଙ୍କର ଗର୍ଭରୁ ଏକ ପୁତ୍ର ସନ୍ତାନ ୧୯୧୨ ଖ୍ରୀ:ରେ ଜନ୍ମ ଗ୍ରହଣ କଲା । ନବଜାତ ଶିଶୁର କୁଆଁ କୁଆଁ ରବ ଶୁଣି ଗୃହର ସମସ୍ତଙ୍କ ମନ ଉଲ୍ଲସୀ ଉଠିଲା । ତତ୍ପୂର୍ବରୁ ଜ୍ୟେଷ୍ଠ ପୁତ୍ର ନରହରିଙ୍କ ବିବାହର ବହୁ ବର୍ଷ ବିତି ଯାଇଥିଲେ ମଧ୍ୟ ତାଙ୍କ ଘରେ କୌଣସି ସନ୍ତାନ ଜନ୍ମି ନ ଥିବାରୁ ଏବଂ ନିକଟ ଭବିଷ୍ୟତରେ ଜନ୍ମ ହେବାର କୌଣସି ସମ୍ଭାବନା ମନେ ନ କରି

ନରହରି ଉକ୍ତ ନବଜାତ ପୁତ୍ରଟିକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରି ନେବାକୁ ପ୍ରସ୍ତାବ ଦେଲେ ଏବଂ ଉକ୍ତ ଗୃହରେ ସମସ୍ତଙ୍କ ଦ୍ୱାରା ଶେଷରେ ତାହା ଅନୁ-ମୋଦନ ଲାଭ କରିଥିଲା । ଯଥା ସମୟରେ ନବଜାତ ଶିଶୁର ଏକୋଇଶା ହେଲା ଏବଂ ସେହିଦିନ ଶିଶୁଟିର ନାମକରଣ କରି ଶ୍ୟାମସୁନ୍ଦର ବାବୁ ଶିଶୁଟିକୁ ନରହରି ଦାଶଙ୍କ ହାତରେ ସମର୍ପଣ କରିଦେଲେ ।

## ଘରେ ନ ପଶୁଣୁ ମୁଣ୍ଡରେ ଚାଳ ବାଜିଲା

ଯମୁନା ଦେବୀଙ୍କ ୧ମ ପୁତ୍ର ଜାତ ହେବାର ପ୍ରାୟ ବର୍ଷକ ପରେ ପୁଣି ଗର୍ଭୋଦୟ ହେଲା । ଏଥର ଗର୍ଭୋଦୟ ହେବା ଜାଣି ତାଂକର ଜ୍ୟେଷ୍ଠ ଯାଆ ଈର୍ଷାରେ ପ୍ରଜ୍ୱଳିତା ହୋଇ ଉଠିଲେ । ସେଥି ସକାଶେ ସେ ଯମୁନା ଦେବୀଂକି ନାନା କଟୁକଥା ମାନ କହିଲେ । ଫଳରେ ଯମୁନା ଦେବୀ ତଦ୍ୱାରା ଲଜ୍ଜିତା ତଥା ଅପମାନିତା ବୋଧକରି ଗୃହର ଅନ୍ୟାନ୍ୟ ମାନଙ୍କ ଅଗୋଚରରେ ଭ୍ରୁଣଟିକୁ ନଷ୍ଟ କରି ଦେବାପାଇଁ ପ୍ରଯତ୍ନଶୀଳା ହେଲେ ।

ରେମଣ୍ଡା ଗ୍ରାମର ଝମାରୀ ପଡାରେ ସେତେବେଳେ 'ବୁରେମଙ୍ଗି' ନାମରେ ଏକ ଦୁଷ୍ଟା ପ୍ରକୃତିର ସ୍ତ୍ରୀ ଲୋକଟାଏ ଥିଲା । ଯମୁନା ଦେବୀ ତାକୁ ଦିନେ କେତେ ପଇସା ଦେଇ ତାଠାରୁ ଭ୍ରୁଣଟିକୁ ନଷ୍ଟ କରି ଦେବାପାଇଁ କେତେକ ଚେର ମୂଳିଆ ଔଷଧ ସଂଗ୍ରହ କଲେ । ଘରେ କେହି ନ ଥିବା ବେଳେ ସେ ଦିନେ ସେହି ଔଷଧ ଖାଇବା ପାଇଁ ଶିଳରେ ବାଟୁଥାନ୍ତି । ଏଟିକି ବେଳେ ତାଙ୍କ ଘରକୁ ଲାଗିକରି ଥିବା ଏକ ଘରର ସରସ୍ୱତୀ ନାମରେ ଜନୈକା ସ୍ତ୍ରୀ ଲୋକ ଅପ୍ରତ୍ୟାଶିତ ଭାବେ ଆସି ଯମୁନାଙ୍କ ନିକଟରେ ଛିଡା ହୋଇଗଲେ । ଚୋର ମନ ଗଣ୍ଠିରେ ପରି ତାଙ୍କୁ ଦେଖି ଯମୁନା ଦେବୀ ଗୋଚାପଣେ ଥରିବାକୁ ଲାଗିଲେ । ସରସ୍ୱତୀ ତାହା ଦେଖି କୌତୁହଳୀ ହୋଇ ତାଙ୍କୁ ପଚାରିଲେ ଯେ ଥରୁଚୁ କାହିଁକି ? ଏବଂ ଏହା କଣ ବାଟୁଚ୍ଛୁ ସତକରି କହ ? ସରସ୍ୱତୀଂକ ଏହି ମୁରବି ପଣିଆ କଥାରେ ଯମୁନା ଶଙ୍କିଯାଇ ତାଂକ ଆଗେ ସବୁ କଥା କହିଗଲେ । ଯମୁନା ଠାରୁ କଥାଟି ଶୁଣି ସରସ୍ୱତୀ ରାଗରେ ଜଳି ଉଠିଲେ ଏବଂ ଶିଳରେ ବାଟୁଥିବା ଔଷଧକୁ ଜୋର କରି ଛଡାଇ ନେଇ ଖତ ଗଦାରେ ଫୋପାଡ ଦେଇଥିଲେ ।

ଯମୁନା ଦେବୀ ଏସବୁ ଦେଖି ହତଭମ୍ବ ହୋଇଗଲେ । କିଛି ସମୟପରେ

ନିଜକୁ ପ୍ରକୃତିସ୍ଥ ମନେକରି ସରସ୍ୱତୀଙ୍କୁ ଅତି ବିକଳ ଭବେ ଅନୁରୋଧ କଲେ ଯେ ଏକଥା କାହାରି ଆଗେ ପ୍ରକାଶ ନ କରିବା ପାଇଁ । ସରସ୍ୱତୀ ତାଂକର ବିକଳ ଭବ ଦେଖି ଶେଷରେ କାହାରି ଆଗେ ପ୍ରକାଶ ନ କରିବାକୁ ମଧ୍ୟ ସ୍ୱୀକୃତା ହୋଇ ଥିଲେ । କଥାଟି ସେଦିନ ସମାପ୍ତ ଘଟିଥିଲା ସତ୍ୟ ହେଲେ କେତେକ ଦିନ ପରେ ସେକଥା ସମସ୍ତେ ଜାଣି ପାରି ଯମୁନାଙ୍କୁ ଗୃହର ମୁରବୀ ଅର୍ଥାତ୍ ଶାଶୁ, ଶ୍ୱଶୁର ପ୍ରଭୃତି ଝିଙ୍ଗାସ କରିଥିଲେ ।

ଭ୍ରୁଣରୁ ବିପତ୍ତି ଘେନି ଜନ୍ମି ଥିବା ଶିଶୁଟି ୧୯୨୫ଖ୍ରୀ: ଆଷାଢ କୃଷ୍ଣ ନବମୀ ବୁଧବାର ଇଂରାଜୀ ୧୭ । ୬ । ୧୫ଇ: ରେ ଭୂମିଷ୍ଠ ହୋଇଥିଲା । ଏହି ଶିଶୁଟିର ଜନ୍ମବେଳେ କୌଣସି ବାଜା ଆଦି ବାଜି ନ ଥିଲା କିମ୍ବା କୌଣସି ଉତ୍ସବ ଆଦିର ଆୟୋଜନ ମଧ୍ୟ କରା ଯାଇ ନ ଥିଲା ।

ମହାବୀରଂକ କୃପାରୁ ପିଲାଟି ଜନ୍ମଲାଭ କରିଛି ବୋଲି ଭବି ଶ୍ୟାମ-ସୁନ୍ଦର ତାଂକ ମାଆ କୌଶଲ୍ୟା ଦେବୀଂକି କହିଲେ ଯେ ମାଆ ଏ ପିଲାଟିର ଜନ୍ମ ଏକ ଆଶ୍ଚର୍ଯ୍ୟ ଧରଣର ଅଟେ । କଥାରେ ଯାହା ଅଛି ଯେ ଘରେ ନ ପଶୁଣୁ ମୁଣ୍ଡରେ ଝଳ ବାଜିବା ପରି ଏ ପିଲାଟି ଜନ୍ମଲାଭ କରିଛି ତେଣୁ ଏହାର ନାମ ମହାବୀର ରଖାଯାଉ । କୌଶଲ୍ୟା ଦେବୀ ମଧ୍ୟ ପୁଅର ଏହି କଥାରେ ସହମତ ହୋଇଥିଲେ ।

ପରେ ଉକ୍ତ ପିଲାଟିର ନାମ ବୀରବର ରଖା ଯାଇଥିଲା । ପରିବାର ମଧ୍ୟରେ ଦୁଇଗୋଟି ପୁତ୍ର ସନ୍ତାନର ଉପସ୍ଥିତି ତନ୍ମଧ୍ୟରୁ ଗୋଟିକର ଦଉଡ଼ି କଥା, ଅପରଟିର କୁଆଁ କୁଆଁ ରବ ଶୁଣି ସମସ୍ତଂକ ମନ ଉଲ୍ଲାସରେ ପୁଲକିତ ହୋଇ ଯାଉଥିଲା । ସମସ୍ତଙ୍କର ଆଦର, ସ୍ନେହ ମମତା ଘେନି ଶିଶୁ ଦୁଇଟି ଚନ୍ଦ୍ର-କଳା ପରି ଦିନୁଦିନ ବଢ଼ି ଉଠୁଥାନ୍ତି । ମାତୃସ୍ତନ୍ୟ ପାନ କରି ଦ୍ୱିତୀୟ ଶିଶୁଟି ମଧ୍ୟ ବେଶ୍ ହୃଷ୍ଟପୁଷ୍ଟ ହୋଇଥାଏ । ଏପରି ଭବେ ଛଅ ସାତ ମାସ ଗଡ଼ିଗଲା ।

ଦିନେ ଯମୁନା ଦେବୀ ସାନ ପିଲାଟିକୁ ସକାଳେ ତେଲ ଆଦି ଲଗାଇ ଦେଇ ଖଟରେ ଶୁଆଇ ଦେଲେ ଏବଂ ଗାଧୋଇବା ପାଇଁ ପୋଖରୀକି ଚାଲି-ଗଲେ । ଗାଧୋଇ ଆସି ଓଦା ଲୁଗା ପିନ୍ଧି ପ୍ରଥମେ ସେ ଶିଶୁଟିର ପାଖକୁ ଗଲେ । ସେତେବେଳେ ସେ ଯାହା ଦେଖିଲେ ସେଥିରେ ତାଙ୍କ ଦେହ ଶିହରି ଉଠିଥିଲା । ଦେଖିଲେ ଯେ ଶିଶୁଟିର ମୁହଁରେ କିଏ ଚେଳାଏ ଅଫିମ ଭରି ଦେଇଛି ଏବଂ ଭଗ୍ୟବଶତଃ ତାହା ଶିଶୁଟିର ପେଟ ଭିତରକୁ ଯାଇ ନ ପାରି ଲାଳ ରସ ସହ ପଦାକୁ ବାହାରି ଆସି ଶିଶୁଟିର ଗାଲରେ ଲାଗି ରହିଛି । ଯମୁନା ଦେବୀ ଏ ଦୃଶ୍ୟ

ଦେଖି ଅବାକ୍ ହୋଇ ସେହି ଓଦାଲୁଗା ପିନ୍ଧି ଶିଶୁଟିର ନିକଟରେ ବହୁ ସମୟ ଧରି ଛିଡା ହୋଇ ରହି ଯାଇଥାନ୍ତି । ଇତ୍ୟବସରରେ ତାଂକର ଶାଶୁ କୌଶଲ୍ୟା ତାଂକର ଏପରି ଅବସ୍ଥାରେ ଛିଡା ହେବା ଦେଖି ଓଦାଲୁଗା ଶୀଘ୍ର ନ ବଦଳାଇ-ବାରୁ ବିରକ୍ତି ବ୍ୟଞ୍ଜକ ସ୍ୱରରେ କହିଲେ ଯେ 'ହଲେ ଯମୁନା, ଲୁଗା ବଦଳାଇବୁ ନା ଟୁଆକୁ ସେମିତି ଦେଖି ରହିଥିବୁ ।' ଯମୁନା ତାହା ଶୁଣି କାନ୍ଦ କାନ୍ଦ କହିଲେ ଯେ ପାଖକୁ ଆସ ଦେଖିବ କଣ ହୋଇଛି ?

କୌଶଲ୍ୟା ଦେବୀ ଶିଶୁ ନିକଟକୁ ଯାଇ ଦେଖିଲେ ଯେ ଟେଳାଏ ଅଫିମ ଟୁଆର ଗାଲରେ ଲାଖି ରହିଛି । ବିସ୍ମୟରେ ସେ ବି ହତବାକ୍ ହୋଇ ସେଠାରେ ସେମିତି ଛିଡା ହୋଇଗଲେ । କ୍ରମେ କୃତ୍ତିବାସ ମଧ୍ୟ ଆସିଗଲେ ଏବଂ ସବୁକଥା ବୁଝି ପାରି କଥାଟିକୁ ଆଉ ବେଶୀ ପ୍ରଘଟ ନ କରିବାକୁ ସମସ୍ତଙ୍କୁ ଅର୍ଥାତ୍ ପତ୍ନୀ କୌଶଲ୍ୟାଙ୍କୁ ତଥା ଯମୁନା ଦେବୀଙ୍କୁ କହିବା ସଙ୍ଗେ ସଙ୍ଗେ ସେହି ଅଫିମ ଟେଳାଟିକୁ ନେଇ ଆସି ନିଜ ବାକ୍ସ ମଧ୍ୟରେ ରଖି ଦେଲେ ।

କିଏ ଏ ଅଫିମ ଦେଇ ଶିଶୁଟିକୁ ମାରି ଦେବାକୁ ଚାହିଁଥିଲା ଏକଥା ଜାଣିବାକୁ ଆଉ ବାକୀ ରହିଲା ନାହିଁ । ସେହିଦିନ ଠାରୁ କୌଶଲ୍ୟା ଦେବୀ ଶିଶୁ-ଟିର ବିଶେଷ ତତ୍ତ୍ୱ ଅର୍ଥାତ୍ ଯମୁନା ଗାଧୋଇ ଗଲେ କିମ୍ବା ଅନ୍ୟ କାମରେ ବ୍ୟାପୃତା ଥିଲେ ଶିଶୁଟିର ପାଖେ ପାଖେ ଜଗି ରହି ଚଳିଲେ ।

ସେତେବେଳେ ନରହରି ଦାଶ କୁବେଡେରା ସ୍କୁଲରେ ହେଡପଣ୍ଡିତ, ଶ୍ୟାମସୁନ୍ଦର ମାନପୁର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଏବଂ ମନବୋଧ ମେହେନା ସ୍କୁଲରେ ଶିକ୍ଷକତା କରୁଥାନ୍ତି । ରବିବାର ବ୍ୟତୀତ ଅନ୍ୟ ଦିନ ମାନଂକରେ ସେମାନେ କର୍ମକ୍ଷେତ୍ର ମାନଂକରେ ରହୁଥାନ୍ତି । ତେଣୁ ସଂପୃକ୍ତ ଘଟଣା ଜାଣିବା ନିମିତ୍ତ ସେମାନଙ୍କର ଅବସର ନ ଥିଲା । ବଡ ସତର୍କତାର ସହିତ କୃତ୍ତିବାସ ଦାଶ ଘଟଣାଟିକୁ ପିଲାଙ୍କ କାନକୁ ଯିବାକୁ ନ ଦେଇ ଚୁପି ଦେଇଥିଲେ ।

ଏସବୁ ସତ୍ତ୍ୱେ ଶ୍ୟାମସୁନ୍ଦରଙ୍କୁ ଯମୁନା ଦେବୀ ସବୁ କଥା ଜଣାଇ ଦେଇ ଥିଲେ । କଥାଟି ଶୁଣିବା ପରେ ତାଙ୍କ ମୁଣ୍ଡ ପ୍ରଥମେ ଘୂରିଗଲା । ଶିଶୁଟିର ଭବୀ ଜୀବନର ନିରପତ୍ତା ସକାଶେ ସେ ବ୍ୟସ୍ତ ହୋଇ ପଡଲେ । ନିଜ ମାଆଙ୍କ ସହିତ ନିଭୃତରେ ଏଥିପାଇଁ ଆଲୋଚନା କରିବାକୁ ଲାଗିଲେ । ଘର ଲୋକଙ୍କ ଯଦି କୁମ୍ଭୀର ହେବ ତେବେ ଯିବେ କୁଆଡେ ? ସେହି ସମୟରେ ଛୋଟ ଛୋଟ ପିଲାଙ୍କୁ ଭଲ ନିଦ ହେବ, ହଜମ ଶକ୍ତି ବଢ଼ିବ ବୋଲି ଘରି ଅଫିମ ଟିକିଏ ଲେଖା ଦୁଇବେଳା ଖୁଆଉଥାନ୍ତି । ମାଆ ପୁଅ ବିହେଯାକ ବିଶେଷ ଚିନ୍ତା କରି ଏଣିକି ଅଫିମ ଖୁଆଇବା ଭର ଯିଏ ଏହା କରିଛି ବୋଲି ତାଙ୍କର ହୃଦ୍‌ବୋଧ ହୋଇଥିଲା ତାଙ୍କ ଉପରେ

ଦେବା ସ୍ଥିର କଲେ । [redacted] । ବହୁ ବର୍ଷଯାକେ ଏହି ବିଷୟ ମନବୋଧ କିମ୍ବା ତାଂକ ସ୍ତ୍ରୀ ତଥା ନରହରି ବାବୁ ମୋଟେ ଜାଣିପାରି ନଥିଲେ । ନରହରି ଯଦି ଏକଥା ଜାଣି ପାରିଥାନ୍ତେ ତେବେ ଘଟଣାଟି ଭୟଙ୍କର ରୂପ ଧାରଣ କରିଥାନ୍ତା

ତିନି ଭାଇଂକ ମଧ୍ୟରେ ଶ୍ୟାମସୁନ୍ଦର ଥାନ୍ତି ଅତ୍ୟନ୍ତ ଚାଲାକ୍, ଚତୁର, ବୁଦ୍ଧିମାନ ତଥା କୌଶଳୀ । ନରହରି ଥାନ୍ତି ଅତ୍ୟନ୍ତ ସରଳ ବିଶ୍ୱାସୀ, ନିଷ୍କପଟ ତଥା ଅନ୍ୟାୟ ଅତ୍ୟାଚାର ଦେଖିଲେ ସେ ଅତ୍ୟନ୍ତ କ୍ରୋଧୀ ହୋଇ ପଡୁଥାନ୍ତି । ସାହିତ୍ୟ, ସଂସ୍କୃତି ଦିଗରେ କିନ୍ତୁ ତିନି ଭାଇ ଯାକ ସଚେତନଶୀଳ । ସେଥିପାଇଁ ତାଂକ ଘରକୁ ସେତେବେଳେ ସମ୍ବଲପୁର ହିତୈଷିଣୀ, ଗଡଜାତ ବାସିନୀ, ଶକ୍ତି, ଉତ୍କଳ ମଧୁପ, ଉତ୍କଳ ଦୀପିକା ଆଦି ବିଭିନ୍ନ ପତ୍ର ପତ୍ରିକାମାନ ଆସୁଥାଏ । ଶ୍ୟାମସୁନ୍ଦର ପ୍ରତ୍ୟେକ ଭାଇ ଯେପରି ନିଷ୍ଠାର ସହ ପତ୍ର ପତ୍ରିକା ଗୁଡକ ପଢ଼ିବେ ଏବଂ ତାର ଆଲୋଚନା ଆଦି କରିବେ ସେଥିସକାଶେ ଗୃହରେ ଏକ ସୁନ୍ଦର ବାତାବରଣ ସୃଷ୍ଟି କରିଦେଇ ଥାଆନ୍ତି ।

## ଶ୍ୟାମସୁନ୍ଦରଙ୍କ ପିତୃମାତୃ ଭକ୍ତି

କଥାରେ ଅଛି ତୁଳସୀ ଦୁଇପତ୍ରରୁ ବାସେ । ଶ୍ୟାମସୁନ୍ଦରଙ୍କଠାରେ ଏହି ଗୁଣ ତାଙ୍କର ପିଲାଟି ଦିନରୁ ଥିବାର ଜଣା ପଡ଼ ଯାଇଥିଲା । ସେ ନିଜର ପିତାମାତାଙ୍କୁ ବିଶେଷ ଭକ୍ତି କରୁଥାନ୍ତି । ପ୍ରତିଦିନ ସକାଳୁ ଉଠି ସେ ନିଜର ପିତାମାତାଙ୍କୁ ଭକ୍ତିର ସହିତ ମୁଣ୍ଡିଆ ମାରୁଥିଲେ । ପିତାଙ୍କର ପ୍ରତ୍ୟେକ କାର୍ଯରେ ସେ ସହାୟତା କରିବା ନିଜର ଏକ ମୁଖ୍ୟ କାମ ବୋଲି ବିଚାରୁଥାନ୍ତି ।

ଏ ପ୍ରସଙ୍ଗେ ତାଂକର ବାଲ୍ୟ କାଳର କେତୋଟି କଥା ପ୍ରଣିଧାନ ଯୋଗ୍ୟ । ଆଗରୁ କୁହାଯାଇଛି ଯେ କୃତ୍ତିବାସ ଦାଶ ଏବଂ କୌଶଲ୍ୟା ଦେବୀ ପରିଶ୍ରମ କରି ନିଜ ହାତରେ ତାଂକର ଘର ତିଆରି କରିଥିଲେ । ବର୍ଷକୁ ଗୋଟିଏ ଲେଖା କୋଠରୀ ତିଆରି କରିବା ପରିକଳ୍ପନାରେ ସେମାନେ ତିନିଗୋଟି ଶୁବାଘର ଏବଂ ଗୋଟିଏ ରୋଷେଇଶାଳ ତିଆରି କରି ଦେଇଥାନ୍ତି । ଶେଷୋକ୍ତ ଶୁବାଘର ତିଆରିକରିବା ନିମିତ୍ତ ଦିନେ ରାତିରେ ଦମ୍ପତି କଥାବାର୍ତ୍ତା କରୁଥିବା ବେଳେ ଶ୍ୟାମସୁନ୍ଦର ସେମାନଙ୍କର ଯୋଜନା ନେଇ ଇଟା ତିଆରି କରିବା ଭାବନା କରୁଥିବାର ସେ ଜାଣି ପାରିଥିଲେ ।

ସେତିକିବେଳେ ସେ 'ସ୍ଥାନୀୟ ମାଇନର ସ୍କୁଲ'ର ଛାତ୍ର । ସ୍କୁଲ ପାଖରେ 'ବଡକଟା' ନାମକ ଏକ ବିଶାଳ ଜଳାଶୟ । ସେହି ଜଳାଶୟର ଶୁଖିଲା ପଟରେ ଗ୍ରାମର ଲୋକେ ତାଙ୍କର ଗୃହ ତିଆରି ପାଇଁ ଇଟା ପ୍ରସ୍ତୁତ କରି ରଖୁଥାନ୍ତି । ଲୋକେ ଇଟା ତିଆରି କରିବାର ଦେଖି ଶ୍ୟାମସୁନ୍ଦର ମଧ୍ୟ ଫୁରସତ୍ ଦେଖି ଉକ୍ତ ଲୋକଙ୍କ ଠାରୁ ଇଟାଛାଞ୍ଚ ମାଗିଆଣି ନିଜେ ପାଣି ବୋହି ମାଟି କାଦୁଅ କରି ଇଟା ଗଢ଼ିବାରେ ଲାଗିଲେ ।

ଏହିପରି କେତେ ମାସ ପରେ ପ୍ରାୟ ୩୦ ହଜାର ପରିକି ଇଟା ସେ ଗଢ଼ ଦେଇ ୨ଟି ଗଦା କରି ରଖି ଦେଇ ଥାଆନ୍ତି ।

କୃତ୍ତିବାସ ନିଜ ଘର ତିଆରି ପାଇଁ ଇଟା କିପରି କିଣିବା ଏହା ଚିନ୍ତା କଲାବେଳେ ଶ୍ୟାମସୁନ୍ଦର ନିଜର ବାପାଙ୍କୁ କହିଲେ ଯେ, "ବାପା, ଇଟା ପାଇଁ ଚିନ୍ତା ନାହିଁ, ମୁଁ ୩୦ ହଜାର ଇଟା ଗଢ଼ିଦେଇ 'କଟା' ତଳରେ ଗଦା ମାରି ରଖି ଦେଇଛି । ତୁମେ ଶଗଡ ନେଇ ଚାଲ, ମୁଁ ମୋର ଇଟା ଦେଖାଇ ଦେବି । ତାହା ଶୁଣି କୌଶଲ୍ୟା ଦେବୀ କହିଲେ, 'ତୁତ ପାଠ ପଢ଼ିବାକୁ ଯାଉଛୁ, ଇଟା ଗଢ଼ିଲୁ କେତେବେଳେ ?

ଶ୍ୟାମସୁନ୍ଦର କହିଲେ ତୁମ୍ଭେ ଏତେ ପ୍ରଶ୍ନ ଉଠାଉଛ କାହିଁକି ? ଚକୁଳି ଖାଇବ ନା ବିନ୍ଧ ଗଣିବ ? ଆମ ଘର ତିଆରି ପାଇଁ ଯେତିକି ଇଟା ଦରକାର ଚାଲ ନେଇ ଆସିବ ।

କୃତ୍ତିବାସ ପ୍ରଥମେ ବିଶ୍ୱାସ କରୁ ନ ଥିଲେ, ପରେ ଶ୍ୟାମସୁନ୍ଦର ତାଙ୍କୁ ନେଇ ଯେତେବେଳେ ତାଙ୍କର ୨ଟି ଗଦା ଇଟା ଦେଖାଇ ଦେଲେ, କୃତ୍ତିବାସ ମୁଣ୍ଡରେ ହାତଦେଇ ଥକ୍କା ହୋଇ ବସି ପଡ଼ିଲେ ।

ଶ୍ୟାମସୁନ୍ଦରଙ୍କର ଏହି କାର୍ଯ୍ୟ ତାଂକର ଛାତ୍ର ଜୀବନରେ ଘଟିଥିବାର ଜାଣି ପୁତ୍ରର ଭବିଷ୍ୟତ ନେଇ ନାନା କଥା ଚିନ୍ତା କରିଥିଲେ ।

ଆଉ ଥରକର କଥା । କୃତ୍ତିବାସ ତାଳପତ୍ର ସାହାଯ୍ୟରେ ପୋଥି ଲେଖନ୍ତି । ସେଇଟା ଥିଲା ତାଂକ ଉପାର୍ଜନର ଅନ୍ୟ ଏକ ପନ୍ଥା । ଆଷାଢ଼ ମାସ ପହଞ୍ଚିଯାଇଛି । ଜଣେ ଭଦ୍ରଲୋକ ଆସି ବରାଦ ଦେଲେ ଯେ ତାଂକ ପାଇଁ ଏକ ବାରସ୍କନ୍ଦ ଗ୍ରନ୍ଥ ଦରକାର । ସେତେବେଳେ ତ ଛପା ପୁସ୍ତକର ଚଳଣି ମୋଟେ ନଥିଲା । ଆଷାଢ଼ ମାସ ପାଇଁ ଆଗରୁ ସଂଗ୍ରହ କରି ରଖିଥିବା ଶୁଖିଲା ତାଳପତ୍ର ଦରକାର । କୃତ୍ତିବାସଙ୍କ ପାଖରେ ଗୋଟାଏ ହେଲେ ବି ଗ୍ରନ୍ଥ ଲିଖନ ଉପଯୋଗୀ ତାଳପତ୍ର ନ ଥାଏ । ତେଣୁ ସେ ଭଦ୍ରଲୋକର ଚାହିଦା ପୂରଣ ପାଇଁ ଅସ୍ୱୀକୃତ ହେଲେ ।

ଭଦ୍ରଲୋକ ନିରଣ ମନରେ ପାଖରେ ବସି ଥାଆନ୍ତି । ଇତ୍ୟବସରରେ ଶ୍ୟାମସୁନ୍ଦର ସେଠାରେ ପହଞ୍ଚି ଶୁଣିଲେ ଯେ ତାଳପତ୍ରର ଅଭାବ ନେଇ ସେ ଭଦ୍ରଲୋକଙ୍କୁ ଫେରାଇ ଦେଉଛନ୍ତି ।

ଶ୍ୟାମସୁନ୍ଦରଙ୍କର ସେତେବେଳେ ଛାତ୍ରାବସ୍ଥା । ସେ ତାହା ଶୁଣି ତାଂକ ବାପାଙ୍କୁ କହିଲେ, 'ବାପା, ତାଳପତ୍ର ନିମିତ୍ତ ଚିନ୍ତା କରନ୍ତୁ ନାହିଁ । ମୁଁ ୨ ଗୋଟି ଗନ୍ଥ ଲେଖାଯାଇ ପାରିବା ଭଳି ତାଳପତ୍ର ସଂଗ୍ରହ କରି ମୋର ସାଙ୍ଗ ଘରେ ରଖାଇ ଦେଇଛି ।

କୃତ୍ତିବାସ ତାହା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ଭବିଲେ ଲିଖନ ଉପଯୋଗୀ ହୁଏତ ତାହା ହୋଇ ନପାରେ । ସନ୍ଦେହାକ୍ରାନ୍ତ ହୋଇ, ତାପରେ ଆସି ଦେଖିଲେ ଯେ; ସେ ନିଜେ ଯେଉଁଭଳି ତାଳପତ୍ର ବାଛି ତାକୁ ଖେଦାଖେଦା କରି ରଖିଥାଆନ୍ତି, ସେହିପରି ପ୍ରଚୁର ପରିମାଣରେ ତଦନୁରୂପ ଖେଦାମାନ ରହିଅଛି । କୃତ୍ତିବାସ ପୁତ୍ରର ଏପରି କାର୍ଯ୍ୟ ଦେଖି ତାଙ୍କୁ ସେଦିନ ଯେଉଁ ପ୍ରଶଂସା କରିଥିଲେ, ବହୁଦିନ ଯାଏ ତାର ପୁନରାବୃତ୍ତି ଘରେ ହୋଇ ଆସିଥିବାର ଲେଖକ ଶୁଣି ଆସିଅଛି ।

× × × ×

ଆଉ ଥରକର କଥା । କୃତ୍ତିବାସଙ୍କର ସମୁଦାୟ ଘର ସେତେବେଳେ ପୁଆଳ ଛାଆଣି ଥାଏ । ପ୍ରତିବର୍ଷ ଆଷାଢ ମାସରେ ଗୋଟାଏ କି ଦୁଇଟା ବର୍ଷା ହୋଇଗଲା ପରେ ଛାତ ଉପରେ ନୂତନ ନଡା ଦିଆଯାଏ ।

ସେହି ବର୍ଷ ଗୁଡି (ହଳିଆ) ସହ କୃତ୍ତିବାସ ଉକ୍ତ କାମ କରିବାକୁ ଯାଇ ହଳିଆକୁ ଛାତ ଉପରେ ଥାଇ ନଡା ଛାଇବାକୁ କହି ଦେଇ ନିଜେ ତଳେ ରହି ବିଡା ବିଡା ନଡା ଉପରକୁ ଫିଙ୍ଗୁଥାଆନ୍ତି । ଏହି ସମୟରେ ଶ୍ୟାମସୁନ୍ଦର ପହଞ୍ଚି ଦେଖିଲେ ଯେ ବାପା ତାଂକର ନଡା ଫିଙ୍ଗୁଛନ୍ତି । ବାପାଂକ ହାତରୁ କାମ ଛଡାଇ ପ୍ରଥମେ ସେ ଦ୍ରୁତତର ଭବରେ ନଡା ସବୁ ଉପରକୁ ଫିଙ୍ଗି ଦେଇ ଘର ଛାଆଣି କରିବାକୁ ଉପରକୁ ଉଠିଯାଇ ହଳିଆ ସହ ହସି ହସି ଖୁସି ଗପ କରି କରି ଘର ଛାଇବାକୁ ଲାଗିଗଲେ । ସେତେବେଳେ ଟାଣ ଖରା କରୁଥାଏ । ଦେହରୁ ଗମ୍ ଗମ୍ ଝାଳ ବୋହି ପଡୁଥାଏ । ଦେହକୁ ବାଧ ଯାଉଥାଏ ସତ ତଥାପି କାମର ବିରାମ ନାହିଁ । ଶ୍ୟାମସୁନ୍ଦରଙ୍କ ମାଆ କୌଶଲ୍ୟା ଦେବୀ କୁଆଡୁ ଆସି ଦେଖିଲେ ଯେ ଏତେ ଖରାରେ ରହି ପୁଅ ଘର ଉପରେ ଥାଇ କାମ କରୁଛି । ଏହା ତାଙ୍କୁ ଭଲ ଲାଗିଲା ନାହିଁ ।

ସେ ଶ୍ୟାମସୁନ୍ଦରଙ୍କୁ କହିଲେ ବାବୁ ତୁ ଏଇଟା କଣ କରୁଚୁ ? ତୁ ତ ସଦାବେଳେ ଛାଇରେ ରହିବା ଲୋକ । ଦିନକ ପାଇଁ ଘରକୁ ଆସିବୁ ଯେ ତୋର

ବିଶ୍ରାମ ଦରକାର । ତା ବଦଳରେ ଏତେ ଟାଣ ଖରରେ ଘର ଉପରେ ଚଢ଼ି ଘର ଛାଉଛୁ ? ତୋତେ ଲାଜ ମାଡ଼ୁ ନାହିଁ ? ନିଜ କାମ ନିଜେ କରିବୁ ଏଥିରେ ଲାଜ କଣ ? କହି ସେ ମାଆଂକ କଥା ଉପରେ ଆଉ ଗୁରୁତ୍ୱ ନ ଦେଇ ଘର ଛାଇବାରେ ଲାଗିଲେ । କୌଶଲ୍ୟା ଦେବୀ ତାହା ଦେଖି ଧମକପୂର୍ଣ୍ଣ ଭଷାରେ କହିଲେ ଯେ ଓହ୍ଲରି ଆସିବୁ କି ନାହିଁ କହ ? ଆଉ କେତେବେଳ ଯେ ଏଇ ଘଣ୍ଟେ ଦୁଇଘଣ୍ଟାରେ ସାରିଦେବି କହି କଥାଟାକୁ ବାଆଁରେଇ ଦେଲେ ।

ନିଜର କଥାକୁ ନ ରଖିବା ଦେଖି କୌଶଲ୍ୟା ଦେବୀ ଏଠିକିବେଳେ ଏକ ଉପାୟ ଚିନ୍ତା କରି ଘର ଭିତରୁ ଏକ ଛୋଟିଆ ଖଟ ଆଣି ଘର ଅଗଣାରେ ପକାଇ ତାଉପରେ ଏକ ବିଛଣା ବିଛାଇ ଦେଲେ । ଶ୍ୟାମସୁନ୍ଦରଙ୍କ ବଡ ପୁଅକୁ ସେତେବେଳେ ବର୍ଷେ କି ଦେଢବର୍ଷ ହେଉଥାଏ । ତାକୁ ଘର ଭିତରୁ ଆଣି ଶ୍ୟାମସୁନ୍ଦରଙ୍କୁ ଦେଖାଇ କହିଲେ ଯେ ଦେଖ ତୁ ଯଦି ଘର ଉପରୁ ତଳକୁ ଓହ୍ଲାଇ ନ ଆସିବୁ ତେବେ ତୋର ପୁଅକୁ ମୁଁ ଏଇ ଖରରେ ଶୁଆଇ ଦେବି । ଶ୍ୟାମସୁନ୍ଦର ତାହା ଦେଖି ଅଗତ୍ୟା ତଳକୁ ଓହ୍ଲାଇ ଆସି ପୁଅଟିକୁ ମାଆ ହାତରୁ ଟେକି ନେଇ କହିଲେ ମାଆ ତୋର ତ ଭରି ବିଚକ୍ଷଣ ବୁଦ୍ଧି । ଏହା କରି ନ ଥିଲେ ସତରେ ମୁଁ ଉପରୁ ତଳକୁ ଓହ୍ଲରି ଆସି ନ ଥାନ୍ତି ।

କୌଶଲ୍ୟା ତା ଶୁଣି କହିଲେ ତୋର ପୁଅ ତୋତେ ଯେପରି ମୋର ପୁଅ ମୋତେ ମଧ୍ୟ ସେହିପରି । ମୋର ପୁଅ ଖରରେ କାମ କରିବ ଏହା କଣ ମୋତେ ବାଧିବ ନାହିଁ ।

ମାଆ ପୁଅ ଦିହେଁଯାକ ତାପରେ ହସି ହସି ଘଟଣାଟିକୁ ସମସ୍ତଂକ ଆଗରେ କହି ଆମୋଦ ଉପଭୋଗ କରିଥିଲେ ।

× × × ×

କୃତ୍ତିବାସ ଦାଶଙ୍କ ୧୦/୧୨ ଏକର ଜମିନ ଥାଏ । ସେ ସେଥିପାଇଁ ପ୍ରତି-ଦିନ ହଳିଆ ମାନଙ୍କର କାମ ତତ୍ତ୍ୱାବଧାନ ପାଇଁ ବିଲକୁ ଯାଆନ୍ତି । ତାଂଙ୍କ ସ୍ତ୍ରୀ ମଧ୍ୟ ସାମର୍ଯ୍ୟିକ ଘର ଜଞ୍ଜାଳ ଛିଣ୍ଡାଇ ଅବସର ଦେଖି ଖେତକୁ ଯାଇ ମଧ୍ୟେ ମଧ୍ୟେ ଜମିର ହିଡ ଉପରେ ବର୍ଷାଦିନେ ବିରୀ ଜଗାନ୍ତି । ମାଣ୍ଡିଆ ପଦ୍ମା ନେଇ ମଧ୍ୟ ରୋପଣ କରନ୍ତି । ମଧ୍ୟେ ମଧ୍ୟେ ଭୁତିଆର ମାନଙ୍କୁ ନେଇ ଘାସ ଉଠା କାମରେ ମଧ୍ୟ ସାହାଯ୍ୟ କରିଥାନ୍ତି ।

ଶ୍ୟାମସୁନ୍ଦର କିନ୍ତୁ ମାଆଙ୍କର ଏହି କାର୍ଯ୍ୟକୁ ଦେଖି ବିରକ୍ତ ହୁଅନ୍ତି । ସେ ପ୍ରତି ଶନିବାର ଉପର ଓଳି ନିଜ ଗ୍ରାମକୁ ଆସନ୍ତି । ଆସିବା ବେଳେ ସେ ନିଜ ଖେତ ଦେଇ ଆସିଥାନ୍ତି ।

ଏହି ପରିପ୍ରେକ୍ଷୀରେ ସେ ଆସି ଦେଖନ୍ତି ଯେ ତାଙ୍କ ଆସିବା ବେଳେ ତାଙ୍କ ମାଆ କ୍ଷେତରେ କାମ କରୁଛନ୍ତି । ତାହା ଦେଖି ସେ ନୀରବରେ ଆସି ନିଜ ମାଆର ପଛପଟେ ଠିଆ ହୋଇ ତାଂକ ଛତା ଉଚ୍ଚାଇଥାନ୍ତି ।

କୌଶଲ୍ୟା ଦେବୀ ଏହା ଜାଣି ପାରି ପୁଅକୁ ଘରକୁ ଯାଇ ଖିଆ ପିଆ କର ବୋଲି ଯେତେ କହିଲେ ବି ସେ ସେହିପରି ନିଜ ମାଆକୁ ଛତା ଉଚ୍ଚାଇ ଠିଆ ହୋଇଥିବା ଦେଖି କୌଶଲ୍ୟା ଦେବୀ ଅଗତ୍ୟା କାମ ବନ୍ଦ କରି ଦିଅନ୍ତି ।

ମାଆ ପୁଅ ତାପରେ ହସି ହସି ଖୁସି ଗପ କରି ଘରକୁ ଫେରି ଆସନ୍ତି । ଶ୍ୟାମସୁନ୍ଦର ନିଜର ପିତାମାତାଙ୍କୁ କେତେ ଭକ୍ତି ତଥା ସମ୍ମାନ ପ୍ରଦର୍ଶନ କରୁଥିଲେ ଉପରୋକ୍ତ କେତେକ ଘଟଣାରୁ ସେସବୁ କଥା ସୁସ୍ପଷ୍ଟ ହୁଏ ।



## ବିନା ମେଘରେ ବଜ୍ରପାତ

କୃତ୍ତିବାସ ଦାଶ ଘରେ ଗୃହକର୍ତ୍ତା ରୂପେ ରହିଥାନ୍ତି ସତ କିନ୍ତୁ ଶ୍ୟାମସୁନ୍ଦରଙ୍କ ନିର୍ଦ୍ଦେଶନା ଗୃହର ସ୍ୱାର୍ଥିକ ଦୃଷ୍ଟିରୁ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥାଏ । ଶିକ୍ଷା, ସଂସ୍କୃତି ଠାରୁ ଆରମ୍ଭ କରି ପରିବାର ପରିଚାଳନା ଦିଗରେ ଯେପରି ଉନ୍ନତ ରୁଚି, ଆର୍ଥିକ ଦିଗରେ ଉନ୍ନତି ତଥା ବଂଶଗତ ପବିତ୍ରତା ରକ୍ଷା ପ୍ରଭୃତି ନେଇ ଗ୍ରାମରେ ଏକ ପ୍ରତିଷ୍ଠିତ ପରିବାର ରୂପେ ସ୍ଥାନ ପାଇବାକୁ ତାଙ୍କର ସଦାବେଳେ ଜାଗ୍ରତ ମନୋଭାବ ରହିଥାଏ । ସର୍ବୋପରି ଆର୍ଥିକ ଉନ୍ନତି ନିମିତ୍ତ ସେ ତିନିଭାଇଙ୍କୁ ୨ଟି ଲେଖାଏଁ ଧନ୍ଦା ଧରିବାକୁ ନିର୍ଦ୍ଦେଶ ଦେଇଥାନ୍ତି ।

ନିଜେ ଶିକ୍ଷକତା କରିବା ସହିତ ଷ୍ଟାମ୍ପଭେଣ୍ଡର କାମ, ବଡଭାଇ ନରହରି ସେହିପରି ଶିକ୍ଷକତା କରିବା ସହିତ ଗଡ ଲୋଇସିଂହ ଜମିଦାରଙ୍କ ସିରସ୍ତାରେ ମାଲ ମୋହରୀର କାମ ଏବଂ ମନବୋଧଙ୍କୁ ମଧ୍ୟ ସେହିପରି ଏକ ଧନ୍ଦା ଧରିବାକୁ କହିବା ଦ୍ୱାରା ତିନିଭାଇ ବିଭିନ୍ନ ସୂତ୍ରରୁ ଉପାର୍ଜନ ଦିଗରେ ମନଦେଇ କାମ କରୁଥାନ୍ତି । ଗୃହର ମଧ୍ୟ ଉନ୍ନତି ଦିନୁଦିନ ଆଖିଦୃଶିଆ ଅବସ୍ଥାରେ ପହଞ୍ଚି ଯାଇଥାଏ ।

ଦାଶ ପରିବାରର ଏତାଦୃଶ କ୍ରମୋନ୍ନତି ସନ୍ଦର୍ଶନ କରି ଗ୍ରାମର କତିପୟ ଧନୀ ବ୍ୟକ୍ତିଙ୍କ ମନରେ ଈର୍ଷାଭାବ ଜାତ ହୋଇଥିଲା । ଯୁଗ ଯୁଗ ଧରି ମଣିଷ ମନରେ ଏପରି ଅସୂୟା ଭାବ ରହି ଆସିଅଛି । ଏ କ୍ଷେତ୍ରରେ ତହିଁର ବା ବ୍ୟତିକ୍ରମ ଘଟିବ କିପରି ? ସେମାନେ ଦେଖିଲେ ପରିବାରଟିରେ ଥିବା ସମସ୍ତ ପୁରୁଷବ୍ୟକ୍ତି ଉପାର୍ଜନକ୍ଷମ । କେହି ଜଣେ ମଧ୍ୟ ଯେଉଁ ଗୁଣ ଦ୍ୱାରା ମଣିଷ ନଷ୍ଟ ହୁଏ ସେଥିର ଗୋଟିଏ ଗୁଣର ମଧ୍ୟ ଶିକାର ହେଉ ନାହାନ୍ତି । ଯଥା—

ଯଥା ବେଣୁ କର୍କଟ ରମ୍ଭାବୃକ୍ଷ ବିନାଶକାଳେ ଫଳମ୍ଭୁ ବହନ୍ତି,
ତଥା ନରେ ବିନାଶକାଳେ ଦ୍ୟୁତଂଚ, ମଦ୍ୟଂଚ ପରସ୍ତ୍ରୀୟଂଚ ।

ତେବେ କଣ କରଯାଇ ପାରେ ? ଆଖି ଆଗରେ ପରିବାରଟିର ଉନ୍ନତି ଦେଖି ତ ସହ୍ୟ କରଯାଇ ପାରେନା । ବିଭିନ୍ନ ଦିଗରୁ ଆଲୋଚନା କରି ସେମାନେ ଅବଗତ ହେଲେ ଯେ କୃତ୍ତିବାସ ଦାଶଙ୍କ ଏକ ଭାଇବୋହୂ ବାଲ୍ୟ ବିଧବା ହୋଇ ତାଲବ ଗ୍ରାମରେ ରହୁଛନ୍ତି । ତାଙ୍କୁ ଏ ଦିଗରେ ଏକ ଭରଣ ପୋଷଣ ମୋକଦ୍ଦମା କରିବା ପାଇଁ ବିନିଯୋଗ କରଯାଉ । ଯୋଜନା ସ୍ଥିର ହେଲା । ସ୍ୱତନ୍ତ୍ର ଲୋକ ପଠାଯାଇ ତାଙ୍କୁ ଧରି କୃତ୍ତିବାସ ଦାଶଙ୍କ ନାମରେ ଏକ ଭରଣପୋଷଣ ମୋକଦ୍ଦମା ବରଗଡରେ ଦାଏର କରିଦେଲେ । ମୋକଦ୍ଦମା ଚାଲିଲା । ଈର୍ଷୁକ ବ୍ୟକ୍ତିଙ୍କ ଅଭୀପ୍ସା ପୂର୍ଣ୍ଣ ହେଲା । କେତେକ ପେସି ଉଠିବା ପରେ ଦିନେ ଜାଣିଲେ ଯେ ମୋକଦ୍ଦମାଟି ଦଫାରଫା ହୋଇ ଯାଇଛି । ଶ୍ୟାମସୁନ୍ଦର ସ୍ୱକୀୟ ବିଚକ୍ଷଣ ବୁଦ୍ଧି ବଳରେ ଅପରପକ୍ଷ ନିକଟକୁ ଯାଇ ଆପୋସ ମୀମାଂସାରେ ତାଙ୍କ ଦାବୀକୁ ମାନି ନେଇ ଅଛନ୍ତି । ଏ ସମ୍ବାଦ ବିପକ୍ଷ ଦଳଙ୍କ ମନରେ ତୀବ୍ର ଆଘାତ ପ୍ରଦାନ କରି ଥିଲା ସତ କିନ୍ତୁ ଅନ୍ୟ ଏକ ଦୈବୀକୃତ ବିପଦ ଉକ୍ତ ପରିବାର ଉପରେ ପଡ଼ିଥିବାରୁ ସେଥିରେ ସେମାନେ ଉଲ୍ଲସିତ ହୋଇଥିଲେ ।

ଆଗରୁ ଅବଶ୍ୟ କୁହାଯାଇଛି ଯେ ଶ୍ୟାମସୁନ୍ଦର ଥିଲେ ଆଧ୍ୟାତ୍ମିକ ଭବାପନ୍ନ ବ୍ୟକ୍ତି । ସେ ଏକାଦଶୀ ବ୍ରତ ପାଳନ କରନ୍ତ । ଯୋଗକୁ ସେହିବର୍ଷ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଏକାଦଶୀ ତିଥି ଆସି ପହଞ୍ଚି ଗଲା । ସେ ଉପବାସ କଲେ ।

ପାରଣା କରିବାକୁ ଯାଇ କେତେଗୋଟି ବଡ଼ ବଡ଼ ଫଳ ମଗାଇ ଖାଇଲେ ଏବଂ ତା ଉପରେ ଥଣ୍ଡା ପାଣି ପିଇଦେଲେ । ଫଳରେ ତାଙ୍କୁ ପ୍ରଥମେ ଥଣ୍ଡାଜର ଧରିଲା । ପରେ ତାହା ବଢ଼ି ତ୍ରିଦୋଷ ସନ୍ନିପାତରେ ପରିଣତ ହୋଇଗଲା । ଜର ବଢ଼ି ବଢ଼ି ଚାଲିଥାଏ । ଯେତେ ଚିକିତ୍ସା କଲେ ମଧ୍ୟ ତାହା ଆଉ ଉପଶମ ଘଟିଲା ନାହିଁ ଏବଂ ସେ ଜ୍ୱର ଭୋଗିବାର ୧୦ ଦିନ ପରେ ୧୯୧୫ ଖ୍ରୀ: ମାର୍ଗଶୀର କୃଷ୍ଣ ୫ମୀ ଦିନ ଇହଲୀଳା ସାଙ୍ଗ କଲେ ।

ଶ୍ୟାମସୁନ୍ଦରଙ୍କ ମୃତ୍ୟୁ ହେବା ଦେଖି ତଦୀୟ ପତ୍ନୀ ଯମୁନା ଦେବୀ ମଧ୍ୟ ଅଫିମ ସେବନ କରି ଦେଇ ସେହିଦିନ ପଞ୍ଚତ୍ୱ ପ୍ରାପ୍ତ ହୋଇଗଲେ । ତଦୀୟ ଦ୍ୱିତୀୟ ପୁତ୍ର ବୀରବର ଦାଶଙ୍କୁ ସେତେବେଳେ ବୟସ ହୋଇଥିଲା ବର୍ଷେ କେତେ ମାସ ।

ଶ୍ୟାମସୁନ୍ଦରଙ୍କ ମୃତ୍ୟୁ ହେତୁ ପରିବାରଟିରେ ଯେଉଁ କ୍ରନ୍ଦନର ରୋଳ ଉତ୍‌ଥିତ ହୋଇ ଗଗନ ପବନକୁ କମ୍ପିତ କରି ଦେଇଥିଲା ତହିଁର ମାତ୍ର ୫ ଘଣ୍ଟା ପରେ ଉକ୍ତ ପରିବାରରେ ଆଉ ଜଣକର ମୃତ୍ୟୁ ଘଟିବା ଘଟଣାରେ ସାରା ପରିବାରର ଲୋକେ ମୂକ-ଜଡ ପାଲଟି ଯାଇଥିଲେ ।

କୃତ୍ତିବାସ ଦାଶଂକର ସୁନାର ସଂସାର ଚୂନା ହୋଇଗଲା । କୌଶଲ୍ୟା ଦେବୀ ଇତ୍ୟବସରରେ ମାତୃହୀନା ଶିଶୁଟିର ତତ୍ତ୍ୱ ନିର୍ଲ୍ଲଜ ଭବରେ କରିବା ନିମିତ୍ତ ଲାଗି ପଡ଼ିଥିଲେ ।

ମାତୃ ଦୁଗ୍‌ଧ ଅଭବରୁ ଶିଶୁଟି କ୍ରମେ ଦୁର୍ବଳରୁ ଦୁର୍ବଳତର ହେଲା । ବିଭିନ୍ନ ପ୍ରକାର ଖାଦ୍ୟ ଦେବାରୁ ଶିଶୁ ରୁଗ୍‌ଣ ହୋଇ ପଡ଼ିଲା । ୧୪ ମାସର ଶିଶୁକୁ କେବଳ ଭାତ ଖୁଆଇ ବଞ୍ଚାଇବା ବ୍ୟତୀତ ତତ୍କାଳୀନ ଅବସ୍ଥାରେ ଆଉ କୌଣସି ଉପାୟ ନ ଥିଲା ।

ଗୋଦୁଗ୍‌ଧ ଦୁଷ୍ପାଚ୍ୟ ବୋଲି ତାହା ଦେଉ ନ ଥାନ୍ତି କିମ୍ବା ସେହି ସମୟରେ ଶିଶୁ ଖାଦ୍ୟ ଉପଯୋଗୀ ଆଜିକାଲିକାର ପରି ଏତେ କଥା ପ୍ରସାର ଘଟି ନ ଥିଲା ।

ଫଳରେ ଶିଶୁଟିକୁ ବଞ୍ଚାଇବା ଏକ କଠିନ ସମସ୍ୟା ହୋଇଥିଲେ ମଧ୍ୟ କୌଶଲ୍ୟା ଦେବୀ କୌଣସିମତେ ତାକୁ ବଞ୍ଚାଇବା ନିମିତ୍ତ ପ୍ରଯତ୍ନଶୀଳା ହୋଇ ଥାଆନ୍ତି । ଦିନରାତି ନିଜେ ତାକୁ ଧରି ନିଜର ଶୁଷ୍କ ସ୍ତନ ତା ମୁହଁରେ ଦେଇ ତାକୁ ସନ୍ତୁଷ୍ଟ କରି ରଖିଥାନ୍ତି ।

ଏହିପରି ଭାବେ ତିନିବର୍ଷ କାଳ କଟିଗଲା । ଶିଶୁଟି କ୍ରମେ ଭାତ ଡାଲି ଆଦି ଖାଇବାରେ ଅଭ୍ୟସ୍ତ ହୋଇ ପଡ଼ିଲା । **ଜୀର୍ଣ୍ଣ ଶୀର୍ଣ୍ଣ** ରୁଗ୍ଣ ପତଳା ଦେହ, ପୁଷ୍ଟିକର ଖାଦ୍ୟ ଅଭାବରେ ଶାରୀରିକ ସୌଷ୍ଠବର ଅଭାବ ତଥା ମନ ଅଶାନ୍ତ । ପ୍ରାଥମିକ ଅବସ୍ଥାରୁ ଯାହାର ଅବସ୍ଥା ଏପରି ତ୍ରୁଟୀପୂର୍ଣ୍ଣ ତାହାର ଉତ୍ତର ଜୀବନ ମଧ୍ୟ ପରିଶେଷରେ ସେହିପରି ବିଡମ୍ବନା ଜନକ ହୋଇ ପଡ଼ିଥିଲା ।

ସେ ଯାହାହେଉ, ଶିଶୁ ସୁନ୍ଦର ହେଉ ଅଥବା ଅସୁନ୍ଦର ହେଉ, ରୁଗ୍ଣ ହେଉ ବା ସୁସ୍ଥ ହେଉ, ଗୁଣବାନ ହେଉ ଅଥବା ଚରିତ୍ରହୀନ ହେଉ, ତାକୁ ଯିଏ ବଢ଼ାଇ ଆଣିଛି, ତାକୁ ମଣିଷ କରିବା ନିମିତ୍ତ ଯିଏ ଅଷ୍ଟାଭିଡ଼ ଦିନରାତି ତାର ଶୁଶ୍ରୂଷା କରିବାରେ ମନପ୍ରାଣ ଢାଳି ଦେଇଛି ତା ଆଖିରେ ସେ ଯେ ନିଶ୍ଚିତ ରୂପେ ସୁନ୍ଦର ଏହା ଏକ ସ୍ୱାଭାବିକ କଥା ।

କାରଣ ପୁଅ ଆଖିରେ ମାଆ ସୁନ୍ଦର ଦିଶେ, ଭାଇ ଆଖିରେ ଭଉଣୀ ସୁନ୍ଦରୀ, କୃଷକର ଆଖିରେ ତା'ରି ଶସ୍ୟକ୍ଷେତ୍ର, ଭକ୍ତର ଆଖିରେ ଭଗବାନ, ଶିଷ୍ୟର ଆଖିରେ ଗୁରୁ ଯେପରି ସୁନ୍ଦର ଦେଖାଯାନ୍ତି କୌଶଲ୍ୟା ଦେବୀଙ୍କ ଆଖିରେ ଏହି ଶିଶୁଟି ଯେପରି ସମସ୍ତ ସୌନ୍ଦର୍ଯ୍ୟର ଭଣ୍ଡାର ଭାବି ସେ ଆତ୍ମପ୍ରସାଦ ଲାଭ କରୁଥାଆନ୍ତି ।

ମାଆର ସୌନ୍ଦର୍ଯ୍ୟ ପୁତ୍ର ନିକଟରେ ତ୍ୟାଗରୁ – ମାତୃତ୍ୱରୁ, ଭଉଣୀର ସୌନ୍ଦର୍ଯ୍ୟ ଭାଇ ନିକଟରେ ସ୍ନେହରୁ, ଭଗବାନଙ୍କ ସୌନ୍ଦର୍ଯ୍ୟ ଭକ୍ତ ନିକଟରେ ଭକ୍ତିରୁ, ଗୁରୁଙ୍କ ସୌନ୍ଦର୍ଯ୍ୟ ଶିଷ୍ୟ ନିକଟରେ ଜ୍ଞାନରୁ ଯେପରି ଉତ୍ପନ୍ନ ଘଟିଥାଏ । ଉକ୍ତ ସୌନ୍ଦର୍ଯ୍ୟ ଉଭେଇ ଗଲେ ଆଉ କେହି କାହା ଆଖିରେ ଲୋଭନୀୟ ହୋଇ ପାରନ୍ତି ନାହିଁ । ଏପରିକି ସ୍ତ୍ରୀ ଆଖିରେ ସ୍ୱାମୀର ସୌନ୍ଦର୍ଯ୍ୟ ଯେଉଁ ପ୍ରଣୟ ହେତୁ ଘଟିଥାଏ ସେଥିରେ ସାମାନ୍ୟ ଶିଥିଳତା ପ୍ରକାଶ ପାଇଲେ ସେ ସୌନ୍ଦର୍ଯ୍ୟ ମଧ୍ୟ ଦୂରୀଭୂତ ହୋଇଯାଏ ।

ସାଂସାରିକ ରୀତିରେ ଏ ପ୍ରଥା ଚିରନ୍ତନ । କିନ୍ତୁ କୌଶଲ୍ୟ ଦେବୀ ଯେଉଁ ଦୁଃଖ ନିର୍ଯ୍ୟାତନା ସହ୍ୟ କରି ଏହି ଶିଶୁଟିକୁ ପାଳନ କରି ଆସି ଥାଆନ୍ତି ସେଥିରେ ଥିଲା ନାହିଁ ତାଂକର ସ୍ୱାର୍ଥ କିମ୍ବା କୌଣସି ପ୍ରକାର ଉଦ୍ଦେଶ୍ୟ ସିଦ୍ଧି । ନିଶ୍ଚିତ ଭାବେ ଏକଥା କୁହା ଯାଇପାରେ ଯେ ଏଥିରେ ଥିଲା ତାଂକର ଦୟା, ସ୍ନେହ ତଥା ଅନୁରକ୍ତି । ଦୁଃଖରେ ହେଉ କିମ୍ବା ସୁଖରେ ହେଉ ଥିଲା ଆନ୍ତରିକ ସହାନୁଭୂତି । ଯାହାକୁ କୁହାଯାଇ ପାରେ ପ୍ରକାରନ୍ତରେ ନିର୍ଗୁଣ, ନିଷ୍କାମ ତଥା ନିଃସ୍ୱାର୍ଥ ମନୋଭାବ ।

# ବାଲ୍ୟ ଶିକ୍ଷା

ମୋତେ ଚାରିବର୍ଷ ଚାରିମାସ ଚାରିଦିନ ହେବା ପରେ ମୋର ବଡ ବାପା ନରହରି ଦାଶ ଛୋଟିଆ କରିଆ ଖଣ୍ଡେ ମୋତେ ପିନ୍ଧାଇ ଶ୍ଲେଟ ଗୋଟିଏ ଓ ଖଡ଼ଟାଏ ଦେଇ ମୋତେ ଗାଁ ସ୍କୁଲରେ ପାଠ ପଢ଼ିବାକୁ ନେଇ ଛାଡ଼ି ଦେଇ ଆସିଲେ । ଶିକ୍ଷକ ଥାନ୍ତି ସେତେବେଳେ ସୁଦର୍ଶନ ସାହୁ ନାମରେ ଜଣେ ବ୍ୟକ୍ତି । ଭରି ଶାନ୍ତ ଶିଷ୍ଟ ଶିକ୍ଷକ ଜଣେ ସେ । କଥାବାର୍ତ୍ତା ଅତ୍ୟନ୍ତ ମଧୁର । ମୋଟା ଶରୀର । ମୋତେ ଦେଖି ସେ ଏତେ ଆଦର କରି କଥାବାର୍ତ୍ତା କଲେ ଯେ ତାଙ୍କୁ ଦେଖି ମୁ ଭରି ଖୁସି ହୋଇଗଲି ।

ତା ପର ଦିନ ଠୁ ସେ ପ୍ରତିଦିନ ଆମ ଘରକୁ ଆସି ମୋତେ ବିଶେଷ ଆଦର ସହ ଡାକି ନେଇ ସ୍କୁଲରେ ପାଠ ପଢାଇଲେ । ପାଠ ପଢ଼ାଇଲେ ଅର୍ଥ ମୋ ଶ୍ଲେଟରେ ଠ ଅକ୍ଷରଟାଏ ଲେଖିଦେଇ ତା ଉପରେ ଖଡିରେ ବୁଲାଇବାକୁ ଏବଂ ତୁଣ୍ଡରେ ଠଅ, ଠଅ, ବୋଲି କହିବାକୁ କହିଦେଇ ଅନ୍ୟତ୍ର ଚାଲିଗଲେ । ମୁ ସେତେବେଳେ କଣ କଲି କି ନାହିଁ ଏବେ ମୋର ଆଉ ମନେ ନାହିଁ । ଏପରି ଭବେ କେତେକ ମାସ କଟିଗଲା । ସ୍କୁଲକୁ ମୁ ନିଜେ ମଧ୍ୟ ଏଣିକି ଯାଇ ଶିଖିଥିଲି । ତାପରେ ସେହି ଶିକ୍ଷକ ବଦଳି ହୋଇ ଅନ୍ୟତ୍ର ଚାଲିଗଲେ ଏବଂ ତାଙ୍କ ସ୍ଥାନରେ ଯେଉଁ ଶିକ୍ଷକ ଆସିଲେ [redacted] । ସେ ତାଲିମ ପ୍ରାପ୍ତ ନଥିଲେ । ପାଠ ପଢାଇବା ବେଳେ ସେ ପିଲାଙ୍କୁ ପ୍ରଚୁର ମାଡ ଦେଉଥାନ୍ତି । ତାଙ୍କ ମାଡରୁ ମୁ ମଧ୍ୟ ବାଦ ଗଲିନାହିଁ । ପ୍ରତିଦିନ ସେ ମୋତେ ପିଟୁଥିଲେ । ତା ପୂର୍ବରୁ ମାଡ କଣ ମୁ ଜାଣି ନ ଥିଲି । ସ୍କୁଲକୁ ଆସି ପ୍ରତିଦିନ ମୋତେ କାନ୍ଦିବାକୁ ହେଉଥିଲା ।

ମୁ ଯେଉଁ ସ୍କୁଲ ଘରେ ପଢୁଥାଏଁ ତାର ଚଟାଣଟି ପକ୍କା ଥାଏ । ଶିକ୍ଷକ [redacted] କାରଣ ଥାଉ ବା ନ ଥାଉ ବିକଟ ଚିତ୍କାର କରି କାହାକୁ ବିଧାଏ, କାହାକୁ ଚଟକଣାଟାଏ, କାହାର ବେକ ଧରି ଉପରକୁ ଉଠାଇ ଟେକି ଦେଇ ମୁଣ୍ଡଟାକୁ ସେହି ପକ୍କା ଚଟାଣ ଉପରେ ଢୁ, ଢୁ କରି କଚି ଦେଉଥାଆନ୍ତି । ଥରେ ସେ ଏପରି ଭବରେ ମୋର ମୁଣ୍ଡକୁ ଧରି ତଳେ ଢୁ, ଢୁ କରି କଚିଲେ ଯେ ମୋର କପାଳ ଫୁଲି ଗଲା ଏବଂ ଆଘାତ ପାଇ ରକ୍ତ ବହିଲା । ଏପରି ଭବେ କୌଣସି ମତେ ମଧୁ ରାଓଙ୍କ ବର୍ଣ୍ଣବୋଧ ପୁସ୍ତକଟିର ପାଠ ଶେଷ ହେଲା ସତ କିନ୍ତୁ ଶିକ୍ଷକଙ୍କ ସେହି ସମୟର ପ୍ରହାର; ଉତ୍କଟ ଚିତ୍କାର, ଆଜି ମଧ୍ୟ ମୋର ମନରେ ରେଖାପାତ କରି ରହି ଯାଇଛି । ଏହା ହେଲା ୧୯୨୦ ସାଲର କଥା । ତାପରେ ମୋତେ ପ୍ରଥମ ଶ୍ରେଣୀର 'ଖ' ବିଭଗରେ ପଢ଼ିବାକୁ ହୋଇ

ଥିଲା । ଉକ୍ତ ଶ୍ରେଣୀଟିକୁ ଦିବାକର ତ୍ରିପାଠୀ ନାମରେ ଜଣେ ଶିକ୍ଷକ ଅଧ୍ୟାପନା କରୁଥାନ୍ତି । ତାଙ୍କ ଘର କୁବେଡେଗା । ତାଂକର ପାଠ ପଢ଼ା ଧରଣ ଥିଲା ଅତି ଉନ୍ନତ । କୌଣସି ପିଲାକୁ ସେ ମୋଟେ ପିଟୁ ନ ଥିଲେ । 'ବାଲ୍ୟପାଠ' ନାମରେ ଗୋଟିଏ ବହି ସେତେବେଳେ ଆମେ ପଢୁଥିଲୁ । ସେହି ପୁସ୍ତକରେ 'ହରିହର' ନାମରେ ଗୋଟିଏ ଆଦର୍ଶ ବାଳକର ବିଷୟ ନେଇ ଲେଖାଥିବା ଏକ ପାଠ ଥାଏ । ସେହି ବିଷୟଟି ସେହି ସମୟରେ ମୋ ମନରେ ଏପରି ଆଗ୍ରହ ସୃଷ୍ଟି କରିଥାଏ ଯେ ତାକୁ ମୁଁ ପୂର ପୂରି ମୁଖସ୍ଥ କରି ଦେଇଥାଏ ।

ଏତିକି ବେଳେ ୧ ମ ମହାଯୁଦ୍ଧ ଲାଗି ଯାଇଥାଏ । ଇଂରେଜ ଏବଂ ଜର୍ମାନୀ ଯଦ୍ଧ ସୂତ୍ରରେ ଆବଦ୍ଧ ହେବାରୁ ବିଦ୍ୟାଳୟ ମାନଙ୍କରେ ଏକ ପ୍ରକାର (Rolled Gold) ମେଡଲ ବିତରଣ କରାଗଲା ।

ଆମ ସ୍କୁଲକୁ ସମ୍ବଲପୁର ଡେପୁଟି କମିସନର (ଇଂରାଜ ସାହେବ) ଉକ୍ତ ମେଡଲ ବିତରଣ କରିବାକୁ ଆସିଲେ । ଡେଙ୍ଗା ମଣିଷ । ନାକଟା ଟିକିଏ ବଡ । ତା ପୂର୍ବରୁ ମୁଁ ଗୋରା ସାହେବ କେବେ ଦେଖି ନ ଥାଏ । ଆମ ସ୍କୁଲରେ ମୁଁ ବସି ଥିବା ଶ୍ରେଣୀକୁ ଆସି ସେ ଚୌକୀରେ ବସିଲେ । ନିଃ ପ୍ରାଃ ବିଭାଗରେ ସେ ଅନ୍ୟାନ୍ୟ ଶ୍ରେଣୀକୁ ଯାଇ ପ୍ରଶ୍ନ ପଚାରି ପଚାରି ଆସୁ ଥାଆନ୍ତି । ଦୁଃଖର କଥା ତାଙ୍କ ପ୍ରଶ୍ନର ଉତ୍ତର କେହି ଜଣେ ବି ଦେଇ ପାରୁ ନ ଥାନ୍ତି ।

ଆମ ଶ୍ରେଣୀକୁ ଆସି ସେ ସେପରି କଣ ପଚାରିଲେ । ତାଙ୍କ ସଙ୍ଗରେ ଆସିଥିବା ଜଣେ ବ୍ୟକ୍ତି ମୋ ନିକଟକୁ ଆସି ମୋତେ କହିଲେ ଯେ ବାବୁ, ତୁମେ ତ ବେଶ୍ ଭଲ ପିଲା । ତୁମ ପାଠରୁ ଯାହା ଜାଣିଛ କହିଯାଅ । ସମସ୍ତ ସ୍କୁଲ ସେତେବେଳେ ଚୁପଚାପ୍ । ସାହେବ ଆସିଛନ୍ତି ଜାଣି ଗାଁର ବହୁ ଲୋକ ସ୍କୁଲ ବାରଣ୍ଡାରେ ସମବେତ ହୋଇଥାନ୍ତି । ସେମାନଙ୍କ ସହ ମୋ ବଡବାପା ନରହରି ଦାଶ ମଧ୍ୟ ଥାଆନ୍ତି । ମୁଁ ତାଙ୍କୁ ଦେଖୁଥାଏଁ ଆଉ ମନରେ ଦମ୍ଭ ଆଣୁଥାଏ । ସେ ମୋତେ ଦେଖି ନୀରବରେ ହାତ, ଆଖି ଠାରି କିଛି କହିବାକୁ ଇସାରା ଦେଉଥାନ୍ତି । ତାଙ୍କ ଠାରୁ କହିବା ପାଇଁ ଇସାରା ପାଇ ମୁଁ ଠିଆ ହୋଇ ମୁଖସ୍ଥ କରିଥିବା 'ହରିହର' ପାଠଟି ପୂରପୂରି କହିଗଲି । ସାହେବ ତାହା ଶୁଣି ମୋ ପ୍ରତି ଖୁସି ହେଲେ । ତାପରେ Good, Good, Very Good କହି ମୋର ହାତ ଧରି ପକାଇଲେ ଆଉ ମେଡଲଟି ଆଣି ମୋର କୁର୍ତ୍ତାରେ ଗୁନ୍ଥି ଦେଲେ । ଗୀତଟାଏ ଗାଅ ବୋଲି ବି ଆମ ଶିକ୍ଷକ ମୋତେ କହିଲେ । ତାପରେ ମୁଁ ଗୀତଟାଏ ଗାଇ ଥିଲି । ସମସ୍ତେ ତାହା ଶୁଣି ତାଳି ପିଟିଲେ । ଗ୍ରାମାଧୀପଙ୍କ ପକ୍ଷରୁ ତାପରେ ଆମ

ମାନଙ୍କୁ ମିଷ୍ଟାନ୍ନ ବଣ୍ଟନ କରଗଲା । ସାହେବଙ୍କ ନିର୍ଦ୍ଦେଶ ଅନୁଯାୟୀ ମୋତେ ୫ ଗୋଟି ମିଷ୍ଟାନ୍ନ ସମସ୍ତଙ୍କ ଠାରୁ ଅଧିକ ଦିଆହେଲା ।

ସାହେବ ଚାଲିଗଲେ । ଆମ ଶିକ୍ଷକ ଦିବାକର ତ୍ରିପାଠୀ ତାପରେ ମୋତେ ଟେକି ନେଇ ସବୁ ଲୋକଙ୍କ ମେଳରେ ରଖି କହିଲେ ଯେ ଏହି ପିଲା ଆଜି ଆମ ସ୍କୁଲର ଇଜ୍ଜତ ରଖିଲା ।

ଏହାପରେ ମୁଁ ୨ୟ ଶ୍ରେଣୀକୁ ଉନ୍ନୀତ ହୋଇଥିଲି । ଏହି ଶ୍ରେଣୀରେ ଲେଖା କାମ ସେତିକିବେଳେ କରାଯାଉଥିଲା । ହସ୍ତାକ୍ଷର ଖାତା, ଅର୍ଥ ଖାତା ଆଉ କେତେ କଣ ଖାତା ଦୁଆତ କଲମ ଧରି ଲେଖିବାକୁ ହେଉଥିଲା । ୨ୟ ଶ୍ରେଣୀ ଓ ୩ୟ ଶ୍ରେଣୀ ହେଡ ପଣ୍ଡିତ ହରମୋହନ ମିଶ୍ର ପଢାଉ ଥାନ୍ତି । ସ୍ଥାନୀୟ ମିଡଲ ସ୍କୁଲ ସଂଲଗ୍ନ ଏକ କୋଠରୀରେ ପିଲାଙ୍କୁ ଶିକ୍ଷା ଦିଆ ଯାଉଥାଏ । ତାଙ୍କ ଘର ଧମା । ବୟୋବୃଦ୍ଧ ବ୍ୟକ୍ତି । ପିଲାଙ୍କୁ ପିଟାପିଟି ବେଶୀ କରୁ ନ ଥିଲେ । ଏହି ଶ୍ରେଣୀରେ ପାଟିଗଣିତ ସଂକ୍ରାନ୍ତ ପ୍ରଶ୍ନମାଳା ଗଣିତ ବହିର ୧ମ ଭଗ, କଥାବଳୀ ପୁସ୍ତକର ୧ମ ଭଗ, ଭୂଗୋଳ ପାଠ ନାମକ ଏକ ଛୋଟିଆ ବହିର ୧ମ ଭଗ ଓ ଇତିହାସ ପାଠ ବହି ର ୧ମ ଭଗ ପଢା ହେଉଥାଏ । ପ୍ରକୃତି ପର୍ଯ୍ୟବେକ୍ଷଣ ବୋଲି ମଧ୍ୟ ଆଉ ଏକ ବିଷୟ ତଥା ସ୍ୱାସ୍ଥ୍ୟରକ୍ଷା ପାଠ ବୋଲି ଏକ ଛୋଟିଆ ପୁସ୍ତକ ମଧ୍ୟ ପଢା ବହି ମଧ୍ୟରେ ଥାଏ । ପ୍ରକୃତି ପାଠ ନିମିତ୍ତ ଆମ୍ଭେ ଜଣ ଜଣ କରି ଗୋଟିଏ ଲେଖା ଆଟିକା ଘରୁ ମାଟି ଭରି ସ୍କୁଲକୁ ଆଣିଥାଉଁ । ତହିଁରେ ମୁଗ, ବିରି କିମ୍ବା ସୋରିଷ ମଞ୍ଜି ବୁଣାଯାଇ ପାଣି ସିଞ୍ଚି ଗଛ ଉଠାଉ ଥିଲୁ ଏବଂ ତହିଁର ବିବରଣ ଖାତାରେ ଲେଖି ରଖୁଥାଉଁ । ୩ୟ ଶ୍ରେଣୀରେ ଏହି କାର୍ଯ୍ୟ ଟିକିଏ ବଡ଼କର ସଂପ୍ରସାରଣ ଘଟୁଥିଲା ।

ମୁଁ ଏହି ଶ୍ରେଣୀରେ ପଢୁଥିବା ବେଳେ ଆମ ଘରେ ଭିନେ ହୋଇ ଗଲେ । ଅର୍ଥାତ୍ ମୋର ପିତୃବ୍ୟ ମନବୋଧ ଦାଶ ପରିବାରରୁ ପୃଥକ୍ ହୋଇ ଅଲଗ୍ ରୋଷେଇ କରି ରହିଥିଲେ ।

ମୋର ପିତା ଜୀବିତ ଥିବା ପର୍ଯ୍ୟନ୍ତ ପରିବାରର ସଂହତି ଯେପରି ରହି ଥିଲା ତାଙ୍କର ମୃତ୍ୟୁପରେ ସେହି ସଂହତି ଆଉ ରହି ପାରି ନ ଥିଲା । ମୋର ପିତୃବ୍ୟ ପରିବାରରୁ ଅଲଗ୍ ରହିବା ପାଇଁ ନିଜ ପିତାଙ୍କ ନିକଟରେ ଦାବୀ କଲେ । ଫଳରେ ସେଥିପାଇଁ ପ୍ରତି ସପ୍ତାହରେ ଶନିବାର ଦିନ ରତିରେ ସେ ତାଙ୍କ ସ୍କୁଲରୁ ଘରକୁ ଆସିଲେ । ଏଥିପାଇଁ ମୋର ପିତାମହଙ୍କ ସହିତ ପାଟିତୁଣ୍ଡ କଳହାଦି କରୁଥାନ୍ତି । ମୋର ବଡବାପା କହୁଥାନ୍ତି ଯେ ଆମେ ଯଦି ଏବେ ଭିନେ

ହୋଇଯିବା ତେବେ ଏହି ପିତୃମାତୃହୀନ ଶିଶୁଟିର ଅବସ୍ଥା ଯାହା ଶୋଚନୀୟ ହୋଇ ପଡ଼ବ ସିନା । ଏଣୁ ତାର ବ୍ରତ ହେବାଯାଏ ଅନ୍ତତଃ ଆଉ ଦୁଇ ବର୍ଷ ଏକାଠି ଥାଉଁ । ଏହି ଶିଶୁଟିର ବଡ ଉଇକୁ ତ ମୁଁ ପୁଅ କରି ନେଇ ଯାଇଛି । ତୁ ଯଦି ଅଲଗ ରହିବୁ ତେବେ ମୁ ବି ଅଲଗ ହୋଇଯିବା ପରେ ବାପା ମାଆ ଆଉ ଏ ପିଲାଟି କିପରି ରହିବେ ? ବାପା ଅବା ତାଙ୍କର ଏ ବୟସରେ ପିଲାଟିକୁ ବା କିପରି ମଣିଷ କରି ପାରିବେ ? ତାଂକର ସେହି ଯୁକ୍ତି ମୁ ସେହି ବୟସରେ ମଧ୍ୟ ବୁଝି ପାରିଥିଲି । କିନ୍ତୁ ସେ ମାନି ନ ଥିଲେ ! ଫଳରେ ୧୯୨୨ ସାଲ ଶ୍ରାବଣ ମାସର କୌଣସି ଏକ ଦିନରେ ଆମ ଘରେ ଭିନେ ହୋଇଗଲେ ।

ସେଦିନ ଦ୍ୱିପ୍ରହର ସମୟ । ଆକାଶରେ ମେଘ ଘୋଟି ରହିଥିଲା । ମୋର ବଡବାପା ନରହରି ଦାଶ ମୋତେ ସ୍କୁଲରୁ ଛୁଟି କରାଇ ଘରକୁ ନେଇ ଆସିଥିଲେ ।

ଆମ ଘର ଅଗଣାରେ ସେତେବେଳେ ବାସନ ଆଦି ସବୁ ବାଣ୍ଟ ହୋଇ ରଖା ଯାଇଥାଏ । ଗୋଟିଏ ବାଣ୍ଟର ପାଖେ ମୋତେ ବସିବାକୁ କୁହାଗଲା । ମୁ ସେହି ସ୍ଥାନରେ ଯାଇ ବସିଥିଲି । କଂସା ପିତ୍ତଳ ବାସନ ଆଦିର ଭାଗ ପରେ ଚାଲିଲା ସୁନା ରୁପା ନେଇ ଗଣ୍ଡଗୋଳ । ମୋର ବଡବାପା ସେତେବେଳେ ଯେଉଁ ସବୁ କଥା କହିଲେ ତାହା ନ୍ୟାୟାନୁମୋଦିତ । କିନ୍ତୁ ମୋର ଖୁଡ ସେତେବେଳେ ସମସ୍ତ ପ୍ରକାର ଆଦବ କାଇଦାକୁ ଲଙ୍ଘନ କରି ମୋର ବଡବାପାଙ୍କୁ ଯେଉଁ ସବୁ କଟୁ କଥାମାନ କହିଲେ ସେଥିରେ ସେ ମ୍ରିୟମାନ ହୋଇ ପଡ଼ଲେ । ଯେଉଁ ଭାଇବୋହୂ ଦେଢ଼ଶୁରଙ୍କୁ ଦେଖା କେବେ ଦେଉ ନ ଥିଲେ ସ୍ୱାର୍ଥର ସଂଘର୍ଷ ନେଇ ସେଦିନ ସେ ଯାହା କଥା ସବୁ କହିଲେ ସେ ସମସ୍ତ କଥା ମୋର ଏବେ ମଧ୍ୟ ମନେ ରହିଛି ।

ସେମାନଙ୍କ ଉଚ୍ଚବାଚ ଶୁଣି ମୁ ଡରିଗଲି । ପଦାକୁ ଚାଲିଆସି କାନ୍ଦିଥିଲି । କେବଳ ଏତିକି ବୁଝିଲି ଯେ ମୋରି ପାଇଁ ଆଜି ଏତେ ଗଣ୍ଡଗୋଳ ଏ ଘରେ ଘଟି ଯାଉଛି । ମୁ ପଦି ମରିଯାଇ ଥାଆନ୍ତି ତେବେ ମୋର ବଡବାପା ନିଜର ଭାଇବୋହୂ ଠାରୁ ଏତେ ଅପମାନ ଆଜି ପାଇ ନ ଥାଆନ୍ତେ ।

ସେଦିନ ରାତିରେ ଦେଖିଲି ସମସ୍ତେ ତତ୍ପୂର୍ବରୁ ଯାହା ଗୋଟିଏ ସ୍ଥାନରେ ବସି ଗପ ଭୋଜନ କରୁଥିଲେ ତାହା ଆଉ ହେଲା ନାହିଁ । ମୋର କାକା ଏବଂ ଖୁଡ଼ ଘରର ଅନ୍ୟ ଏକ ସ୍ଥାନରେ ଯାଇ ରୋଷେଇ କରି ରହିଲେ ।

ସେହି ଦିନଠାରୁ ପରିବାରର ସଂହତି ଭଙ୍ଗି ଯାଇଥିଲା ସତ କିନ୍ତୁ ମୋର ବଡବାପା, ତାଂକ ପରିବାର, ମୋର ପିତାମହ, ପିତାମହୀ ଏବଂ ମୁ ଏପରି ୬ ଜଣିଆ ପରିବାର ହୋଇ ତାପରେ ରହିଥିଲୁ ।

# କବି ମେହେରଙ୍କ ସହିତ ଦେଖା

ମୋର ବଡବାପାଙ୍କ ଶ୍ୱଶୁର ଘର ବରପାଲି । ସେହି ବର୍ଷ ଆଶ୍ୱିନ ମାସରେ ମୋର ବଡବାପା, ବଡମାଆ, ମୋର ବଡଭଇ ଏବଂ ମୁ ଆମେ ଚାରିଜଣ ବରପାଲି ଯାଇଥିଲୁ ।

ବରପାଲି ଗଲେ ମୋର ବଡବାପା ବରପାଲିର ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ନିକଟକୁ ଯାଇ ଆଳାପ ଆଲୋଚନା ଆଦି କରନ୍ତି । ଏପରି ଭବେ ସେଥର ସେ ଆମ ଦୁଇ ଭଇଙ୍କୁ ଧରି ଗଙ୍ଗାଧର ମେହେରଙ୍କ ନିକଟକୁ ଯାଇଥିଲେ । ଆମ ଗଲା ସମୟରେ କବି ମେହେର କେତେଜଣ ଭଦ୍ରବ୍ୟକ୍ତିଙ୍କ ସହିତ ଏକ ମସିଣା ଉପରେ ତଳେ ବସିଥାନ୍ତି । ତାଂକ ଆଗରେ ଗୋଟିଏ ପୁରଣ ପଟା ଉପରେ 'ରାଧାନାଥ ଗ୍ରନ୍ଥାବଳୀ'ଟି ଅର୍ଦ୍ଧଖୋଲା ହୋଇ ରହିଥାଏ । ମୋର ବଡବାପାଙ୍କୁ ଦେଖି ସେ ପ୍ରଥମେ ନମସ୍କାର କଲେ । କୁଶଳ ପ୍ରଶ୍ନାଦି ପଚାରିବା ସଙ୍ଗେ ସଙ୍ଗେ ଆମ ଦୁଇ ଭଇଂକ କଥା ବି ପଚାରିଲେ । ପ୍ରଶ୍ନୋତ୍ତର ସରିଗଲା । ମୋର ବାପା ସେତିକି ବେଳେ ଆମକୁ ଦେଖି କହିଲେ ଯେ ୟେ ହେଉଛନ୍ତି ଜଣେ କବି, ବହି ଲେଖନ୍ତି । ମୁ ଆଶ୍ଚର୍ଯ୍ୟ ହୋଇଗଲି । ତାଂକ ମୁହଁକୁ ଦେଖିଲି । ମୋର ଦୃଷ୍ଟିଭଙ୍ଗିକୁ ଲକ୍ଷ୍ୟକରି ତାପରେ ସେ କହିଲେ ଯେ, 'ହଁ ବାବା, ମୁ ବହି ଲେଖେ । ତୁମ୍ଭମାନଂକ ପାଇଁ । ତୁମ୍ଭେମାନେ ପାଠ ପଢ । ବଡ ହୁଅ, ତାପରେ ମୋର ବହି ସବୁ ପଢ଼ିବ ।'

ମୋତେ ବହି ଗୋଟେ ଦିଅ, ମୁଁ କହିଲି । ତାପରେ ସେ ଇତସ୍ତତ ହେଲେ । ପରେ ମହିମା ବୋଲି ଛୋଟ ବହିଟାଏ ମୋତେ ଦେଲେ ଏବଂ କହିଲେ ଠିକ୍ ଠିକ୍ ତୁମ୍ଭେ ମୋତେ ବହି ମାଗିଲ ମୋତେ ଖୁସି ଲାଗିଲା । ହେଉ ବାବୁ ତୁମ୍ଭେ ପାଠ ପଢ, ଆଉ ବଡ ହୁଅ ବୋଲି ମୋ ମୁଣ୍ଡରେ ହାତ ବୁଲାଇଲେ । ଦୀର୍ଘ ୬୬ ବର୍ଷ ବିତି ଯିବା ପରେ ମଧ୍ୟ ତାଙ୍କର ସେହି ସବୁକଥା ଏବେ ମଧ୍ୟ ମୋର ମନେ ପଡୁଛି । ଗଙ୍ଗାଧର ଗ୍ରନ୍ଥାବଳୀ ଏହି ପରିଣତ ବୟସରେ ପଢିବା ବେଳେ ତାଙ୍କର ସେହି ଦିନର କଥା ତଥା ତାଙ୍କର ପ୍ରତିକୃତି ମୋର ମାନସ ପଟରେ ଭସି ଉଠୁଛି ।

କବିଙ୍କ ଠାରୁ ବିଦାୟ ନେଇ ତାପରେ ଆମେ ବରପାଲିର ନି. ପ୍ରା. ସ୍କୁଲକୁ ଯାଇଥିଲୁ । ସେଠାରେ ମୋର ବାପାଙ୍କ ପରିଚିତ ବନ୍ଧୁ ପ୍ରଧାନ ଶିକ୍ଷକ ମଧୁସୂଦନ ମିଶ୍ର ଥାଆନ୍ତି । ପ୍ରକାଣ୍ଡ ସ୍କୁଲ । ବାଡ଼ାବନ୍ଦୀ ହୋଇ ସ୍କୁଲର ସମ୍ମୁଖ ଭାଗରେ ବଗିଚାରେ କେତେ ପ୍ରକାର ଫୁଲ ସବୁ ଫୁଟିଥାଏ । ସ୍କୁଲର ଗେଟରେ କୁଞ୍ଜଘର ଗୋଟିଏ ଥାଏ । କୁଞ୍ଜଘରେ ଗୋଟିଏ ପ୍ରକାର ଲତା ମାଡ଼ି ଥିବାରୁ ଦୂରରୁ ତାର ସବୁଜିମା ମନରେ ଉଲ୍ଲାସ ଭାବ ଖେଳାଇ ଦେଉଥାଏ ।

ସ୍କୁଲରୁ ବାହାରି ଆମେ ତାପରେ ଥାନାକୁ ଯାଇଥିଲୁ । ସେଠାରେ ଆମ ଗାଁର ପଣ୍ଡାଘର ଭାଈ ଜଣେ ହାବିଲଦାର ଥାନ୍ତି । ସେ ଆମକୁ ଦେଖି ବିଶେଷ ଆଦର କରି ତାଙ୍କ ବସାକୁ ଡାକି ନେଲେ ଏବଂ ହଲୁଆ ନିଜ ହାତରେ ତିଆରି କରି ଆମକୁ ଖାଇବାକୁ ଦେଲେ । ତାଙ୍କ ଘର ବୋଡ଼ାସମ୍ବର ଅଞ୍ଚଳର ଡଙ୍ଗାଘାଟ ଗ୍ରାମ ଅଟେ ।

ବରପାଲିରେ ସେତେବେଳେ ସୂର୍ଯ୍ୟୋଦୟ ସିଂହ ଜମିଦାର ଥାନ୍ତି । ତାଙ୍କୁ ସମଗ୍ର ବରପାଲି ଅଞ୍ଚଳ ରଜା ବୋଲି ସମ୍ବୋଧନ କରୁଥାନ୍ତି । ତାଙ୍କ ଉଆସକୁ ରଜବାଟୀ କୁହାଯାଉଥିଲା । ମୋର ବଡ଼ବାପାଙ୍କ ଶ୍ୱଶୁରଙ୍କ ନାମ ଥିଲା ମଦନ ମୋହନ ମିଶ୍ର । ସେ ତଥାକଥିତ ରଜାଘରେ କବିରଜି କରୁଥିଲେ ବୋଲି ରଜବୈଦ୍ୟ ରୂପେ ତାଙ୍କର ଖ୍ୟାତି ଥିଲା । ମୋର ଯିବା ବହୁବର୍ଷ ପୂର୍ବରୁ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା । ତାଙ୍କ ସ୍ତ୍ରୀ ଜୀବିତା ଥାନ୍ତି । ରଜମାତା ତାଂକ ଠାରୁ ମନ୍ତ୍ର ନେଇ ଥିବାରୁ ମିଶ୍ର ପରିବାର ସହିତ ରଜ ପରିବାରର ସଂଭ୍ରମ ଥାଏ । ବର-ପାଲି ରହଣୀ କାଳରେ ମୁଁ ମୋର ବଡ ମାଆ; ଆଇ ଆଦିଂକ ସଙ୍ଗରେ ବହୁବାର ରଜବାଟୀ ଭିତରକୁ ଯାଇଥିଲି । ସୂର୍ଯ୍ୟୋଦୟ ସିଂହ ସେତେବେଳେ ଯୁବକ ଅଥଚ ଅବିବାହିତ । ରଜବାଟୀ ଭିତରେ ତାଂକ ମାଆ, ସରଗୁଜା ରାଣୀ (ସୂର୍ଯ୍ୟୋଦୟ ସିଂହଙ୍କ ପିଉସୀ), ତାଂକର ଭଉଣୀ ପ୍ରଭୃତି ଥାନ୍ତି ! ରଜବାଟୀ ସଂଲଗ୍ନ ଅନ୍ୟ ଏକ ପୃଥକ୍ ଅଂଶରେ ତାଂକର ୨ଟି ରକ୍ଷିତା ସ୍ତ୍ରୀ ରହିଥାନ୍ତି । ସେମାନଙ୍କୁ ଭିତିରିଆ ବୋଲି ଡକା ଯାଉଥିଲା । ସେହି ଦୁଇଜଣ ଭିତିରିଆଙ୍କୁ ବୃନ୍ଦାବନରୁ ବିଶେଷ କୌଶଳ କ୍ରମେ [redacted] ଅଣା ଯାଇ ଥିବାର ଶୁଣିଲି । ଉଭୟେ ଅତ୍ୟନ୍ତ ସୁନ୍ଦରୀ ତଥା ସ୍ୱାସ୍ଥ୍ୟବତୀ । ସୁଗାୟିକା । ହାରମୋନିୟମ ବଜାଇବାରେ ଉଭୟେ ସୁଶିକ୍ଷିତା । ସାନଟି ତବଲା ବାଦିକା ମଧ୍ୟ । ଦିଜଣ ଯାକ ଏକ ବାରଣ୍ଡା ସଂଲଗ୍ନ ୨ ଗୋଟି କୋଠରୀରେ ଅଲଗ ଅଲଗ ରହୁଥିଲେ ମଧ୍ୟ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ଥିବାର ଜଣା ପଡୁ ଥିଲା । ଆମକୁ ଦେଖି ସେମାନେ ସତ୍କାର

କରି ବସିବାକୁ ଆସନ ଦେଲେ । ଆସିଲା ବେଳେ ତାଂକ ହାତ ଟିଆରି କେତେ ପ୍ରକାର ଆଚ୍ଛର (Pickles) ଦେଇ ବିଦାୟ କରିଥିଲେ ।

## ଇଂରାଜ ରାଜ ଭକ୍ତିର ନିଦର୍ଶନ ଦରବାର ଦିବସ

ଇଂରେଜ ରହୁଚି ବେଳେ ପ୍ରତି ବର୍ଷ ଡିସେମ୍ବର ମାସ ୧୨ ତାରିଖରେ ସ୍କୁଲ କଚେରୀ ପ୍ରଭୃତି ବନ୍ଦ ହୋଇ ଦରବାର ଦିବସ ପାଳନ କର ଯାଉଥିଲା । ସେହି ବର୍ଷ ରେମୁଣା ମିଡଲ ସ୍କୁଲ ପଡ଼ଆରେ ଦ୍ୱିପ୍ରହରେ ସଭ ହେବାର ଥାଏ । ସେଥିପାଇଁ ସକାଳ ୮ଟାରୁ ପଡ଼ଆ ସଫା ସୁତର, ଆମ୍ବ ତୋରଣ ଦିଆ, ଡେକ୍ସ ଚୌକୀ, ବେଞ୍ଚ ପ୍ରଭୃତି ଆଣି ସଜାସଜି କରିବାରେ ଶିକ୍ଷକ ଛାତ୍ର ଗଣ ଲଗି ପଡ଼ଥାନ୍ତି ।

ଦିପହରେ ସ୍ଥାନୀୟ ନି. ପ୍ରା. ସ୍କୁଲ ବାଳକ ବାଳିକା ମିଃ ଭଃ ସ୍କୁଲ ଛାତ୍ର ଗଣ ଓ ସମସ୍ତ ଶିକ୍ଷକ ସେଠାରେ ଯାଇ ସମବେତ ହୋଇଗଲେ । ସଭମଞ୍ଚ ନିକଟରେ ବ୍ଲାକବୋର୍ଡ ଷ୍ଟେଣ୍ଡ ଦେହରେ ସମ୍ରାଟ ୫ମ ଜର୍ଜ ଓ ସାମ୍ରାଜ୍ଞୀ ମେରୀଂକ ଫଟୋ ଝୁଲାଯାଇ ସୁସଜ୍ଜିତ ଭବେ ରଖା ଯାଇଥିଲା ।

ଯଥା ସମୟରେ ରେମୁଣା ଗ୍ରାମାଧୀପ ବିଜେପୁର ଜମିଦାର ଅନିରୁଦ୍ଧ ଗଡତିୟା ଦଳବଳ ସହିତ ଗ୍ରାମ ଭିତରୁ ଆସିବାର ଦେଖାଗଲା । ତାଂକ ଆଗରେ ଢୋଲ, ମହୁରୀ, ତାସା ନିଶାଣ ଆଦି ବାଦ୍ୟ ଗୁଡକ ବାଜି ବାଜି ଆସୁଥାଏ । ସ୍କୁଲର ଶିକ୍ଷକ ଓ ଛାତ୍ରଗଣ ସେ ଆସିଯିବା କ୍ଷଣି ଛିଡା ହୋଇଗଲେ । ଅନିରୁଦ୍ଧ ବାବୁ ତାଂକ ପାଇଁ ନିର୍ଦ୍ଦିଷ୍ଟ ଥିବା ଚୌକୀରେ ବସି ପଡ଼ଲେ । ଶିକ୍ଷକଗଣ ତାପରେ ଆମ୍ଭମାନଙ୍କୁ ବସିବାକୁ କହିଲେ ।

ଇତ୍ୟବସରରେ ଗ୍ରାମର ମୋକଦ୍ଦମ ୩ ଗୋଟି ବଡ ବଡ ଗେଣ୍ଡୁଫୁଲ ମାଳ ଆଣି ଜମିଦାର ବସିଥିବା ଟେବୁଲ ଉପରେ ରଖିଦେଲେ । ହେଡ ପଣ୍ଡିତ ହରିହର ମିଶ୍ର ତାପରେ ଜମିଦାରଙ୍କୁ କହିଲେ ଯେ ସମ୍ରାଟ ଓ ସାମ୍ରାଜ୍ଞୀଙ୍କ ଫଟୋ ଦେହରେ ଫୁଲ ମାଳ ଦୁଇଟି ପିନ୍ଧାଇ ଦିଅନ୍ତୁ । ଜମିଦାର ଭକ୍ତି ସହିତ ଫୁଲ ମାଳ ଦୁଇଟି ଫଟୋ ଦୁଇଗୋଟି ଦେହରେ ପିନ୍ଧାଇ ଦେଲେ ଏବଂ ଆମ୍ଭ ମାନଙ୍କୁ ଦେଖି କହିଲେ ଯେ ବୋଲ ସମ୍ରାଟ ୫ମ ଜର୍ଜ କି ଜୟ । ଆମ୍ଭେ ମାନେ ତାହା ବୋଲି ବା ସହ ତାଳି ମଧ୍ୟ ପିଟି ଥିଲୁ । ହେ. ପ. ତାପରେ ଅପର ଫୁଲମାଳ

ଗୋଟିକ ଜମିଦାରଙ୍କ ଗଳାରେ ଲମ୍ବାଇ ଦେବା ସଙ୍ଗେ ସଙ୍ଗେ ଏପଟେ ୨ ଜଣ ପିଲା ଠିଆ ହୋଇ

ଗାଅ ସର୍ବେ ହର୍ଷ ଭରେ ବାଜ ବାଜା ବାଜରେ
ରଜା ରାଣୀ ଜର୍ଜ ମେରୀ …… ଥାନ୍ତୁ ସର୍ବ ସୁଖରେ…

ଗୀତ ବୋଲି ଥିଲେ । ଗୀତ ସମାପନାନ୍ତେ ପୁଣି ସେହି ହର୍ଷ ଧ୍ୱନି 'ସମ୍ରାଟ-୫ମ ଜର୍ଜ କି ଜୟ' ଦିଆ ଯାଇ ଥିଲା ଓ ସମସ୍ତେ ତାଳି ପିଟି ଥିଲେ । ତାପରେ ଜମିଦାରଙ୍କ ପକ୍ଷରୁ ସମସ୍ତ ପିଲାଙ୍କୁ ମିଷ୍ଟାନ୍ନ (ଖଜା) ବଣ୍ଟନ କରଯାଇ ସଭକାର୍ଯ୍ୟ ସାଙ୍ଗ ହୋଇଥିଲା ।

ରତିରେ ସେଥିପାଇଁ ଗାଁରେ ୨।୩ ଦଳ ନାଟବାଲା ନାଟ ଦେଖାଇ ଥିଲେ । ସେତେବେଳେ ଗାଁକୁ ପେଟ୍ରୋମେକ୍ସ ଲାଇଟ୍ ଆସି ନ ଥିଲା । ଘଷି ଦେହରେ କିରସିନ ଦେଇ ଏକ ପ୍ରକାର ମଶାଲ ଜଳା ଯାଇ ନାଟ ହୋଇ ଥିଲା । ଦରବାର ଦିବସ ଯେଉଁ ଗାଁରେ ଯେତେ ଆଡମ୍ବର ସହ କର ଯାଇ ପାରୁ ଥିଲା ତାର ରିପୋର୍ଟ ପୋଲିସ ପାଖକୁ ଯାଉଥିଲା ଏବଂ ସେ ଡେପୁଟି କମିସନର, ସମ୍ବଲପୁରଙ୍କୁ ଗ୍ରାମାଧୀପଙ୍କ ରାଜ ଭକ୍ତିର ବିବରଣ ସେତେବେଳେ ପ୍ରଦାନ କରୁଥାନ୍ତି ।

## ଗଡ ଗଡ ସାହେବ

୧୯୨୩ ସାଲରେ ମୁଁ ତୃତୀୟ ଶ୍ରେଣୀରେ ପଢୁଥାଏ । ସେହି ସମୟରେ ଶ୍ରୀନିବାସ ସିଂହ ନାମରେ ଜଣେ ବ୍ୟକ୍ତି ଜିଲା ଇନ୍ସପେକ୍ଟର ଥାନ୍ତି । ସେ ଭରି କଡା ହାକିମ ବୋଲି ଶିକ୍ଷକ ମାନେ ପରସ୍ପର କଥାବାର୍ତ୍ତା ହେଉଥାନ୍ତି ।

ସେହି ବର୍ଷ ସେ ଆମ ସ୍କୁଲକୁ ପରୀକ୍ଷା କରିବାକୁ ଆସିଲେ । ମଣିଷ ଗୋଟିକୁ ପ୍ରକୃତି ଗୋଟିଏ ।

କେତେକ ଲୋକ ଅଛନ୍ତି କଥା କହିଲା ମାତ୍ରେ ତା ନା କଣ, ତା ନା କଣ ପ୍ରଥମେ କହି କଥା କହିବା ଆରମ୍ଭ କରନ୍ତି । ଆଉ କେତେ ଜଣ ଅଛନ୍ତି ଯେଉଁମାନେ ମୁ କଣ କହୁଥିଲି କି, ସେହିପରି ଆମ ସମ୍ବଲପୁରର ମଫସଲି କେତେ ଜଣ ହେଁତାକିରି ଏପରି ଶବ୍ଦମାନ କଥା କହିବା ବେଳେ ବାରମ୍ବାର କହିଥାନ୍ତି ।

ଶ୍ରୀନିବାସ ସିଂହ ସେହିପରି ତାଙ୍କର କୌଣସି କଥା କହିବା ଆଗରୁ ଗଡ ଗଡ, କହି ତାଙ୍କ କଥା ଆରମ୍ଭ କରୁଥାନ୍ତି ।

ସେଥିପାଇଁ ତାଙ୍କୁ ଆମେ ଗଡ ଗଡ ସାହେବ ବୋଲି କହୁଁଥାଉ । ଡ. ଇ. ଶ୍ରୀନିବାସ ସିଂହ ଆସିଗଲେ । ତାଙ୍କ ଘର ଅନଗୁଳ ବୋଲି ଆଗରୁ କୁହା ଯାଉଥିଲା ।

ଇନ୍ସପେକ୍ଟର ଆସିଲେ ଆମ୍ଭେମାନେ କିପରି ତାଙ୍କୁ ସମ୍ମାନ ଦେଖାଇବୁ ଶିକ୍ଷକ ତା ଶିଖାଇ ଦେଇଥାନ୍ତି । ଅର୍ଥାତ୍ ଆମେ ୨ୟ ଓ ୩ୟ ଶ୍ରେଣୀ ପିଲା ସେତେବେଳେ ଲମ୍ବା ବେଞ୍ଚ ଉପରେ ବସୁଥାଉଁ । ସାହେବ କ୍ଲାସ ଭିତରେ ପାଦ ଦେବାକ୍ଷଣି ଶିକ୍ଷକ କହିବେ ଅମ୍ଭମାନଙ୍କୁ ଲକ୍ଷ କରି ଷ୍ଟେଣ୍ଡ ଅପ୍ । ଅମ୍ଭେମାନେ ତାହା ଶୁଣି ଠିଆ ହୋଇ ଯିବୁ । ତାପରେ କହିବେ ସେଲିଉଟ୍ ନମ୍ବର ୱାନ୍, ତାହା ଶୁଣି ଡାହାଣ ହାତ ପାପୁଲି କପାଳରେ ରଖିବୁ । ସେଲିଉଟ୍ ନମ୍ବର ଟୁ କହିଲେ ହାତ ଛାଡ଼ଦେବୁ । ସିଟ୍ ଡାଉନ୍ କହିଲେ ବସି ପଡ଼ବୁ ।

ଠିକ୍ ସେଦିନ ଏହି କାଇଦାରେ କାମ ସବୁ କରାଗଲା । ସାହେବ ଚୌକୀରେ ନ ବସି ଠିଆ ହୋଇ ଶିକ୍ଷକଙ୍କୁ ପଢା ବହିଟାଏ ମାଗି ପଚାରିଲେ ଏ ଶ୍ରେଣୀରେ କେତେ ଯାଏ ପାଠ ପଢା ସରିଛି ? ପ୍ରଧାନ ଶିକ୍ଷକ ହର ମୋହନ ମିଶ୍ର କଥାବଳୀ ବହିର ୨ୟ ଭଗରୁ 'ଗଢା ଓ ଗୋପାଳ ବାଳକ' ପାଠଟି ଖୋଲି ଦେଇ ତାଙ୍କୁ ଧରାଇ ଦେଲେ । ଇନ୍ସ୍ପେକ୍ଟର ତାପରେ ଶ୍ରେଣୀର ବେଞ୍ଚରେ ପ୍ରଥମେ ବସିଥିବା ପିଲାକୁ ପଢବାକୁ କହିଲେ । ଶ୍ରେଣୀରେ ମୁଁ ପ୍ରଥମ ନମ୍ବରରେ ବସି ଥାଏଁ । ଠିଆ ହୋଇଗଲି ଏବଂ ପଠନ ରୀତି ଅନୁଯାୟୀ ପଢ଼ବା ପୂର୍ବରୁ କହିଲି କଥାବଳୀ ୨ୟ ଭଗ, ଏତେ ପୃଷ୍ଠା, ପାଠ ନାମ 'ଗଢା ଓ ଗୋପାଳ ବାଳକ କଥା' । ତାପରେ ଯେପରି ପଢ଼ବା କଥା ପଢଗଲି । ପଢ଼ବା ସମୟରେ ସେଥିରେ ପଡ଼ଲା ଏକ ଶବ୍ଦ ଛଦ୍ମବେଶୀ । ସାହେବ ପଢ଼ା ବନ୍ଦ କରିବାକୁ କହି ପଚାରିଲେ ମୋତେ ଛଦ୍ମବେଶୀ ଅର୍ଥ କଣ ? ମୁ କହିଲି କପଟବେଶୀ । ତା ଶୁଣି ସାହେବ ପୁଣି ପଚାରିଲେ କପଟବେଶୀ ମାନେ କଣ ? ମୁ କହିଲି ଛଦ୍ମବେଶୀ । ଏପରି ୨/୪ ଥର ସେ ଏହି ପ୍ରଶ୍ନ ଉପରେ ପଚରା ପଚରି କରି ସେହି ଗୋଟିଏ ପ୍ରକାର ଉତ୍ତର ଶୁଣି ଶିକ୍ଷକଙ୍କୁ କହିଲେ ଯେ ଏହା ହେଲା ନାହିଁ । ପିଲାଙ୍କୁ ଶୁଆ ପଢାଇଲା ପରି କେତେକ ଶବ୍ଦର ଅର୍ଥ କୁହାଯାଇଛି । ସେମାନେ ସେ ସବୁକୁ ଘୋଷି ଦେଇ-ଛନ୍ତି । ମୂଳ ଶବ୍ଦଟିର ଅର୍ଥ ସେମାନେ ହୃଦୟଙ୍ଗମ କରିବା କଥା ।

ୟାପରେ ସେ କର୍ମ ସଙ୍ଗୀତ ଉପରେ ବିଶେଷ ଗୁରୁତ୍ୱ ଦେଇ ସେ ସମ୍ବନ୍ଧରେ ବହୁ କଥା କହିଥିଲେ ; ସେହି ସମୟରେ କର୍ମ ସଙ୍ଗୀତ, ଛିଅପିଲାଙ୍କ ପାଇଁ ଦୋଳୀଗୀତ ଆଦି କେତେ ଖଣ୍ଡ ଛୋଟ ଛୋଟ ବହି ଲେଖିଥାନ୍ତି । ସେସବୁ ଗୀତ ବହି ଛପା ହୋଇଥାଏ ମଧ୍ୟ । ସେହି ପୁସ୍ତକ ମାନଙ୍କ ମଧ୍ୟରୁ କେତେ ଖଣ୍ଡ

ପୁସ୍ତକ ଶିକ୍ଷକଙ୍କୁ ଦେଇଦେଲେ ଏବଂ ତାହା ପିଲାଙ୍କୁ ମୁଖସ୍ଥ କରିବାକୁ ଶିକ୍ଷକଙ୍କୁ ନିର୍ଦ୍ଦେଶ ପ୍ରଦାନ କରି ତାପରେ ମି. ଭ. ସ୍କୁଲକୁ ପରିଦର୍ଶନ କରିବାକୁ ଚାଲି ଯାଇଥିଲେ ।

କ୍ରମେ ସ୍କୁଲମାନଙ୍କରେ ସରଳ ଗୀତ, ଚକ୍ର ଗୀତ, ବଡ ହେଲେ ମୁହିଁ କୃଷକ ହେବି, ବଢ଼େଇ, ପୋଲିସ, ପୋଷ୍ଟମେନ ଆଦି ଗୀତ ଗୁଡ଼ିକ ସେ ଯାହା ତାଙ୍କ କର୍ମ ସଙ୍ଗୀତ ପୁସ୍ତକରେ ଲେଖିଥିଲେ ସେସବୁ ଗୀତ ଅଭିନୟ ସହିତ ଉପ-କରଣମାନଙ୍କୁ ନେଇ ଶିକ୍ଷକମାନେ କରୁଥିଲେ । ବାଳିକା ସ୍କୁଲ ମାନଙ୍କରେ ସୀତା, ସାବିତ୍ରୀ ଗୀତ ଯେ ଯାହା ଲେଖିଥିଲେ ତାହା ବୋଲି ଦୋଳୀ ଗୀତ ବୋଲା ହେଉଥିଲା ।

ସେ ଶିକ୍ଷା ବିଭାଗରୁ ବିଦାୟ ନେଇଯିବା ପରେ ମଧ୍ୟ ଏହି ଗୀତ ଗୁଡ଼ି-କର ଅଭ୍ୟାସ ବହୁ ବର୍ଷ ଯାଏ ରହି ଆସିଥିଲା ।

ସେହି ବର୍ଷ ୩ୟ ଶ୍ରେଣୀରୁ ମୁଁ ନି. ପ୍ରା. ବୃତ୍ତି ପରୀକ୍ଷାକୁ ନିର୍ବାଚିତ ହୋଇ ବୃତ୍ତି ପରୀକ୍ଷା ଦେଇଥିଲି ।

ନିମ୍ନ ପ୍ରାଥମିକ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ୪ର୍ଥ ଶ୍ରେଣୀରେ ଅଧ୍ୟୟନ କରିଥିଲି । ୪ର୍ଥ, ୫ମ, ୬ଷ୍ଠ ଓ ୭ମ ଶ୍ରେଣୀକୁ ନେଇ ମି. ଭ. ସ୍କୁଲ କୁହା ଯାଉ-ଥିଲା । ମଧୁସୂଦନ ରାଓଂକ କୃତ ସାହିତ୍ୟ କୁସୁମ ପୁସ୍ତକ ୧ମ ଭାଗ ଓ ୨ୟ ଭାଗ, ୪ର୍ଥ, ୫ମ ଶ୍ରେଣୀରେ ଏବଂ ସେହିପରି ସାହିତ୍ୟ ପ୍ରସଙ୍ଗ ପୁସ୍ତକ ୧ମ ଭାଗ ଓ ୨ୟ ଭାଗ ୬ଷ୍ଠ, ୭ମ ଶ୍ରେଣୀରେ ପଢା ହେଉଥିଲା । ମଧୁସୂଦନ ଦାଶଂକ ଏକ ଅଙ୍କ ପୁସ୍ତକ ମଧ୍ୟ ୪ର୍ଥ ଓ ୫ମରେ ଏବଂ ଦାଶରଥି ପାଣିଗ୍ରାହୀଂକ ମଧ୍ୟୋଜ୍ଜ୍ୱଳ ନବ-ବିଧାନ ଗଣିତ ପୁସ୍ତକ ୬ଷ୍ଠ ଓ ୭ମ ଶ୍ରେଣୀରେ ପଢା ହେଉଥିଲା । ମରିସନ ସାହେବ କୃତ ଏକ ଭୂଗୋଳ ପାଠ ବହି ୬ଷ୍ଠ ଓ ୭ମ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥାଏ । ୬ଷ୍ଠ ଶ୍ରେଣୀରେ ଇଉରୋପ ଏବଂ ଏଶିଆ ମହାଦେଶର ସମଗ୍ର ବିଷୟ ଏବଂ ୭ମ ଶ୍ରେଣୀରେ ଆଫ୍ରିକା, ଅଷ୍ଟ୍ରେଲିଆ ଏବଂ ଆମେରିକା ଉତ୍ତର ଓ ଦକ୍ଷିଣ ମହାଦେଶର ଭୌଗଳିକ ବିବରଣ ଟିକିନିଖି ଭାବେ ପଢା ଯାଉଥାଏ ।

ଇଉକ୍ଲିଡ ରଚିତ ଜ୍ୟାମିତି ବହିଟି ମଧ୍ୟ ୬ଷ୍ଠ ଓ ୭ମ ଶ୍ରେଣୀ ପାଇଁ ୨୯ ଉପପାଦ୍ୟ ପର୍ଯ୍ୟନ୍ତ ଏବଂ ତା ସହିତ ସମ୍ପାଦ୍ୟ ଗୁଡ଼ିକ ମଧ୍ୟ ଅତି ଯତ୍ନର ସହିତ ଶିକ୍ଷକ ଗଣ ଆମ୍ଭମାନଙ୍କୁ ପଢାଉଥାନ୍ତି ।

ମି. ଭ. ସ୍କୁଲର ହେ. ପ. ହରିହର ମିଶ୍ର ୧୯୨୫ ଖ୍ରୀ:ରେ ଅବସର

ନେବାରୁ ତାଂକ ସ୍ଥାନରେ ବରପାଲି ନିବାସୀ ମଦନ ମୋହନ ପ୍ରଧାନ ହେ. ପ. ରୂପେ ଆସି ଯୋଗଦାନ କରିଥିଲେ ।

୧୯୨୭ ସାଲରେ ମୁଁ ୬ଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଥିଲି । ହଜାରୁ ପ୍ରଧାନ ନାମରେ ଜଣେ ଅବିବାହିତ ଯୁବକ ସେତେବେଳେ ଆମ୍ଭମାନଙ୍କୁ ପଢାଉ ଥିଲେ । ତାଂକ ଘର ବଗହଗୋଡା । ତାଂକର ଶିକ୍ଷାଦାନ ପ୍ରଣାଳୀ ଅତି ଉତ୍କୃଷ୍ଟ ଧରଣର ଥିଲା । ପ୍ରତ୍ୟେକ ବିଷୟ ସେ ଅତି ନିଷ୍ଠାର ସହ ଆମ୍ଭମାନଙ୍କୁ ପଢାଉ ଥାନ୍ତି । ୪ମ ଶ୍ରେଣୀର ଶିକ୍ଷକ ଥାନ୍ତି ସେତେବେଳେ ତୋରା ଗ୍ରାମ ନିବାସୀ ନଟବର ସାହୁ । ଶିକ୍ଷକ ମାନଂକ ମଧ୍ୟରେ ସେ ଥାନ୍ତି ଅତ୍ୟନ୍ତ ଧୀରସ୍ଥିର ବ୍ୟକ୍ତି । ଅଧ୍ୟାପନା ପ୍ରଣାଳୀ ମଧ୍ୟ ତାଂକର ଥାଏ ଅତି ସଞ୍ଜତ । ସେ ଗ୍ରାମରେ ସମୟେ ସମୟେ କବିରାଜୀ ମଧ୍ୟ କରୁଥାନ୍ତି ।

ହେ. ପ. ମଦନ ମୋହନ ପ୍ରଧାନ ଶିକ୍ଷକ ହିସାବରେ ଥାଇ ନଥିଲା ପରି । [redacted] । ତାଂକ କ୍ଲାସକୁ ଆସି ତାଂକର ପାଠପଢା ବିଷୟରେ ଉଦାସୀନତା ଲକ୍ଷ୍ୟ କରି ଆମ୍ଭେ- [redacted] ହୋଇ ପଡଥିଲୁ । [redacted] । ତାଂକ ସ୍ଥାନରେ ପତିତପାବନ ପଟ୍ଟନାୟକ ନାମରେ ଜଣେ ବ୍ୟକ୍ତି ହେ. ପ. ରୂପରେ ରହିଲେ । ତାଂକ ଘର ପୁରୀ ଜିଲ୍ଲା କୁହୁଡ ଗ୍ରାମ । ପତିତପାବନ ବାବୁ ଯେଉଁ ୬ ମାସ ଆମ୍ଭମାନଙ୍କୁ ପଢାଇ ଥିଲେ ତାଂକରି ଅଧ୍ୟାପନା ଯୋଗୁଁ ଶେଷରେ ସେହି ବର୍ଷ ୨୮ ଜଣ ଛାତ୍ରଙ୍କ ମଧ୍ୟରୁ ୭ ଜଣ ଛାତ୍ର ପାସ କରିଥିଲେ । ପଟ୍ଟନାୟକ ବାବୁ ଥିଲେ ଶିକ୍ଷକ ହିସାବରେ ଆଦର୍ଶ ସ୍ଥାନୀୟ । ପ୍ରତ୍ୟେକ ବିଷୟରେ ତାଂକର ଅଗାଧ ପାଣ୍ଡିତ୍ୟ ଥାଏ । ୭ମ ଶ୍ରେଣୀର ପିଲାଙ୍କୁ ପରୀକ୍ଷା ପୂର୍ବର ୪ ମାସ ଧରି ସେ ପ୍ରତ୍ୟହ ମାଗଣାରେ ପାହାନ୍ତିଆରୁ ପିଲାଙ୍କୁ ଉଠାଇ ପଢାଉଥିଲେ । ମୁଁ ସ୍ଥାନୀୟ ଛାତ୍ର ହେଲେ ସୁଦ୍ଧା ହଷ୍ଟେଲରେ ରହୁଥିଲି । ଘରେ ଖାଇକରି ସନ୍ଧ୍ୟାବେଳେ ଯାଇ ଗତିରେ ବୋର୍ଡିଂରେ ଶୋଉଥିଲି ।

ଦିନକର କଥା । ପାହାନ୍ତିଆ ପଢା ବେଳେ ସେ ଥରେ ବ୍ୟାକରଣ ଗତ ପ୍ରଶ୍ନ ପଚାରିବାକୁ ଯାଇ ପଚାରିଲେ ଯେ ପୃଥିବୀ କି ଲିଙ୍ଗ ? ତାଂକର ସେହି ପ୍ରଶ୍ନଟିର ଉତ୍ତର କୌଣସି ପିଲା ଦେଇ ପାରିଲେ ନାହିଁ । ସମସ୍ତେ ଚୁପଥାନ୍ତି । ମୁଁ ଶ୍ରେଣୀରେ ପ୍ରଥମ ଥାଏଁ । ସମସ୍ତଙ୍କୁ ଚୁପ ରହିବା ଦେଖି ସେ ବିରକ୍ତ ହୋଇ-

ଗଲେ । ପରିଶେଷରେ ମୋତେ ଦେଖି ଦୃଢ ସ୍ୱରରେ କହିଲେ ଯେ ତୁ କହ ? ମୁ ଇତସ୍ତତ ହୋଇ 'ସ୍ୱାଭବିକ ସ୍ତ୍ରୀଲିଙ୍ଗ' କହି ଦେଲି ଆଉ ବସି ପଡ଼ଲି । ସଙ୍ଗେ ସଙ୍ଗେ ସେ ମୋତେ ସାବାସ୍ କହିଲେ । ତାପରେ କହିଲେ ଯେ ଏହି ଗୋଟିଏ ପ୍ରଶ୍ନ ମୁ ଓଡଶାର ୫ଟି ଜିଲ୍ଲାରେ ଏଥରକୁ ମିଶାଇ ପଋରି ଆସିଛି । କେହି କହି ନ ଥିଲେ । କେବଳ ବାଣପୁରର ଗୋଟିଏ ପିଲ ଏ ପ୍ରଶ୍ନର ଉତ୍ତର ଦେଇଥିଲ । ତାପରେ ଆଜି ମୁ ଏଇଠି ଯାର ଉତ୍ତର ଶୁଣିବାକୁ ପାଇଲି । ଏପରି ପିଲ ଜୀବନରେ ନିଶ୍ଚୟ ଉନ୍ନତି କରିବେ । କଥାଟି ସେଦିନ ସେତିକିରେ ସରିଗଲ । ମୁ ବି ଭରି ଖୁସି ହୋଇ ଯାଇଥିଲି ସେଦିନ ।

ତା ଆରଦିନ । ସେହିପରି ପାହାନ୍ତଆ ପଢାବେଳେ ପୁଣି ପ୍ରଶ୍ନ ପଋର ଗଲ ଇତିହାସରୁ । ସେତେବେଳେ ଗୋଟିଏ ପାଠ ଥାଏ 'ଇଂରେଜ ରଜ୍ୟରେ ଭରତର ଶ୍ରୀବୃଦ୍ଧି ସାଧନ' । ଏହି ପ୍ରଶ୍ନର ଉତ୍ତର ଯିଏ ଯାହା ଦେଲେ । ଉତ୍ତରତକ ଶୁଣି ସେ ଯେତିକି ଖୁସି ହେବାର କଥା ତାହା ହୋଇ ପାରି ନ ଥିଲେ ଏବଂ ପରିଶେଷରେ ମୋତେ କହିଲେ ଯେ ଟିକିଏ ଭଲ କରି କହିବାକୁ ।

ମୁ ପ୍ରଶ୍ନଟିର ଯାହା ଉତ୍ତର ଦେଇଥିଲି ସେ କଥା ଏବେ ବି ମୋର ସ୍ପଷ୍ଟ ମନେ ଅଛି । ମୁ କହିଥିଲି ଯେ ବିଟିଶ୍ ସରକାରଙ୍କ ଶାସନ କାଳରେ ଆମ୍ଭ ଭରତୀୟ ମାନଙ୍କର କୌଣସି ଉନ୍ନତି ସାଧିତ ହୋଇ ପାରି ନାହିଁ । ବରଂ ଆମେ ଦିନୁଦିନ ତାଙ୍କ ଶୋଷଣ ହେତୁ ସର୍ବସ୍ୱାନ୍ତ ହେଲୁଣି । ଯେ ପର୍ଯ୍ୟନ୍ତ ଏହି ସରକାର ନ ଯାଇଛି ଆମର ଟିକେ ଟିକେ ବି ଉନ୍ନତି ସାଧିତ ହୋଇ ପାରିବ ନାହିଁ' । ଏତିକି କହି ସାରିଛି, ତାପରେ ସେ ଡମା ଡମା ଆଖିରେ ମୋତେ ଅନାଇ ବିରକ୍ତି ବ୍ୟଞ୍ଜକ ସ୍ୱରରେ କହିଲେ ଯେ ଚୁପ୍ କର — ମୋର ଆଉ ଧୈର୍ଯ୍ୟ ନାହିଁ ତୋ କଥା ଶୁଣିବାକୁ ।

ତାପରେ ପିଲଙ୍କ ଆଡକୁ ଅନାଇ କହିଲେ 'ବୁଝିଲ ପିଲାଏ, ଇ ଶଳା ଆଜି ଯାହା କହିଲ ଏଥିପାଇଁ ଏ ଶଳା ଦିନେ ନିଶ୍ଚେ ଜେଲ ଯିବ । ସେ ହେଉଛି ଗୋଟାଏ କୁଳାଙ୍ଗାର, ଯାକୁ ଯେ ଜନ୍ମ ଦେଇଛି ସେ ବରଂ ଜନ୍ମବେଳୁ ଯାର ତଣ୍ଟି ଚିପି ମାରି ଦେବାର ଉଚିତ ଥିଲ । ଏପରି ପିଲା କୂଅ ପୋଖରୀରେ ବୁଡ ମରିଯିବା ଭଲ । ଇଏ ଯେଉଁ ପତ୍ରିକା 'ଆଶା' ପଢୁଛି ସେହି ଆଶା ପତ୍ରିକା ଯାକୁ ଦିନେ ନିଶ୍ଚୟ ନିରଶାରେ ପରିଣତ କରିବ' ।

ଏକ ନିଃଶ୍ୱାସରେ ସେ ଯେତେବେଳେ ଏତକ କଥା କହିଗଲେ ମୁ କାନ୍ଦ ପକାଇଥିଲି । ସକାଳ ବି ପାହି ଆସିଥିଲ । ଛୁଟି ପାଇ ଆମେ ବି ଯେଝା

ସ୍ଥାନକୁ ଚାଲି ଆସିଥିଲୁ । ଶିକ୍ଷକଙ୍କ ଠାରୁ ତିରସ୍କାର ଶୁଣି ସେ ଦିନସାରା ମୋ ମନ ଠିକ୍ ରହିଲା ନାହିଁ ।      × ×      × ×      × ×

ମୁଁ ସପ୍ତମ ଶ୍ରେଣୀ ପଢୁଥିବା ବେଳେ ତତ୍କାଳୀନ ବ୍ରହ୍ମପୁରରୁ ପ୍ରକାଶିତ ହେଉଥିବା ସାପ୍ତାହିକ 'ଆଶା' ପତ୍ରିକା ଡାକରେ ମଗାଇ ପଢୁଥିଲି । ସେଥିରେ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ କଥା ଆଦି ପ୍ରକାଶିତ ହେଉଥାଏ । ସେ ସବୁ ପଢି ମୋର ବାଳକ ମନରେ ଗାନ୍ଧିଜୀଙ୍କ ଆନ୍ଦୋଳନ ପ୍ରତି ନୀରବ ସମର୍ଥନ ଥାଏ । ଇଂରେଜ ରାଜତ୍ୱ ପ୍ରତି ମୋ ମନରେ ବିତୃଷ୍ଣା ଭାବ ଜାତ ହୋଇଥାଏ । ପତିତପାବନ ବାବୁ ସେଦିନ ଯେଉଁ ଗାଳି ଦେଲେ ତାହା ଆଜି ପର୍ଯ୍ୟନ୍ତ ବି ମୋ ମନେ ରହି ଆସିଅଛି ।

ସମୟ ସ୍ରୋତରେ ଏପରି ଭାବେ ଦୀର୍ଘ ସମୟ ଅତୀତ ହୋଇ ଯାଇ ଥାଏ । ଆମ ଦେଶ ଭାରତ ବି ଏଣେ ସ୍ୱାଧୀନତା ଲାଭ କରିଥାଏ । ଦେଶ ସ୍ୱାଧୀନ ହୋଇ ଯିବା ପରେ ମୁଁ ବି ଦିନେ ଭାବିଲି ଯେ ସତେ କଣ ଇଂରେଜ ଶାସନ ଆମ ଦେଶରେ ରହିଲା ? କିନ୍ତୁ ଦେଶ ସ୍ୱାଧୀନ ହେବାର ୧୯ ବର୍ଷ ପୂର୍ବରୁ ମୁଁ ଯେଉଁ ସ୍ୱପ୍ନ ଦେଖୁଥିଲି ଏବଂ ମୋର କୈଶୋର ପ୍ରାଣ ସେଥିପାଇଁ ଯେଉଁ ଭାବେ ବ୍ୟାକୁ- ଳତା ପ୍ରକାଶ କରୁଥିଲା ତାରି ପରିପ୍ରକାଶ ନିମିତ୍ତ ଶିକ୍ଷକ ମହୋଦୟ ମୋତେ ଯେଉଁ ଗାଳି ଦେଇଥିଲେ ସେ ଦିନର ଦୁଃଖ, ମାନସିକ ଗ୍ଲାନି; ଚିତ୍ତର ଅଶାନ୍ତି ଆଦି ପୁଣି ଅନ୍ୟ ଦିଗରେ ଭାରତ ସ୍ୱାଧୀନତା ଲାଭର ଗୌରବ, ଅତୀତରେ ଜଣେ କ୍ଷୀଣ ଉଦ୍ୟମ କରିଥିବା ସ୍ୱାଧୀନତା ଲାଭର ସାଫଲ୍ୟ ନେଇ ମନରେ ଯେଉଁ ଆନନ୍ଦ, ଉଦ୍ଦୀପନା ଜାତ ହୋଇଥାଏ ତାରି ତୁଳନା କରି ନାନା କଥା ଭାବୁଥାଏଁ ପୁଣି ୧୯୬୨ ରେ ସ୍ୱାଧୀନ ପରବର୍ତ୍ତୀ ଭାରତର ରାଷ୍ଟ୍ରପତିଙ୍କ ଠାରୁ ସ୍ୱର୍ଣ୍ଣ ପଦକ ପ୍ରାପ୍ତ, ୧୯୬୪ ସାଲରେ ଜଣେ କୃତୀ ଶିକ୍ଷକ ରୂପେ ଓଡ଼ିଶା ରାଜ୍ୟପାଳଙ୍କ ଠାରୁ ପ୍ରାପ୍ତ ପୁରସ୍କାର ତଥା ସମ୍ମାନ ଆଦିର ମୂଳରେ ଥାଏ ଯାହାଙ୍କର ନୀରବ ଇଙ୍ଗିତ ଏବଂ ଆଶୀର୍ବାଦ ସେହି ମୋର ନମସ୍ୟ ଗୁରୁଦେବ ପତିତପାବନ ପଟ୍ଟନାୟକ ବଞ୍ଚି ଥାଆନ୍ତେ କି ତାଙ୍କୁ ପତ୍ର ଦ୍ୱାରା ଜଣାଇ ଦିଅନ୍ତି ଯେ ସେ ଯାହାକୁ ଦିନେ କେତେ କଷ୍ଟ କରି ଶିକ୍ଷା ପ୍ରଦାନ କରିଥିଲେ ତାରି ପରିଣତି ଘଟିଛି ଏପରି ଭାବେ······ ଇତ୍ୟାଦି ।

ସୁଯୋଗ ଖୋଜୁଥାଏଁ । ଦିନେ ଖବର ପାଇଲି ଯେ ଗୁରୁଦେବ ତାଙ୍କ ନିଜ ଗ୍ରାମ କୁହୁଡ଼ରେ ସକୁଶଳେ ଅବସ୍ଥାନ କରୁଛନ୍ତି । ତେଣୁ ତାଙ୍କ ପାଖକୁ ଏକ ଚିଠି ଲେଖି ମୋର କୃତଜ୍ଞତା ଜଣାଇ ଦେଲି ଏବଂ ମୋର ସୌଭାଗ୍ୟ, ସେ ବି ମୋତେ ଆନନ୍ଦାତିଶଯ୍ୟ ମନୋଭାବ ନେଇ ଆଶୀର୍ବାଦ ପ୍ରଦାନ, ପତ୍ର ମାଧ୍ୟମରେ

କରିଥିଲେ । ୧୯୭୭ ସାଲ ଅକ୍ଟୋବର ମାସ ଯାଏ ଆମ୍ଭ ମାନଙ୍କର ଏହି ଗୁରୁଶିଷ୍ୟ ସମ୍ବନ୍ଧ ପତ୍ର ବିନିମୟ ସୂତ୍ରରେ ରହି ଆସିଥିଲା ।

ତାପରେ ଦିନେ ଖବରକାଗଜରୁ ଅବଗତ ହେଲି ଯେ ମୋର ପରମାରାଧ୍ୟ ଗୁରୁଦେବଂକ ଇହଲୀଳା ସାଙ୍ଗ ହୋଇ ଯାଇଛି । ତାଂକର ଅନ୍ତିମ ପତ୍ରଟି ଯାହା ସେ ମୋ ପାଖକୁ ଲେଖିଥିଲେ ତାହାର ପ୍ରତିଲିପି ହେଉଛି ଏହା—

ଓଁ

At./P O. Kuhuri (Puri)
14 - 2 - 77

ଆୟୁଷ୍ମାନ୍ ପୁତ୍ରକଳ୍ପ ଶ୍ରୀମାନ୍ ବୀରବର

ଶୁଭେଚ୍ଛା ଗ୍ରହଣ କରିବ ।

ତୁମେ ପଠାଇଥିବା ଗାମୁଛା ପାର୍ଶଲ ପାଇଛି । ମୋର ସ୍ୱାସ୍ଥ୍ୟ ବର୍ତ୍ତମାନ ଭଲ ଅଛି । ନାଳ ଶୂଳା ଝାଡାରେ ଆକ୍ରାନ୍ତ ଥିବାରୁ ପତ୍ର ଦେବାରେ ବିଳମ୍ବ ଘଟିଲା । ଆଜି ତମର ଖଣ୍ଡିଏ ପତ୍ର ପାଇଲି । ଯହୁଁ ବାର୍ଦ୍ଧକ୍ୟ ଅବସ୍ଥା ଆସୁଛି ତହୁଁ କର୍ମ ଜଞ୍ଜାଳ ବଢୁଛି । ଅନ୍ୟସବୁ ଭଲ । ବେଶୀ କିଛି ଲେଖି ପାରୁନାହିଁ ।

ପୁତ୍ର ଓ ନାତି ନାତୁଣୀ ମାନଙ୍କୁ ଶୁଭ ଆଶୀର୍ବାଦ ଜଣାଇ ଦେବ । ଇତି ।

ମଙ୍ଗଳାକାଙ୍‌କ୍ଷୀ
ସ୍ୱାଃ ନଃ ଶ୍ରୀ ପତିତପାବନ ପଟ୍ଟନାୟକ

× × × ×

ମୁଁ ୬ଷ୍ଠ ଶ୍ରେଣୀରେ ପଢୁଥିବା ବେଳେ ରାଧାଚରଣ ଦାଶ ନାମରେ ଜଣେ ଜିଲ୍ଲା ଇନ୍‌ସ୍ପେକ୍ଟର ଆମ ସ୍କୁଲକୁ ପରିଦର୍ଶନ କରିବାକୁ ଆସିଥାନ୍ତି । ସେ ଜଣେ ନୀତିବାଦୀ, ଜ୍ଞାନୀ ତଥା ସଚ୍ଚୋଟ ବ୍ୟକ୍ତି ଥିଲେ । ସ୍କୁଲର ପ୍ରଧାନ ଶିକ୍ଷକ ମଦନ ମୋହନ ବାବୁ ସେ ଆସିଯିବା ପରେ ସେ ଯେଉଁ କୋଠରୀରେ ଅବସ୍ଥାନ କରୁଥାନ୍ତି ସେଠାକୁ ୨/୩ ଜଣ ପିଲାଙ୍କୁ ନେଇ ସେହି କୋଠରୀରେ ବସାଇ ଦେଇ କହିଲେ ଯେ ଏହି ପିଲାମାନେ ଏଠାରେ ଅଛନ୍ତି, ଆପଣ ଏମାନଙ୍କୁ ଯାହା କରିବାକୁ କହିବେ ତାହା କରିବେ । ଡ. ଇ. ରାଧାଚରଣ ବାବୁ କିନ୍ତୁ ତାହା ସ୍ୱୀକାର କରି ନ ଥିଲେ । ଓଲଟି ତାଙ୍କୁ କହିଲେ ଯେ ଏମାନେ ହେଉଛନ୍ତି ଛାତ୍ର । ଏମାନେ ତ ଆମର ଚାକର ନୁହନ୍ତି । ମୋ ପିଅନ ଅଛି । ସେ ସବୁ କାମ କରିବ ।

ମଦନ ବାବୁ ଇତ୍ୟବସରରେ ସ୍କୁଲ ବଗିଚାରେ ଉତ୍ପନ୍ନ ହେଉଥିବା ଫୁଲକୋବି, କଞ୍ଚା କଦଳୀ, ଟମାଟୋ, ଲଙ୍କା ବାଇଗଣ ଆଦି ଯାହା ତାଙ୍କ ନିକ-

ଟକୁ ପଠାଇ ଦେଇଥିଲେ ସେସବୁ ପିଅନ ହାତରେ ଆମ୍ଭମାନଙ୍କ ସମକ୍ଷରେ ଡ.ଇ. ମହାଶୟ ଫେରାଇ ଦେଇଥିଲେ ।

ପିଅନ ଜିନିଷ ଗୁଡକ ନେଇ ହଷ୍ଟେଲକୁ ଗଲା ଏବଂ ତାକୁ ହେ: ପ:ଙ୍କ କୋଠରୀରେ ରଖିଦେଲା ଯେମିତି ତାହା ଜାଣି ସମସ୍ତ ଶିକ୍ଷକ ଜମା ହୋଇ ଗଲେ ଏବଂ ହେ: ପ: ମଦନ ବାବୁ ଙ୍କ ନେତୃତ୍ୱରେ ପୁଣି ସେ ସବୁ ଜିନିଷ ନେଇ ଡ: ଇ: ଙ୍କ ପାଖକୁ ଯାଇ କହିଲେ ଯେ ଆଜ୍ଞା, ଏଇଟା ହେଉଛି ସ୍କୁଲ ବଗିଚାର ଜିନିସ । ଆପଣ ଯାକୁ ନ ରଖିଲେ ଆମ୍ଭ ମାନଙ୍କର ଅପମାନ ହେବ ।

ରାଧାଚରଣ ବାବୁ ତାପରେ କହିଲେ ସ୍ୱଳ୍ପ ବେତନ ଭୋଗୀ ଶିକ୍ଷକ ଆପଣ ମାନେ । ଆପଣଙ୍କ ହେ: ପ: ପାଆନ୍ତି ଟ ୩୦, ସେ. ପ. ପାଆନ୍ତି ଟ ୨୦, ଆଉ ବି ଜଣ ପାଆନ୍ତି କେତେ ପନ୍ଦର ଟଙ୍କା ଲେଖାଏ । ଆଉ ମୁ ସରକାରଙ୍କ ଠାରୁ ପାଏଁ କେତେ ଜାଣ- ଟ ୪୦୦ (ଚାରିଶହ ଟଙ୍କା) । ତାପରେ ମୋର ପିଲା ଛୁଆ ଗୋଟିଏ ବି ନାହାନ୍ତି । ମୁ ଯାହା ପାଏଁ ମୋତେ ଯଥେଷ୍ଟ । ତେଣୁ ଏ ସବୁ ମୁ ଆଦୌ ରଖିବି ନାହିଁ । ନେଇ ଯାଆନ୍ତୁ କହି ସମସ୍ତଙ୍କୁ ବିଦାୟ କରି ଦେଇଥିଲେ । କୌତୁହଳ ବଶତଃ ମୁ ଏହି ଘଟଣା ଦେଖିବାକୁ ଯାଇଥିଲି ଏବଂ ମୁ ସେଦିନ ଯାହା ପ୍ରତ୍ୟକ୍ଷ କରିଥିଲି ତାହାହିଁ ଆଜି ଏଠାରେ ଲିପିବଦ୍ଧ କରୁଅଛି ।

ସେହି ହାକିମ ଆଜି ନାହାନ୍ତି କିମ୍ବା ସେହି ମାନଙ୍କ ମଧ୍ୟରୁ ଜଣକ ବ୍ୟତୀତ ଆଉ ମାନେ ସମସ୍ତେ ମରି ଗଲେଣି । ତଥାପି କଥାଟି ବର୍ଣ୍ଣି ରହିଛି । ରାଧାଚରଣ ବାବୁ ଥାନ୍ତି ଭାରି ପରିଷ୍କାର ପରିଚ୍ଛନ୍ନ ବ୍ୟକ୍ତି । ପ୍ରତିଦିନ ସେ ଗାଧୋ-ଇବା ବେଳେ ବାସନା ତେଲ ଲଗାଇ ଗାଧୋଇ ଥାନ୍ତି । ଛାଇରେ ବି ସେ ଛତା ବ୍ୟବହାର କରୁଥାନ୍ତି ।

ତା ପର ଦିନ ସେ ଆମ ସପ୍ତମ ଶ୍ରେଣୀକୁ ଆସି ଆମ୍ଭ ମାନଙ୍କୁ ପରୀକ୍ଷା କରିଥିଲେ । ସେ ମୁହଁରୁ କେତେ ଗୁଡଏ ଶବ୍ଦ ଯଥା ବାଛୁରୀ, ପଇଡ, ବାଇଗଣ, ଅଫିମ ଆଦିର ମୂଳ ଶବ୍ଦ କଣ ହେବ ବୋଲି ପଚାରିଲେ । ବାଛୁରୀକୁ ବତ୍ସତରୀ, ପଇଡକୁ ପୟଃପେଟୀ, ବାଇଗଣକୁ ବାର୍ତ୍ତାକୀ ମୁ କହିଥିଲି । ତାପରେ ଅଫିମର ସାଧୁ ଶବ୍ଦ କହି ପାରି ନ ଥିବାରୁ ସେ ମୋ ନିକଟକୁ ଆସି ଅଫିମ ହେବ ଅହି-ଫେନ କହି ମୋ ଗାଲରେ ମୃଦୁ ସ୍ପର୍ଶ ଦେଇଥିଲେ । ଆମ ଡେକ୍ସ ନିକଟକୁ ସେ ଆସି ଥିବାରୁ ଅତର ସୁଗନ୍ଧରେ ଆମ ଆଖ ପାଖ ମହକୀ ଉଠିଥିଲା । ତେଣୁ ଆମ୍ଭେ ଜାଣିଲୁ ଯେ ଭଦ୍ରଲୋକ ସେଣ୍ଟ ବ୍ୟବହାର କରନ୍ତି ।

ଗୋରା ତକ ହୃଷ୍ଟପୁଷ୍ଟ ଉଚ୍ଚା ମଣିଷ । ଶାନ୍ତ ଶିଷ୍ଟ ଚେହେରା । ହସ ହସ ମୁଖ । କୋମଳ ଭାଷୀ ତଥା ଛାତ୍ରବତ୍ସଳ ବୋଲି ତାଙ୍କୁ ଦେଖି ମନେ ହୋଇଥିଲା ।

ସେହି ବର୍ଷର କେତେକ ମାସ ପରେ ଓଡ଼ିଶା ଡିଭିଜନ ସର୍କଲ ଇନ୍‌ସପେକ୍ଟର ଭବନାଥ ମୁଖର୍ଜୀ ମଧ୍ୟ ଆମ ସ୍କୁଲ ପରିଦର୍ଶନ କରିବାକୁ ଆସି ଥିଲେ । ଓଡ଼ିଶାରେ ସେତେବେଳେ ୫ଟି ଜିଲ୍ଲା ଥାଏ । ପାଞ୍ଚଗୋଟି ଜିଲ୍ଲା ପାଇଁ ଜଣେ ମାତ୍ର ବ୍ୟକ୍ତି ଡିଭିଜନାଲ ଇନ୍‌ସପେକ୍ଟର ରୂପେ ରହିଥାନ୍ତି । ୨ ଜଣ ଲୋକ ବସିବା ଭଳି ଗୋଟିଏ ଛୋଟ ମୋଟର କାରଟାଏ ଆଣିଥାନ୍ତି ଏବଂ ସେ ନିଜେ ତାହା ଚଳାଉ ଥାନ୍ତି । ବିଲାତ ଫେରନ୍ତା । ଅତ୍ୟନ୍ତ ସ୍ଫୁର୍ତ୍ତୀବାଜ । ଯୁବକ । ସଙ୍ଗେ ସଙ୍ଗେ ଭିଜିଟ୍ ବହି ଧରି ଫାଳ ଫାଳ ଲେଖି ଦେଉ ଥାଆନ୍ତି । ଆମ କ୍ଲାସକୁ ଆସି କାନ୍ଥରେ ଟଙ୍ଗା ଯାଇଥିବା ଭୂମଣ୍ଡଳ ମାନଚିତ୍ରକୁ ଦେଖି ସେ ପିଲାଙ୍କୁ ପୁରୀ, ଲଣ୍ଡନ, କଲିକତା ଏହି ତିନୋଟି ସହର କେଉଁଠି ଅଛି ତାହା ଦେଖାଇ ଦେବାକୁ କହିଲେ । ଆମ୍ଭେମାନେ ତାହା ତୁରନ୍ତ ଦେଖାଇ ଦେଇଥିଲୁ । ସେତକ ହିଁ ଥିଲା ତାଙ୍କର ପରୀକ୍ଷା । ତାପରେ ଚାଲି ଯାଇଥିଲେ ।

ପ୍ରଥମ ଶ୍ରେଣୀ ପାଇଁ 'ସହଜ ପାଠ' ନାମରେ ସେ ଗୋଟିଏ ବହି ଲେଖି ସମଗ୍ର ଓଡ଼ିଶାରେ ତାକୁ ପ୍ରଚଳନ କରାଇ ଥିଲେ । ଉକ୍ତ ପୁସ୍ତକଟିର ତୀବ୍ର ସମାଲୋଚନା ହେବାରୁ ବର୍ଷକ ପରେ ତାହା ଉଠି ଯାଇଥିଲା ।

୧୯୨୮ ସାଲରେ ମୁଁ ୭ମ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହୋଇ ସାର୍ଟିଫିକେଟ୍ ପାଇଥିଲି । ଉକ୍ତ ପରୀକ୍ଷା ବରଗଡ ଡର୍ଜ ହାଇସ୍କୁଲରେ ହୋଇଥିଲା । ସେତେବେଳେ ବରଗଡ ସବ୍‌ଡ଼ିଭିଜନ୍‌ରେ ୪ ଗୋଟି ମିଡ଼ଲ ଭର୍ଣ୍ଣାକ୍ୟୁଲର ସ୍କୁଲ ଓ ୩ ଗୋଟି ମିଡଲ ଇଂଲିଶ ସ୍କୁଲ ଥାଏ ।

ପରୀକ୍ଷାର୍ଥୀ ସଂଖ୍ୟା ପ୍ରାୟ ଶହେ ଜଣ ସରିକି ହେବେ । ଆମ ସ୍କୁଲରୁ ୨୮ ଜଣ ପରୀକ୍ଷା ଦେବାକୁ ଆସିଥିଲେ । ତନ୍ମଧ୍ୟରୁ ୭ ଜଣ ମାତ୍ର ପାସ କରି ଥିଲେ ମଧ୍ୟ ତନ୍ମଧ୍ୟରୁ ୬ ଜଣ ଥିଲେ ଦୁଇ ବର୍ଷିଆ ଓ ମୁଁ ଜଣେ ମାତ୍ର ଛାତ୍ର ବର୍ଷକିଆ ଥିଲି । ଆଶ୍ଚର୍ଯ୍ୟର କଥା ସେହି ୭ ଜଣଙ୍କ ମଧ୍ୟରୁ ମୋର ମାର୍କ ଥିଲା ସମସ୍ତଙ୍କ ଠାରୁ ଅଧିକ । ସେତେବେଳେ ମି. ଭ. ଓ ମି. ଇ. ପାସ ଫଳ ଖବର କାଗଜରେ ପ୍ରତ୍ୟେକଙ୍କର ନାମ ସହ ପ୍ରକାଶିତ ହେଉଥିଲା । ଯେଉଁ ପ୍ରମାଣ ପତ୍ର ମିଳୁଥିଲା ତହିରେ ଲେଖାଥାଏ ଡ଼ିପାର୍ଟମେଣ୍ଟ ଅଫ୍ ପବ୍ଲିକ୍ ଇନଷ୍ଟ୍ରକସନ, ବିହାର ଏଣ୍ଡ ଓଡ଼ିଶା, ମିଡଲ ସ୍କୁଲ ସାର୍ଟିଫିକେଟ୍ । ଉକ୍ତ ପ୍ରମାଣ ପତ୍ରରେ ସ୍ୱାକ୍ଷର କରୁଥାନ୍ତି ଇନ୍‌ସପେକ୍ଟର ଅଫ୍ ସ୍କୁଲସ୍, ଓଡ଼ିଶା ଡ଼ିଭିଜନ, କଟକ ।

ସପ୍ତମ ଶ୍ରେଣୀ ପାସ ପରେ ମୋର ସାଙ୍ଗ ପିଲା କେତେଜଣ ଉଚ୍ଚଶିକ୍ଷା କରିବା ପାଇଁ ବରଗଡ ଡର୍ଜ ହାଇସ୍କୁଲରେ ଆସି ନାମ ଲେଖାଇଲେ । ଉଚ୍ଚଶିକ୍ଷା କରିବା ପାଇଁ ସେତେବେଳେ ମୋ ମନରେ ପ୍ରବଳ ବାସନା ଜାତ ହୋଇ ଥିଲା ସତ କିନ୍ତୁ

ମୋତେ ପଢାଇ ପଠାଇବ କିଏ ? ଯିଏ ବା ମୋତେ ପଢାଇ ପଠାଇ ଥାନ୍ତେ ସେହି ମୋର ବଡବାପା ନରହରି ଦାଶ ତ ତା ପୂର୍ବ ବର୍ଷ ଇହଲୀଳା ସାଙ୍ଗ କରି ସାରିଥାନ୍ତି ।

ତେଣୁ ମୁ ଗାଁରେ ରହି ଇଂରାଜୀ ପାଠ ପଢବାକୁ ମନସ୍ଥ କଲି । (First-Book) ଫାଷ୍ଟବୁକ୍ ବହିଟାଏ ଯୋଗାଡ କଲି । ସେତେବେଳେ ଆମ ଗାଁରେ କିଶୋର ଚନ୍ଦ୍ର ମେହେର ନାମରେ ଜଣେ ଯୁବକ ବରଗଡ ହାଇସ୍କୁଲରେ ୧୦ମ ଶ୍ରେଣୀ ଯାଏ ପଢ଼ି ପାଠ ପଢା ଛାଡ଼ ଦେଇ ଘରେ କୌଳିକ ଜୀବିକା (ଲୁଗାବୁଣା) କରୁଥାନ୍ତି । ତାଙ୍କ ନିକଟକୁ ଯାଇ ଇଂରାଜୀ ପଢ଼ବା ସକାଶେ କୁହା ବୋଲ କରି ରାଜି କରାଇବାକୁ ମୋର ପିତାମହଙ୍କୁ କହିଲି । ଉକ୍ତ ପରିବାର ସହ ମୋର ପିତାମହଙ୍କର ମଧୁର ସମ୍ପର୍କ ଥାଏ । ସେ ଯାଇ କିଶୋର ବାବୁଙ୍କୁ କହି ମୋର ଇଂରାଜୀ ପଢବା କଥା ସ୍ଥିର କରି ଦେଇ ଆସିଲେ । ତା ଆର ଦିନ ମୁ ଯାଇ ତାଙ୍କ ନିକଟରେ ଇଂରାଜୀ ପଢବା ଆରମ୍ଭ କରି ଦେଲି ।

ଅଳ୍ପ ଦିନ ମଧ୍ୟରେ ସେ ମୋତେ ଫାଷ୍ଟ ବୁକ୍, ସେକେଣ୍ଡ ବୁକ୍, ନେଲସନ ଇଂଲିଶ ରିଡର, ଥାର୍ଡ ରିଡର, ଇଂରାଜୀ ଗ୍ରାମାର ଆଦି ପଢାଇ ଦେଲେ । ତାଙ୍କର ପ୍ରଯତ୍ନ; ଦୟା ଓ ଆଶୀର୍ବାଦରୁ ଇଂରାଜୀ ଭାଷାରେ ମୁ ସମ୍ୟକ୍ ଜ୍ଞାନ ଅର୍ଜନ କରି ପକାଇଥିଲି । ତାଙ୍କରି ପ୍ରଦତ୍ତ ଶିକ୍ଷାରୁ ମୁ ବହୁ ଅର୍ଥ ଉପାର୍ଜନ କ୍ଷମ ହୋଇଥିଲେ ମଧ୍ୟ ପ୍ରତିଦାନ ସ୍ୱରୂପ ତାଙ୍କୁ କିଛି ଦେଇ ପାରି ନ ଥିବାରୁ ଆଜି ମୁ ଗଭୀର ଭବେ ଅନୁତପ୍ତ । ତାଙ୍କର ବୟନ ଶାଳ ଥିଲ ମୋର ଇଂରାଜୀ ପାଠ ପଢା ବିଦ୍ୟାଳୟ । ସେ ଲୁଗା ବୁଣୁଥାନ୍ତି ଆଉ ମୁ ତାଙ୍କ ନିକଟରେ ବସି ରହି ପାଠ ପଢୁଥାଏଁ । ସେ ଯେପରି ଉନ୍ନତ ଶିକ୍ଷାଦାତା ଥିଲେ ମୁ ମଧ୍ୟ ତାଙ୍କର ଶିକ୍ଷାଦାନ ବିଷୟକୁ ଅତି ଦ୍ରୁତତର ଭବେ ଗ୍ରହଣ କରି ନେଉଥାଏ । ତେଣୁ ସେ ମୋ ଉପରେ ଖୁସି ଥାଆନ୍ତି ।

ତାଙ୍କର ବସ୍ତ୍ର ବୟନ ଶାଳରେ ଥାଇ ମୁ ତାଙ୍କର ବୟନ କୌଶଳ ଲକ୍ଷ୍ୟ କରୁଥିଲି ଏବଂ ବେଳେ ବେଳେ ତାଙ୍କର ଅନୁପସ୍ଥିତିର ସୁଯୋଗ ନେଇ, ହାତେ, ଦୁଇହାତ ବୁଣି ପକାଉ ଥିଲି । କାର୍ଯ୍ୟାନ୍ତରରୁ ଆସି ସେ ତାହା ଦେଖି ମୁ ତାଙ୍କ ବିଦ୍ୟାକୁ ଯେ ଘୃଣା ନ କରି ଏପରି ଅଗ୍ରଗତି କରି ପାରୁଛି ତାହା ଥାଏ ତାଙ୍କର ଆନନ୍ଦର ବିଷୟ । କ୍ରମେ ମୁ ତତ୍କାଳୀନ ପ୍ରଚଳିତ ଦଶ ଫୁଲିଆ, କକନପର ଆଦି ବଡ ବଡ ଶାଢୀ ବୁଣିବାରେ ମଧ୍ୟ ଦକ୍ଷତା ଅର୍ଜନ କରି ପକାଇଲି । ଗାଁ ମାନ୍ୟ ହିସାବରେ ସେ ହେବେ ମୋର ପିତୃବ୍ୟ ସ୍ଥାନୀୟ । ଅନ୍ୟ ଦିଗରେ ଗୁରୁ ।

ଉଭୟ ଦିଗରୁ ମୁ ଥାଏଁ ତାଙ୍କ ପୁତ୍ର ସ୍ଥାନୀୟ । ପ୍ରାୟ ୨ ବର୍ଷ ଯାଏ ମୁ ତାଙ୍କ ନିକ-ଟରେ ଯେତେ ଇଂରାଜୀ ପାଠ ପଢ଼ିଥିଲି ପରବର୍ତ୍ତୀ ଜୀବନରେ ମୁ ଯେତେବେଳେ ମେଟ୍ରିକୁ୍ୟଲେସନ ପରୀକ୍ଷା ଦେଇଥିଲି ସେତେବେଳେ ମୋତେ ତାଙ୍କରି ପ୍ରଦତ୍ତ ଜ୍ଞାନ ବିଶେଷ ସହାୟକ ହୋଇଥିଲା ।

ତାଙ୍କ ପରିବାର ଗ୍ରାମରେ ଥିଲା ଅନ୍ୟ ଧନୀ ପରିବାର ମଧ୍ୟରୁ ଅନ୍ୟ-ତମ । ସର୍ବୋପରି ଉକ୍ତ ପରିବାରର ଶାଳୀନତା ଥିଲା ଗ୍ରାମର ସମସ୍ତ ପରିବାର ଠାରୁ ଗରିଷ୍ଠ ସ୍ଥାନୀୟ । କିଶୋର ବାବୁଙ୍କ ପିତାମହ ଥିଲେ କବି । କବି ଭବରେ ସେ ସମାଜ କର୍ତ୍ତୃକ ସମର୍ଥନ ଲାଭ କରି ନ ଥିଲେ ସତ୍ୟ ହେଲେ ତାଙ୍କର ରଚିତ କେତେ ଲୀଳା ଓ ସୁଆଙ୍ଗ ଗ୍ରାମ୍ୟ ନାଟ୍ୟଦଳ ଦ୍ୱାରା ଅଭିନୀତ ହେଉଥିଲା । ସର୍ବୋ-ପରି ତାଙ୍କ ରଚିତ 'ଘାଟଲୀଳା' ଜନ ସାଧାରଣରେ ବିଶେଷ ଆଦୃତ ହୋଇ ପାରିଥିଲା ଏବଂ ତାହା ପ୍ରାୟ ୭୦ ବର୍ଷ ଧରି ଆମ ଗାଁରେ ଅଭିନୀତ ହୋଇ ଆସି ଥିବାର ମୁ ଲକ୍ଷ୍ୟ କରି ଆସିଥିଲି । ତାଙ୍କ ନାମ ଥିଲା ନିରକାର ମେହେର ।

# ଅସହଯୋଗ ଆନ୍ଦୋଳନରେ ଯୋଗଦାନ, ଲବଣ ସତ୍ୟାଗ୍ରହୀ ରୂପେ ଇଞ୍ଚୁଡ଼ି ଯାତ୍ରା

୧୯୨୧ ସାଲ ଠାରୁ ଆମ ଗ୍ରାମରେ ଅସହଯୋଗ ଆନ୍ଦୋଳନର ସୂତ୍ର-ପାତ ହୋଇଥିଲା । ସ୍ଥାନୀୟ ମାଧବ ଚନ୍ଦ୍ର ସାହୁଆ ଏହି ଦୀକ୍ଷାରେ ଦୀକ୍ଷିତ ହୋଇ ଏକ ଚରଖା କେନ୍ଦ୍ର ସ୍ଥାପନ କରି ସୂତାକଟା ଆଦି କାମ କେତେ ଜଣ ସ୍ତ୍ରୀ ଲୋକଙ୍କୁ ନେଇ କରଉ ଥାନ୍ତି । ମଧ୍ୟେ ମଧ୍ୟେ ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ର, ଭଗୀରଥି ପଟ୍ଟନାୟକ ଆଦି କଂଗ୍ରେସ କର୍ମୀ ମାନେ ଗାଁକୁ ଆସି ସଭ ସମିତି ମାନ କରି ଯାଉଥାନ୍ତି । ଗ୍ରାମରେ ସେତେବେଳେ ଏକମାତ୍ର କଂଗ୍ରେସ କର୍ମୀ ମାଧବ ସାହୁଆ ଥାଆନ୍ତି । ସେ ହିଁ କେବଳ ଅସହଯୋଗ ଆନ୍ଦୋଳନର ବହ୍ନି ପ୍ରଜ୍ୱଳିତ କରି ରଖି ଥାଆନ୍ତି କହିଲେ ଚଳେ ! ଜନ ସାଧାରଣ ଇଂରାଜ ସରକାର ବିରୁଦ୍ଧରେ ଯିବାକୁ ସାହସ କରୁ ନ ଥାନ୍ତି । ତଥାପି କର୍ମୀ ଗଣ ନିଜ ଚେଷ୍ଟାରେ ବରାବର ଲାଗିଥାନ୍ତି । ସେଥିପାଇଁ ବାହାରୁ ନେତା ମାନେ ଆସିଲେ ଗାଁରେ କଂଗ୍ରେସ ସଭ ବେଳେ ବେଳେ କରା ଯାଉଥାଏ ।

ଏହି ପରିପ୍ରେକ୍ଷୀରେ ଆମ ଗାଁକୁ ଦିନେ ପ୍ରଚାରକ ଅନନ୍ତ ମିଶ୍ରେ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଏବଂ ଭଗୀରଥି ପଟ୍ଟନାୟକ ଆସିଥିଲେ । ସେମାନେ ସେଦିନ ସକାଳ ଓଳି ଆସି ଗାଁରେ ପହଞ୍ଚିଲେ ।

ତାଙ୍କୁ ଦେଖି ମାଧବ ସାହୁଆ ପାଛୋଟି ନେଲେ ଏବଂ ସ୍ଥାନୀୟ ସୋମନାଥ ମନ୍ଦିରରେ ତାଂକର ରହିବାର ବ୍ୟବସ୍ଥା କରିଦେଲେ । ସେଷେଇ କରିବା ନିମିତ୍ତ ସେମାନଙ୍କୁ ଆବଶ୍ୟକୀୟ ଜିନିଷମାନ ଆଣି ପହଞ୍ଚାଇ ଦେଲେ । ମନ୍ଦିରର ଦକ୍ଷିଣପଟେ ଥିବା ପ୍ରଶସ୍ତ ବାରଣ୍ଡାର ଗୋଟିଏ ଅଂଶରେ ପଣ୍ଡିତ ଲକ୍ଷ୍ମୀନାରାୟଣ ସେଷେଇ କାମରେ ଲାଗିଗଲେ ।

ମାଧବ ସାହୁଆଙ୍କ ମୁଁ ଜଣେ ବିଶ୍ୱସ୍ତ ଭାବେ ୨/୩ ବର୍ଷ ଧରି ରହିଥାଏ । କାରଣ ମାଧବ ବାବୁ ଲେଖାପଢା ଦିଗରେ ସେତେ ପ୍ରବୀଣ ନ ଥାନ୍ତି । ଖବରକାଗଜ ପଢ଼ିବାରେ ମଧ୍ୟ ତାଂକର ଅସମର୍ଥତା ଥାଏ । ସାପ୍ତାହିକ ସମାଜ ତାଂକ ନିକଟକୁ ଡାକରେ ଆସୁଥାଏ । ସମାଜ ଖଣ୍ଡିକ ପାଇବାକ୍ଷଣି ସେ ବରବର ମୋ ନିକଟକୁ ଚାଲି ଆସନ୍ତି ଏବଂ ଖବରକାଗଜ ଆମୂଳଚୂଳ ମୁଁ ପଢ଼ି ତାଙ୍କୁ ଶୁଣାଏଁ । ଏପରିଭାବେ କ୍ରମେ ତାଂକର ଦଳରେ ମୁଁ ଯୁକ୍ତ ହୋଇ ପଡ଼ିଲି । ପଣ୍ଡିତ ମିଶ୍ରେ ସେଦିନ କେବଳ ଭାତ ଏବଂ ଶାଗ ରାନ୍ଧି ଥିଲେ । ଡାଲି ତରକାରୀ ରାନ୍ଧିବାକୁ ତାଂକର ଧୈର୍ଯ୍ୟ ନ ଥିଲା । ସେଥିପାଇଁ ସେହିଦିନ ସେହି ତିନିଜଣ କେବଳ ଭାତ ଆଉ ଶାଗ ଖାଇଥିଲେ । ଉପର ଓଳି ସଭା ହେବାର ଥାଏ । ପଣ୍ଡିତ ମିଶ୍ରଙ୍କ ଆଗମନ ବାର୍ତ୍ତା ଭେଡେନ ପୋଲିସ ସ. ଇ. ଜାଣି ସାରିଥିଲେ । ସେଥିସକାଶେ ସେ ଏବଂ ହାବିଲଦାର ସେଦିନର ଦ୍ୱିପ୍ରହରରୁ ଆସି ସ୍ଥାନୀୟ ଡେରାଘରେ ରହିଥାନ୍ତି ।

ଯଥା ସମୟରେ ସଭା ରେମଣ୍ଡା ଗୁଡତଳେ ଅର୍ଥାତ୍ ସୋମନାଥ ମନ୍ଦିର ନିକଟ ପ୍ରଶସ୍ତ ସ୍ଥାନରେ ହୋଇଥିଲା । ସଭା ଆରମ୍ଭ ହେବାବେଳେ ଅନେକ ଲୋକ ଜମା ହୋଇଥିଲେ । ପଣ୍ଡିତ ଲକ୍ଷ୍ମୀନାରାୟଣ ତାଂକର ଓଜସ୍ୱିନୀ ଭାଷଣ ଦେବାରେ ଲାଗି ପଡ଼ିଥାନ୍ତି । ଲୋକେ ମଧ୍ୟ ବଡ ଆଗ୍ରହର ସହିତ ଶୁଣୁଥାନ୍ତି । ଏପରି ସମୟରେ ଭେଡେନ ପୋଲିସ ତାଂକ ଦଳବଳ ସହ ସେଠାରେ ପହଞ୍ଚିଗଲେ । ପୋଲିସ ଆସିବା ଦେଖି ଲୋକେ ତାପରେ ଜଣ ଜଣ କରି ଖସି ଯାଇଥିଲେ । ଶେଷରେ କେବଳ ୭/୮ ଜଣ ମାତ୍ର ସଭା ଶେଷ ହେବାଯାଏ ରହିଥିଲେ । ସଭା ଭାଙ୍ଗିଗଲା । ପୋଲିସ ମଧ୍ୟ ସେଦିନ କାହାକୁ ଗିରଫ ଆଦି ନ କରି ଚାଲିଯାଇ ଥିଲେ । ତା ଆରଦିନଠୁ ମୁଁ କଂଗ୍ରେସ ଦଳରେ ଯୋଗଦାନ କରିଥିଲି । ସୂତାକଟା, କପାଚାଷ, ଅସ୍ପୃଶ୍ୟତା ନିବାରଣ ଆଦି ସମସ୍ତ କାମରେ ମାଧବ ବାବୁଙ୍କୁ ସହଯୋଗ କରିବାକୁ ଲାଗିଲି ।

ସାଥୁଆ ବାବୁଙ୍କ ସୂତା କେନ୍ଦ୍ରର ସୂତାରୁ କ୍ରମେ ଖଦଡ ଲୁଗା ତିଆରି ହେଲା । ସେହି ଲୁଗା ବରଗଡରେ ବିକ୍ରୀ ହେଉଥିଲା । ବରଗଡରେ ସେତେବେଳେ ସହର ପଡାରେ କୃତାର୍ଥ ଆଚାର୍ଯ୍ୟ ନାମରେ ଜଣେ ଯୁବକ ଖଦୀ ବିକ୍ରୀକେନ୍ଦ୍ର ସ୍ଥାପନ କରିଥାନ୍ତି । ସେ ମଧ୍ୟ ଆମ ସୂତାକେନ୍ଦ୍ରକୁ ଯିବା ଆସିବା କରୁଥାନ୍ତି । ପରେ ଏହି ଆନ୍ଦୋଳନରେ ଅର୍ଥାତ୍ ଦଳରେ ଲକ୍ଷ୍ମଣ ଯେଶୋଓ୍ୱାର, ସୀତାରମ ଯେଶୋଓ୍ୱାର ଯୋଗଦାନ କରିଥିଲେ । ମାଧବ ସାଥୁଆଙ୍କର ଏହି କେନ୍ଦ୍ର ପରିଚ୍ଛଳନା ପାଇଁ ନୀଳକଣ୍ଠ ଶତପଥି ନାମକ ସ୍ଥାନୀୟ ଜନୈକ ଧନୀବ୍ୟକ୍ତିଙ୍କ ଆର୍ଥିକ ସହାୟତାରେ କେନ୍ଦ୍ରଟି ପରିଚ୍ଛଳିତ ହେଉଥାଏ ।

ସେତେବେଳେ ସମଗ୍ର ସମ୍ବଲପୁର ଜିଲ୍ଲାରେ କଂଗ୍ରେସ କର୍ମୀ ହିସାବରେ ପଣ୍ଡିତ ଲକ୍ଷ୍ମୀନାରାୟଣ, ଭଗୀରଥି ପଟ୍ଟନାୟକ, ବରପାଲିର ଜଙ୍ଗଲି ମାହାଣା; ନରସିଂହ ଗୁରୁ, ପଞ୍ଚପଡାର ଚିନ୍ତାମଣି ପୂଜାରୀ, ଝାରସୁଗୁଡାର ଦମରକ୍ଷା ଶୁକ୍ଲ ଏହି କେତେଜଣ ମୁଖ୍ୟତଃ ରହିଥାନ୍ତି । ଜିଲ୍ଲାର ବିଭିନ୍ନ ଗ୍ରାମମାନଙ୍କୁ ଯାଇ ଏହି ମାନେହିଁ କଂଗ୍ରେସ ବାର୍ତ୍ତା ପ୍ରଚ୍ଛର କରୁଥାନ୍ତି ।

ଜମିଦାର, ଗୌନ୍ତିଆ ଶ୍ରେଣୀର ଲୋକେ ତଥା ଧନୀ ବ୍ୟକ୍ତିବୃନ୍ଦ ଏହି ଆନ୍ଦୋଳନ ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରି ଆନ୍ଦୋଳନର ବିରୋଧ କରିବା ସଙ୍ଗେ ସଙ୍ଗେ କଂଗ୍ରେସ କର୍ମୀ ମାନଂକ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରୁ ନ ଥାନ୍ତି । ଯଦି କରିବେ ପୋଲିସ ସେମାନଙ୍କୁ ହୁଏତ ହଇରଣ କରିବ କିମ୍ବା ତାଂକ ଧନ ଜୀବନ ବିପନ୍ନ ହୋଇ ପଡ଼ିବ ଏହି ଆଶଂକା ସେମାନଂକ ମନକୁ ଦୃଢୀଭୂତ ଭବେ ଆଚ୍ଛନ୍ନ କରି ରଖିଥାଏ ।

ଦିନକର କଥା । ସେଥର ରେମଣ୍ଡାରେ ଲବଣ ସତ୍ୟାଗ୍ରହ ପାଇଁ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶରେ ସତ୍ୟାଗ୍ରହୀ ସଂଗ୍ରହ କରିବା ପାଇଁ ମାନପୁରର କଂଗ୍ରେସ କର୍ମୀ ଘନଶ୍ୟାମ ପାଣିଗ୍ରାହୀ କେତେ ଖଣ୍ଡ ନୋଟିସ କାଗଜ ଏଥିପାଇଁ ଯାହା ଲେଖା ଥିଲା ତାକୁ ଆଣି ରେମଣ୍ଡା ଗ୍ରାମର ବିଭିନ୍ନ ପଡାରେ କାନ୍ଥ ଦେହରେ ଲଗାଇ ଦେବାକୁ ମୋତେ ଦେଲେ । ଉକ୍ତ ନୋଟିସରେ ଚିନ୍ତାମଣି ପୂଜାରୀ ଦସ୍ତକତ କରି ଥାଆନ୍ତି । ସେହି ନୋଟିସ ଗୁଡ଼ିକ ନେଇ ମୁଁ ବିଶେଷ ଉତ୍ସାହର ସହିତ ଗାଁର ବିଭିନ୍ନ ପଡାର କାନ୍ଥରେ ଲଟକାଇ ଦେଇ ଆସିଲି ।

ନୋଟିସ ପଢ଼ ଗ୍ରାମର ଆମ୍ ମୋକ୍ତାର ବିଜେପୁର ଜମିଦାରଙ୍କ ତରଫରୁ ଗାଁ ଶାସନ ପରିଚ୍ଛଳନା ପାଇଁ ଯିଏ ନିଯୁକ୍ତି ପାଇ ରହିଥାନ୍ତି ସୁଦର୍ଶନ ବହିଦାର, ଗାଁ ଚୌକୀଦାର ଅନନ୍ତ ଗଣ୍ଡାକୁ କହିଲେ ସେ ସବୁ ନୋଟିସ ଉଠାଇ

ଦେବାକୁ ଏବଂ ତାକୁ ନେଇ ଏକ ରିପୋର୍ଟ ସହ ଭେଡେନ ଥାନାରେ ଦେଇ ଆସିବାକୁ । ରିପୋର୍ଟରେ ମୋର ବିରୁଦ୍ଧରେ ମଧ୍ୟ ଲେଖା ଥାଏ । ଚୌକୀଦାର ନୋଟିସ ସବୁ ଉଠାଇ ନେଲା ଏବଂ ସେ ଦିନ ଥାନାରେ ଆମ ବିରୁଦ୍ଧରେ ଅଭି-ଯୋଗ ପତ୍ର ମଧ୍ୟ ଦାଖଲ କରି ଦେଇ ଆସିଲା ।

ସେ ଦିନ ଅପରାହ୍ନ ୪ଟା ବେଳେ ସଭା ହେବାର ଥାଏ । ଫଳରେ ଭେଡେନ Police S. I. ବଂଶୀଧର ମିଶ୍ର, ହାବିଲଦାର ବିଶ୍ୱନାଥ ପଟ୍ଟନାୟକ, କେତେଜଣ କନଷ୍ଟବଲଙ୍କୁ ସଙ୍ଗରେ ଧରି ଆସି ରେମଣ୍ଡା ଗ୍ରାମର ପୁରୁଣା ଥାନା ଘରେ (ଡେରାଘରେ) ଜଗି ରହିଲେ । ଘନଶ୍ୟାମ ପାଣିଗ୍ରାହୀ ତ ଆଗରୁ ଆସି ରହିଥାନ୍ତି । ପରେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଏବଂ ଭଗୀରଥି ପଟ୍ଟନାୟକ ଆସିଲେ । ସେ ଦିନ ଥାଏ ରବିବାର । ଗାଁର ହାଟପାଳି ଦିବସ । ରେମଣ୍ଡା ଗାଁର ହାଟଟି ଗାଁର ସୋମଲାଇ ମନ୍ଦିର ସାମନା (ପ୍ରଶସ୍ତ ସ୍ଥାନ)ରେ ବସୁଥିଲା । ସେହି ସ୍ଥାନରେ ଅର୍ଥାତ୍ ସୋମଲାଇ ମନ୍ଦିର ଦକ୍ଷିଣ ପଟେ ସଂଲଗ୍ନ ବାରଣ୍ଡାରେ ଥିବା ବଉଳ ଗଛରେ ଗୋଟିଏ ବାଉଁଶ ଦେହରେ ଜାତୀୟ ପତାକା ଲଗା ଯାଇ ବାନ୍ଧି ଦିଆଗଲା ଏବଂ ଏକାମ ଭଗୀରଥି ପଟ୍ଟନାୟକ କରିଥିଲେ । ସଭାପତି ହେଲେ ପଣ୍ଡିତ ଘନଶ୍ୟାମ ପାଣିଗ୍ରାହୀ । ବକ୍ତା ତ ଥାନ୍ତି ପଣ୍ଡିତ ଲକ୍ଷ୍ମୀନାରାୟଣ । ସଭାର ଆରମ୍ଭ ପୂର୍ବରୁ ଭଗୀରଥି ବାବୁ ଏକ ଗୀତ ବୋଲିଲେ—

ମଦ ବଡ଼ ଖରାପ ନିଶା
ମଦରେ ମାତିଲେ ସରେ ପଇସା···· ମଦ ବଡ଼········ (ଘୋଷା)
ମଦ ପିଏ ଯେହୁ ଜ୍ଞାନ ହାରେ ସେହୁ
ମଦ ପାଇଁ ବୁଡେ କୁଳ ବେଭରସା···· ମଦ ବଡ଼········

ଏପରି ଆଉ ୨।୩ ପଦ ଗୀତ । ଏବେ ଆଉ ମୋର ମନେ ନାହିଁ । ଗୀତ ବୋଲା ସରିଗଲା । ଘନଶ୍ୟାମ ବାବୁ ତାପରେ ସଭାର ଉଦ୍ଦେଶ୍ୟ କହିବାକୁ ଯାଇ ଇଂରେଜ ଶାସନର ନିନ୍ଦା ଗାନ କରୁଛନ୍ତି ଏପରି ବେଳେ ପୋଲିସ ସ. ଇ. ବଂଶୀ-ଧର ମିଶ୍ର, ହାବିଲଦାର ବିଶ୍ୱନାଥ ପଟ୍ଟନାୟକ ଓ ୨ ଜଣ କନଷ୍ଟବଲ ଆସି ସେଠାରେ ଉପସ୍ଥିତ ହୋଇଗଲେ । ସେମାନଙ୍କୁ ଦେଖି ପଣ୍ଡିତ ଲକ୍ଷ୍ମୀନାରାୟଣ ତାଙ୍କ ଭାଷଣ ଆରମ୍ଭ କରିବାକୁ ଯାଇ ଉପସ୍ଥିତ ପୋଲିସ ଅଫିସରଂକ ବିରୁଦ୍ଧରେ ଅନର୍ଗଳ ବକି ଗଲେ । ବଂଶୀଧର ବାବୁ ତାହା ଶୁଣି ସଙ୍ଗେ ସଙ୍ଗେ ସଭାକୁ ବେଆଇନ ଘୋଷଣା କରିଦେଲେ ଏବଂ ଜାତୀୟ ପତାକା ଗୋଟିକୁ ବଉଳ ଗଛରେ ଯେଉଁଟା ବନ୍ଧା ହୋଇଥିଲା ତାକୁ ଟାଣି ଆଣିବାକୁ କନଷ୍ଟବଲ ୨ ଜଣଙ୍କୁ ନିର୍ଦ୍ଦେଶ ଦେଲେ । ଆଦେଶ ପାଇବା ମାତ୍ରେ ସିପାହୀ ଦି ଜଣ ଧାଇଁ ଆସି

ପତାକା କାଢ଼ିବାକୁ ବସିଛନ୍ତି ଏପରି ସମୟରେ ମୁଁ ପତାକା ଲାଗିଥିବା ବାଉଁଶକୁ ଧରି ପକାଇ ଛାଡ଼ିବି ନାହିଁ କହିଲି । ସେମାନେ ବଳ ପ୍ରୟୋଗ କରି ବନ୍ଧା ଯାଇଥିବା ରଶି ଫିଟାଇ ଦେଇ ବାଉଁଶଟିକୁ ତଳ ପଟୁ ଝିଂକି ନେଲେ ଏବଂ ବାରଣ୍ଡା ତଳକୁ ଡେଇଁ ପଡ଼ିଲେ । ହେଲେ ପତାକାଟି ଶେଷରେ ମୋ ହାତ ମୁଠାରେ ରହିଗଲା । ମୁଁ ଛାଡ଼ୁ ନ ଥାଏଁ । ସେମାନେ ଝିଙ୍କୁ ଥାନ୍ତି । ଏପରି ଭବେ ୨ ମିନିଟ ଗଡ଼ିଗଲା । ଏହା ଦେଖି ବଂଶୀଧର ମିଶ୍ର, ସବ୍ ଇନ୍‌ସପେକ୍ଟର ନିଜେ ବାରଣ୍ଡା ଉପରକୁ କୁଦି ପଡ଼ି ମୋ ଗାଲରେ ଚଟକଣାଟାଏ ବସାଇ ଦେଇ ପତାକାଟି ନେଇଗଲେ । ଲକ୍ଷ୍ମୀନାରାୟଣ ମିଶ୍ର ତାହା ଦେଖି କହିଲେ ଯେ 'ଛୋଡ଼ ଦେଓ ଶାଲେ କୁତ୍ତାକୋ' । 'ଚଲା ଲେରୋକୋ ହାତ୍ ଚଲତା ହେ ହାରମଜାଦା' । ତାପରେ ଆମ୍ଭେମାନେ ୪ ଜଣ ଏରେଷ୍ଟ ହୋଇ ଗାଁରେ ଥିବା ଡେରାଘରକୁ ଅଣା ହେଲୁ । ଭଗୀରଥି ପଟ୍ଟନାୟକ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଘନଶ୍ୟାମ ପାଣିଗ୍ରାହୀ, ମାଧବ ସାହୁଆ ଏବଂ ମୁଁ ଏପରି ୪ ଜଣଙ୍କୁ ସେଦିନ ରାତିରେ ଥାନା ଘରେ ଅବଦ୍ଧ କରି ରଖି ଦେଇ ବଂଶୀଧର ବାବୁ ଓ ହାବିଲଦାର ଦି ଜଣ ଯାକ ସାଇକେଲରେ ଢେଙ୍କାନାଳ ଚାଲିଗଲେ । ସିପାହୀ ଦି ଜଣ ରାତି ଯାକ ଆମକୁ ଜଗି ରହିଲେ । ରାତିରେ ଆମକୁ ଖାଇବାକୁ କିଛି ମୁଢ଼ି ଓ ପିଆଜ ଦେଇଥିଲେ । କିନ୍ତୁ ସିପାହୀ ଦୁଇ ଜଣ କୁକୁଡ଼ା ହାଣି ଭାତ, ଡାଲି ଓ ମାଉଁସ ତରକାରୀ ଗନ୍ଧ ଆମ ସାମନାରେ ଖାଇଥିଲେ ।

ରାତିଟା କୌଣସି ମତେ ପାହିଲା । ସକାଳୁ ବାବୁ ଦି ଜଣ ପୁଣି ଢେଙ୍କାନାଳରୁ ଆସିଗଲେ । ମୋର ବୟସ ସେତେବେଳେ ୧୫ ବର୍ଷ । ମୋତେ ପିଲା ଦେଖି ବଂଶୀଧର ବାବୁ ତାପରେ ଗାଁ ଚୌକିଦାର ଅନ୍ତ ଗଣ୍ଡାକୁ କହିଲେ ଯେ ଝାଣ୍ଟ ଗୋଟିଏ ଆଣ୍ । ଅନ୍ତ ଗଣ୍ଡା ସଙ୍ଗେ ସଙ୍ଗେ ଧାଇ ଯାଇ ଗୋଟିଏ ବହୁଳ ଡାଳ ଭାଙ୍ଗି ଆଣି ବଂଶୀଧର ମିଶ୍ରଙ୍କୁ ଧରାଇ ଦେଲା ।

ଛାଟଟାକୁ ଧରି ଥାନାବାବୁ ଡାହାଣ ହାତରେ ହଲାଇ ହଲାଇ ତାପରେ ମୋ ଆଡକୁ ଆସି ମୋତେ ପ୍ରଥମେ ବୁଝାଇ ବସିଲେ । କହିଲେ ତୁମେ ପିଲା ଲୋକ, ତୁମର ଭବିଷ୍ୟତ୍ ଅଛି । ଏହି ବଦମାସ ମାନଙ୍କ ସଙ୍ଗରେ କାହିଁକି ମିଶିଛ ?

ମୋର ଦୋଷ ହେଲା ମୋତେ ଛାଡ଼ ଦିଅ କହିଲେ ମୁଁ ତୁମ୍ଭଙ୍କୁ ଛାଡ଼ ଦେବି । ମୁଁ ତାହା ଶୁଣି ବିରକ୍ତ ହୋଇ କହିଲି ଯେ ମୁଁ କ୍ଷମା ମାଗିବି କାହିଁକି ? ମୁଁ କିଛି ଦୋଷ କରି ନାହିଁ ।

ତାହା ଶୁଣି ସେ ମୋତେ ଛାଟରେ ପିଟିବାକୁ ଉଦ୍ୟତ ହେଲେ ।

ଲକ୍ଷ୍ମୀନାରାୟଣ ବାବୁ ଏତିକିବେଳେ ଥାନା ବାବୁ ଏବଂ ମୋର ମଧ୍ୟରେ ରହିଥିବା ବ୍ୟବଧାନ ମଧ୍ୟରେ ଠିଆ ହୋଇ ଗଲେ । କହିଲେ ପିଟିବାର ଅଛି ତ ଆମକୁ ପିଟ । ମନେରଖ ତୁମ୍ଭେ ପିଟି ପିଟି ମୋତେ ଶେଷ ନ କରିଦେବା ପର୍ଯ୍ୟନ୍ତ ଏମିତି ତୁମ୍ଭ ପାଖରେ ଛିଡା ହୋଇଥିବି । ………… ।

ଥାନା ବାବୁ ତାପରେ କଣ ବିଚାରିଲେ କେଜାଣି ଟିକିଏ ଘୁମ୍ ମାରି ପାଖରେ ଥିବା ଖଟକୁ ଯାଇ ତା ଉପରେ ବସି ପଡ଼ିଲେ । ଅଳ୍ପ ସମୟ ପରେ ତୁମ୍ଭ ମାନଙ୍କୁ ଖଲାସ କରି ଦିଆଗଲା ବୋଲି କହି ସେ ଦିନ ଭେଡେନ ଚାଲି ଯାଇ ଥିଲେ ।

ଆଉ ଦିନେ ସେ ଆମ ଗାଁକୁ ଆସିଲେ । ସେତେବେଳେ ମୁ ଆମ ଘର ବାଟ ଘରେ ରହି ଅରଟରେ ସୂତା କାଟୁ ଥାଏ । ସେ ତାହା ଦେଖିଲେ ଏବଂ ଅରଟ ଗୋଟିକ ଜପ୍ତ କରି ନେଇଗଲେ ।

ପ୍ରତିଦିନ କିଛି ସୂତା କାଟିବା ମୋର ପ୍ରତିଦିନର କାର୍ଯ୍ୟ ଥାଏ । ଅରଟ ଗୋଟିକ ନେଇ ଯିବାରୁ ତାହା ଆଉ ହୋଇ ପାରି ନ ଥିଲା । ଦୁଇ ଦିନ ବିତି ଯିବା ପରେ ମାଧବ ସାଥୁଆ ମୋତେ ତାଙ୍କର ଥିବା ଅନେକ ଗୁଡ଼ଏ ଅରଟ ମଧ୍ୟରୁ ଗୋଟିଏ ଦେଇଥିଲେ । ତେଣିକି ସେହି ଅରଟରେ ମୁ ସୂତା କାଟିବାରେ ଲାଗି ପଡଥିଲି । ହେଲେ ମୋର ପୁରୁଣା ଅରଟଟି ଚାଲି ଯିବାରୁ ମୋତେ ବହୁତ ବାଧିଥିଲା ।

ଏହି ଘଟଣାର କେତେ ଦିନ ପରେ ଘନଶ୍ୟାମ ବାବୁ ପୁଣି ଆମ ଗାଁକୁ ଆସିଲେ । ଏଥର ସେ ଆସିଥିଲେ ଲବଣ ସତ୍ୟାଗ୍ରହ ପାଇଁ ସତ୍ୟାଗ୍ରହୀ ସଂଗ୍ରହ କରିବାକୁ ।

ସମ୍ବଲପୁର ଜିଲା କଂଗ୍ରେସ ଅଫିସରୁ ସେ କେତେଗୋଟି ଛପା ପ୍ରତିଜ୍ଞା ପତ୍ର ସଙ୍ଗରେ ନେଇ ଆସିଥାନ୍ତି । ବାଲେଶ୍ୱର ଜିଲ୍ଲା ଇଞ୍ଚୁଡ଼ି ନାମକ ସମୁଦ୍ର କୂଳିଆ ଏକ ଗ୍ରାମକୁ ଲୁଣ ମାରିବାକୁ ଯିବାକୁ କଥା ଥାଏ । ଯେଉଁମାନେ ଲବଣ ମାରି ଯିବେ ସେମାନଙ୍କୁ ଲବଣ ସତ୍ୟାଗ୍ରହୀ ରୂପେ ଉକ୍ତ ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କରିବାକୁ ପଡୁଥାଏ । ପାଣିଗ୍ରାହୀ ବାବୁଙ୍କ ଉତ୍ସାହରେ ମୁ ଉତ୍ସାହିତ ହୋଇ ସେ ଦିନ ଉକ୍ତ ପ୍ରତିଜ୍ଞା ପତ୍ରରେ ସ୍ୱାକ୍ଷର କରିଥିଲି । ମୋର ମାନସିକ ଅବସ୍ଥା କେତେ ଦୂର ଉତ୍ତେଜିତ ଥାଏ ଯେ କାଳିରେ ସ୍ୱାକ୍ଷର କରିବା ସ୍ଥଳେ ମୁ ମୋ ଜଙ୍ଘରୁ ରକ୍ତ ବାହାର କରି ଉକ୍ତ ରକ୍ତରେ ସ୍ୱାକ୍ଷର କରିଥିଲି । ମୋର ବୟସ ୧୫ ବର୍ଷ ସେତେବେଳେ ହୋଇଥାଏ ସତ କିନ୍ତୁ ପାଣିଗ୍ରାହୀ ବାବୁ ମୋତେ ୧୪ ବର୍ଷ ଲେଖ ବୋଲି କହିଲେ । ମୁ ୧୪ ବର୍ଷ ଲେଖି ଦେଇଥିଲି । ତାର କାରଣ ମୁ ସେଠାକୁ

ପିବାପରେ ଯାଇ ଜାଣିଲି । ସେତେବେଳେ ବାନର ସେନା ନାମରେ ଏକ ସତ୍ୟା-ଗ୍ରହୀ ଦଳ ଉକ୍ତ କାମ ପାଇଁ ଗଢା ଯାଇ ଥାଏ । ସେମାନଙ୍କର ବୟସ ୮ ବର୍ଷରୁ ୧୪ ବର୍ଷ ମଧ୍ୟରେ ଥାଏ । ଯେଉଁ ମାନେ ବାନର ସେନା ଭୁକ୍ତ ହେଉଥାନ୍ତି ସେମାନଙ୍କୁ ଜେଲଦଣ୍ଡ ନ ଦେଇ ବେତ୍ରାଘାତ ଦଣ୍ଡ ଦିଆ ଯାଉଥାଏ । ପାଣିଗ୍ରାହୀ ବାବୁ ସେ ଦିନ ମୋଠୁ ସ୍ୱାକ୍ଷର ନେଇ ଚାଲି ଗଲେ । ତହିର ସପ୍ତାହକ ପରେ ଅର୍ଥାତ୍ ୧୯୩୦ ଖ୍ରୀ: ଅପ୍ରେଲ ମାସରେ ଆମ୍ଭେମାନେ ଇଞ୍ଚୁଡ଼ ଯିବାକୁ ନିର୍ଦ୍ଦେଶ ଆସିଲା । ଯଥା ସମୟରେ ମୁ ସମ୍ବଲପୁର ଗଲି ଏବଂ ସତ୍ୟାଗ୍ରହୀ ଦଳରେ ଯୋଗ ଦେଲି । ମୋତେ ଖଣ୍ଡିଏ ହାଫ୍ ପେଣ୍ଟ, ଗୋଟିଏ ହାଫ୍ କୁର୍ତ୍ତା, ମୁଣ୍ଡ ପାଇଁ ଗୋଟିଏ ଗାନ୍ଧି ଟୋପି, ବାଉଁଶ ବାଡ଼ଟାଏ, ଆଉ ଗୋଟିଏ ଝୁଲାମୁଣା କାନ୍ଧରେ ପକାଇ ଗୋଟିଏ କ୍ଷୁଦ୍ର ଶୋଭାଯାତ୍ରାରେ ଯୋଗ ଦେବାକୁ ହୋଇଥିଲା । ସେତେ-ବେଳେ ଗୋଟିଏ ହିନ୍ଦି ଉର୍ଦ୍ଦୁ ମିଶା ଗୀତ ଗାଇ ଗାଇ ଯିବାକୁ ହେଉଥିଲା । ଗୀତଟି ପୂରା ମନେ ପଡ଼ୁନି । ତେବେ ତାର ପ୍ରଥମ ପଦର ଗୋଟିଏ ଅଂଶ ହେଉଛି—

କମର୍ କଷ୍‌କେ ନିକଲ୍ ପଡୋ ଶାନ୍ତ ଯୁଦ୍ଧ୍‌କେ ଲିୟେ

ସ୍ଲୋଗାନ ଥାଏ ବନ୍ଦେ ମାତରମ୍, ଇନ୍‌କିଲାବ ଜିନ୍ଦାବାଦ, ଭରତ ମାତା କି ଜୟ ଇତ୍ୟାଦି ।

ଯଦିଓ ଆମର ବ୍ରତ ଥିଲା ଅହିଂସା ତଥାପି ଉପରୋକ୍ତ ଗୀତ ସ୍ଲୋଗାନ ଆଦି ଦେଇ ଆମେ ଯେତେବେଳେ ଆମ ସର୍ଦ୍ଦାରଙ୍କ ନିର୍ଦ୍ଦେଶମତେ ଅଗ୍ରସର ହେଉଥାଉଁ ମନରେ ଯେଉଁ ପୁଲକତା ତଥା ଉନ୍ମାଦନା ଜାତ ହେଉଥାଏ ତାହା ବର୍ଣ୍ଣନାତୀତ ।

କେଉଁ ଏକ କଳ୍ପଲୋକରେ ମନଟା ଯାଇ ଆଶ୍ରୟ ନେଇଥାଏ । ଏହିପରି ଭବେ ଆମେ ଯାଇ ସମ୍ବଲପୁର ଫାଟକରେ ପହଞ୍ଚିଲୁ । ଘନଶ୍ୟାମ ପାଣିଗ୍ରାହୀ ଯାଇ ଟିକଟ୍ କରି ଆଣିଲେ । ଟ୍ରେନରେ ବସି ତାପରେ ଆମେ ବାଲେଶ୍ୱର ଅଭି-ମୁଖେ ଲବଣ ସତ୍ୟାଗ୍ରହୀ ରୂପେ ଅଗ୍ରସର ହୋଇଥିଲୁ ।

ଇଞ୍ଚୁଡ଼ ସମୁଦ୍ର କୂଳିଆ ଏକ ଗ୍ରାମ । ସେଠା ସମୁଦ୍ର କୂଳରେ କେତେ-ଗୋଟି ଶିବିର ପଡ଼ଥାଏ । ଘୋଡାଚଢା ସିପାହୀ ମାନେ ପର୍ଯ୍ୟଟନ ମାରୁଥାନ୍ତି । ଗୋଟାଏ ପଟେ ପୋଲିସ ଫଉଜ, ଜିଲା କଲେକ୍ଟର ଏମାନଙ୍କ ଶିବିର । ଅନ୍ୟ-ପଟେ ଆମେ ସବୁ ନିରୀହ ସତ୍ୟାଗ୍ରହୀ ଦଳ । ଏକପାଖେ ସଶସ୍ତ୍ର ଶାସକ ଦଳ । ଅନ୍ୟ ପାଖେ ଅହିଂସ, ଶାନ୍ତ ତଥା ଦୃଢ଼ ମନୋଭବାପନ୍ନ ବ୍ୟକ୍ତିବୃନ୍ଦ । ସକାଳ

ପାହିଲା । ଶାସକ ଦଳ ସେପଟେ ଡ୍ରିଲ ଆରମ୍ଭ କରି ଦେଇଥାନ୍ତି । ସିପାହୀ ଦଳଙ୍କୁ ଡ୍ରିଲ କରଉଥାନ୍ତି ତାଙ୍କର ସୁବେଦାର । ଶୁଭୁଥାଏ ଏଟେନ୍‌ସେନ୍‌.... ରାଇଟ୍‌ ଲେଫ୍‌ଟ୍‌, ରାଇଟ୍‌ ଲେଫ୍‌ଟ୍‌, ଷ୍ଟପ୍‌ ଆଦି ନାନା ପ୍ରକାର ଇଂରାଜୀ ଶବ୍ଦର ଧ୍ୱନି । ଆଉ ଆମ ଶିବିରରେ ପଣ୍ଡିତ ଘନଶ୍ୟାମ ପାଣିଗ୍ରାହୀ କରୁଥାନ୍ତି ଗୀତା ପାଠ । ପବିତ୍ର ସଂସ୍କୃତ ଶ୍ଳୋକାଦିର ଆବୃତ୍ତି । ଗୋଟାଏ ଦିଗରେ ଚାଲିଥାଏ ଗୋଲାମ-ଗିରିର ନିଷ୍ଠାପର ଉତ୍ତେଜନାପୂର୍ଣ୍ଣ ପ୍ରସ୍ତୁତି । ଅପର ଦିଗରେ ଚାଲିଥାଏ ଦେଶ ମାତୃକାର ଶାନ୍ତପୂର୍ଣ୍ଣ ଭକ୍ତି ପ୍ରଣତି । ଉଭୟ ଦଳଙ୍କ ମଧ୍ୟରେ ଥାଏ ପ୍ରଭେଦ ଏତିକି ଯେ ଦଳେ ଦମନ କରିବେ, ଅନ୍ୟଦଳ ଅନ୍ୟାୟ ବିରୁଦ୍ଧରେ ଅହିଂସ ଭବେ ଦମନକାରୀର ଅତ୍ୟାଚାର ମୁଣ୍ଡପାତି ସହି ନେବେ, ଲକ୍ଷ୍ୟ ହାସଲ କରିବେ । ସଂଘର୍ଷ ଅନିବାର୍ଯ୍ୟ ।

ପୂର୍ବାକାଶରେ ସୂର୍ଯ୍ୟଦେବ ଉଦୟ ହେଲେ । ଆମ୍ଭେମାନେ ଅର୍ଥାତ୍‌ ସତ୍ୟାଗ୍ରହୀ ଦଳ ଭୋରରୁ ଉଠି ପଢ଼ ନିତ୍ୟକର୍ମ ସମାପନ କରି ଭିଜା ଚୂଡ଼ା ଓ ଗୁଡ଼ ମେଞ୍ଚାଏ ଲେଖା ଖାଇ ଦେଇ ଛୋଟିଆ ବାଲଟିନ ଗୋଟାଏ ଲେଖା ଧରି ସମୁଦ୍ରରୁ ଲବଣ ଜଳ ଆନୟନ ପାଇଁ ପ୍ରସ୍ତୁତ ହୋଇଗଲୁ ।

ଦଳପତି ଆଦେଶ ଦେଲେ । ଆମେ ପାଣି ଆଣିବାକୁ ବହିର୍ଗତ ହେଲୁ । ପ୍ରଥମ ଥର ବାଲଟିଏ ଲେଖା ପାଣି ଆଣି ଆମ ଶିବିର ପାଖେ ଥିବା ବଡ ଡ୍ରମରେ ଅଜାଡ଼ ଦେଲୁ । ୨ୟ ଥର ଯାଇ ପାଣି ଆଣିଛୁ ଏପରି ସମୟରେ ଘୋଡାଚଢ଼ା ସିପାହୀ ଏବଂ ସାଧାରଣ ସିପାହୀ ଆମର ଚାରିପଟେ ଘେରି ଯାଇ ଆମ ହାତରୁ ବାଲଟିନ ଛଡାଇ ନେଇ ପାଣିତକ ତଳେ ଢାଳି ଦେଲେ । ଆମ ମାନଙ୍କୁ ତାପରେ ଆଉ ଏକ ଟେଣ୍ଟକୁ ଘେନି ଗଲେ । ସେଠାରେ ଜିଲା ହାକିମ ଜ୍ଞାନେନ୍ଦ୍ର ଚନ୍ଦ୍ର ବ୍ରହ୍ମ ଅଫିସ କାଇଦାରେ ବସିଥାନ୍ତି ।

ଆମ୍ଭ ବାନର ସେନା ଦଳଙ୍କୁ ନେଇ ତାଙ୍କ ଆଗେ ଉପସ୍ଥିତ କରଇଲେ । ସେ ଆମକୁ ତାପରେ ନିଜ ହାତରେ ୩/୪ ପାହାର କରି ବେତ୍ରାଘାତ କଲେ ଏବଂ ଛାଡ଼ ଦେଲେ । ଏପରି ଭବେ ୩/୪ ଦିନ ସମୁଦ୍ରରୁ ପାଣି ଅଣା ଏବଂ ବେତ୍ରାଘାତ ଦଣ୍ଡ ଆମକୁ ମିଳିଲା । ତାପରେ ଆମଦଳ ସମ୍ବଲପୁର ଚାଲି ଆସିଥିଲୁ ।

# ଅସ୍ପୃଶ୍ୟତା ନିବାରଣ ଓ ପ୍ରଥମ ସାମ୍ପ୍ରାଦିକତା

ଲବଣ ସତ୍ୟାଗ୍ରହରୁ ଫେରିବା ପରେ କଂଗ୍ରେସ କାମରେ ନିଜକୁ ସଂପୂର୍ଣ୍ଣ ଭବେ ନିୟୋଜିତ କରିଦେଲି । ମହାତ୍ମା ଗାନ୍ଧିଙ୍କ ଗଠନମୂଳକ କାମ ଗୁଡକ ମଧ୍ୟରୁ ଅସ୍ପୃଶ୍ୟତା ନିବାରଣ ଦିଗରେ ବିଶେଷ ଭବେ ଲଗି ପଡଲି ।

ସେଥର ଭଗୀରଥି ପଟ୍ଟନାୟକ ଆସିଥାନ୍ତି । ସେ ଆସିଲେ ଗାଁରେ କଂଗ୍ରେସ ସଭ କରନ୍ତି । ସେଥର ବରଗଡରୁ କୃତାର୍ଥ ଆଚାର୍ଯ ଖଦଡ ସୂତା କିଣି ନେବାକୁ ବି ଆସିଥିବାରୁ ଉପରଓଳି ସଭ ହେବାପାଇଁ ରହି ଯାଇଥାନ୍ତି । ସ୍ଥାନୀୟ ସୋମଳାଇ ମନ୍ଦରରେ କଂଗ୍ରେସ କର୍ମୀମାନେ ଆସିଲେ ରହୁଥାନ୍ତି । ସେଠାରେ ଶୋଇବା, ବସାଉଠା କରିବା, ଭ୍ରାମ୍ୟମାଣ ଅଫିସ କାମ ଆଦି କରିବା, ଖିଆପିଆ ସବୁକିଛି କର ଯାଉଥାଏ । ସକାଳେ ସ୍ଥିର ହେଲ ଆଜି ସଭ ହେବ ବୋଲି ଗାଁରେ ଧେଣ୍ଡୁର ଦିଆଯିବ । ମନ୍ଦରରେ ନିଷାଣ ଦେଶୀୟ ବାଜା ୨/୩ ଗୋଟି ସବୁଦିନ ପଡ଼ ରହିଥାଏ । ଗୋଟିଏ ବଡ ଟାମକି (ଯାହାକି ଚୌକୀଦାର ବ୍ୟବହାର କରେ ଧେଣ୍ଡୁର କାମ ପାଇଁ) ଟାଏ ସବୁଦିନ ରଖା ଯାଇଥାଏ । ଆମେ ତିନି ଜଣ କଥା ହେଲୁ ଯେ ଟାମକିଟାକୁ ନେଇ ସଭ ହେବା କଥା ଜଣାଇ ଦେବା । ବଡ ଗାଁଟାଏ ତ । ତେଣୁ ତିନିଜଣ ଯାକ ମଧ୍ୟରୁ ଜଣେ ଯିବ କୁଷ୍ଟାପଡା ବାଟେ ଯାଇ କୁମ୍ଭାର ପଡା, ବଢାଇ ପଡା, କୁଟୁ ଚିକିର, ପଣ୍ଡା ଗଳି, ଛନାପତି ସାହି ଦେଇ ଶତପଥି ଘର ଦେଇ ମନ୍ଦରରେ ପହଞ୍ଚିବ । ତାପରେ ଆଉ ଜଣେ ଯିବ ଖଡ଼ୁର ପଡାବାଟେ ବଣିଆ ଗଳି ଦେଇ ଆସି ମନ୍ଦରରେ ପହଞ୍ଚିବ ।

ଭଗୀରଥି ପଟ୍ଟନାୟକ ଅଫିସ ଜଗିବେ । ତେଣୁ ମୁଁ ପ୍ରଥମେ ଟାମକି ଧରି ବଜାଇ ବଜାଇ କୁଷ୍ଟାପଡା ବାଟେ ଯାଇ ଫେରି ଆସିଥିଲି । ୨ୟ ରାଉଣ୍ଡରେ କୃତାର୍ଥ ବାବୁ ଯାଇ ସେହିପରି ଟାମକି ବଜାଇ ବଜାଇ ଧେଣ୍ଡୁର ଦେଇ ଆସିଲେ । ୨ ଜଣ ବ୍ରାହ୍ମଣ ହରିଜନର ଟାମକି ବଜାଇବା ଥିଲ ଯେତେବେଳେ ଅତ୍ୟନ୍ତ ଗର୍ହିତ ତଥା ବିସ୍ମୟ କଥା । ଲେକେ ତାହା ଦେଖି ଆଶ୍ଚର୍ଯ ହୋଇଯାଉ ଥାଆନ୍ତି । ଉପର ଓଳି ସଭ ହେଲ । ସେହି ସଭରେ ଚୌକୀଦାର ଓ ଆଉ କେତେଜଣ ସେହିପରି ହରିଜନ ଆସି ଠିଆ ହୋଇଥାନ୍ତି । ମୁଁ ଏବଂ କୃତାର୍ଥ ବାବୁ ସେମାନଙ୍କ ହାତ ଧରି ଟାଣି ଆଣିଥିଲୁ ଆଉ ସଭରେ ବସାଇ ଦେଇଥିଲୁ । ତାହା ଦେଖି କେତେଜଣ ରକ୍ଷଣଶୀଳ ବ୍ୟକ୍ତି ନାସିକା କୁଞ୍ଚନ କରିବା ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ଘୃଣା କରିଥିଲେ । ସେଦିନର ସଭ ସୁରୁଖୁରୁରେ ସରିଗଲ ସତ କିନ୍ତୁ ତା ଆରଦିନ

କୃତାର୍ଥ ବାବୁଙ୍କ ସହିତ ମୁଁ ବରଗଡ ଆସିଥିଲି । ଆମ ଆସିବା ବେଳେ ୨ ଜଣ କନଷ୍ଟବଲ ଭେଡେନ ଆସି ଆମ ସଙ୍ଗେ ସଙ୍ଗେ ବରଗଡ ଆସିଲେ । ବରଗଡରେ ଆମେ ପହଞ୍ଚିବା ମାତ୍ରେ ଗିରଫ ହୋଇଥିଲୁ । ଆମକୁ ସେଦିନ ପ୍ରଥମେ ଥାନାକୁ ନେଇ ସେଠାରୁ S. D. O. ଙ୍କ ବସାକୁ ନେଇଗଲେ । ଏସ୍. ଡ. ଓ. ଦିଲ୍ଲବର ଅଲି ନାମରେ ଜଣେ ମୁସଲମାନ ବ୍ୟକ୍ତି ଥାନ୍ତି । ତାଙ୍କ ଆଗରେ ଆମ ଦୁଇଜଣଙ୍କୁ ନେଇ ଉପସ୍ଥିତ କରାଇଲେ । ଦିଲ୍ଲବର ଅଲି ନିଜେ ପୂର୍ବ ଦିନର ସବୁ କଥା ପଚାରିଲେ । ଆମେ ଯାହା ସବୁ କହିଲୁ ବରଗଡ ଥାନାବାବୁ ତାକୁ ଟିପି ରଖିଲେ । ପରେ ଆମ୍ଭେମାନେ ଛାଡ ପାଇଥିଲୁ ।

ସମ୍ବଲପୁରରୁ ସେତେବେଳେ 'ଉତ୍କଳ ସେବକ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଥାଏ । ସାପ୍ତାହିକ ସମାଜ କଟକରୁ ମାଧବ ସାଥିଆ ମଗାଉଥାନ୍ତି । ମୁଁ ଉତ୍କଳ ସେବକ ମଗାଉଥାଏ । ବାର୍ଷିକ ଦେୟ ଟ.୨-୦୦ ମାତ୍ର । ୟା ବାହାରେ 'ଆଶା' ସାପ୍ତାହିକ ରୂପେ ମୋ ପାଖକୁ ମାଗଣାରେ ଆସୁଥାଏ । ମାଗଣାରେ ଆସିବାର ଅର୍ଥ ମୁଁ ଥାଏଁ ଉକ୍ତ ପତ୍ରିକାର ସମ୍ବାଦଦାତା । ସମୟେ ସମୟେ 'ଉତ୍କଳ ସେବକ' ସମ୍ବଲପୁରକୁ ମଧ୍ୟ ସମ୍ବାଦ ମାନ ଦେଇ ଦେଉଥାଏଁ । ସୁଖର କଥା ମୁଁ ଯାହା ଲେଖିକରି ପଠାଇ ଦେଉଥାଏ ସେସବୁ କଥା ଅବିକଳ ତହିଁରେ ପ୍ରକାଶିତ ହୋଇ ଯାଉଥାଏ । ତାହା ଦେଖି ମୋର ମନ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଯାଉଥାଏ । ଏହି ପ୍ରସଙ୍ଗରେ ଥରେ ମୁଁ ବିଜେପୁର ଜମିଦାର, ଆମ ଗାଁର ସେ ଥିଲେ ଗୌନ୍ତିଆ । ତାଙ୍କର କେତେକ କଥାର ସମାଲୋଚନା କରି ଏକ ଲେଖା 'ଉତ୍କଳ ସେବକ' ପତ୍ରିକାକୁ ଲେଖି ପଠାଇ ଦେଲି । ତାହା ତହିଁରେ ପ୍ରକାଶିତ ହୋଇ ବାହାରି ପଡ଼ଲା । ତାକୁ ପଢି ଗାଁଲୋକେ ବିସ୍ମିତ ହୋଇ ଯାଇ-ଥିଲେ । ଗାଁର ସୋମଲାଇ ମନ୍ଦିରରେ ପ୍ରତିଦିନ ଦ୍ୱିପ୍ରହରେ ୪୦/୫୦ ଜଣ ଲୋକ ଏକତ୍ରିତ ହୁଅନ୍ତି । ଖୁସି ଗପ ଆଦି କରି ସମୟ କଟାନ୍ତି । କେବେ କେବେ ପୁରାଣ ଆଦି ବି ସେଠାରେ ବୋଲାଯାଏ । ମନ୍ଦିରରେ ଋତୁ, ମାସ, ଦିନ ନିର୍ବିଶେଷରେ ଏ ପ୍ରକାର ଜନ ଗହଳି ଘଟେ । ଯେଉଁଦିନ ଉତ୍କଳ ସେବକରେ ସମ୍ବାଦ ଗୋଟିକ ପ୍ରକାଶିତ ହୋଇଗଲା ସେଦିନ ସେହି କଥା ନେଇ ମନ୍ଦିରରେ ପ୍ରଥମେ ପଢ଼ଲା । ଲୋକେ ପରସ୍ପର ମଧ୍ୟରେ ଆଲୋଚନା କଲେ ଯେ ଏ କଥା ଅମୁକ ବ୍ୟତୀତ ଆଉ କିଏ ଲେଖିବ ? ଥୋକେ କହିଲେ ଧନ୍ୟରେ ତାର ସାହସ । ଆଉ ଥୋକେ କହିଲେ ଏଥର ଟୁଗ ଆଉ ଯିବା କାହିଁ ? ଏଥରକ ବାଟୁଁନ; ତାର କେନ୍ ବୁଆ ରଖ୍‌ବା ଯେ' । ସ୍ଥାନୀୟ ଜଣେ ଭଦ୍ରବ୍ୟକ୍ତି ଭୁବନ ଗଡତିଆ ଏତିକି ବେଳେ କହିଲା ଯେ କାଣା ବଲୁଛ ବୋ ତୁମ୍ଭେମାନେ, ଇ ପିଲାଟା ସାକ୍ଷାତ୍

ଭଗବାନ ବୋ । ଜମିଦାର କେତେ ଅନ୍ୟାୟ ନାହିଁ କର୍ବାର୍କେ ? ହେଲେ କାର୍ ଜିଭେ ହାଡ଼୍ ଅଛି କହିବାକେ ? କିନ୍ତୁ କହିବାର ତ ଭିନେ କଥା ଗେଜେଟ ନ ଛପାଇ ଦେଲା । ଜଗତ ଜାନ୍‌ଲେ ତ ଇସବୁ କଥା । ତାପରେ ଆଉ ବହୁ ସମୟ ଧରି ସେହି କଥା ନେଇ ସେଠାରେ ହଇଚଇ ଲାଗିଗଲା । ମୁ ସେଠାରେ ମୋର ଜଣେ ସାଙ୍ଗ ଥାଏ । ତା ନାଁ ଭୁଟୁ । ତା ସହିତ ଚୁପ୍ କରି ବସିଥାଏଁ । ସବୁ ଶୁଣି ସାରିଲି ଯେମିତି ତାପରେ ଉଠି କହିଲି ଶୁଣ, ତୁମ୍ଭ ମାନଙ୍କର କଥା ମୁ ଏଠାରେ ବସି ସବୁ ଶୁଣିଛି । ଲେଖାଟି ମୁ ଲେଖିଛି । ଏଥିପାଇଁ ଯାହା ଦଣ୍ଡ ମିଳିବ ମୋତେ ମିଳିବ । ତୁମ୍ଭ ମାନଙ୍କ ମଧ୍ୟରୁ ଯେଉଁ ଜଣ କେତେ ମୋତେ ଲକ୍ଷ୍ୟ କରି କେତେ କଥା ଭବୁଛ ମୋ ସକାଶେ ସେହି ମାନଙ୍କର ମୁଣ୍ଡ ଏତେ ବଥାଉଛି କାହିଁକି ? ମୋ କଥା ଶୁଣି ସମସ୍ତେ ତାପରେ ଚୁପ୍ ହୋଇ ଯାଇଥିଲେ । ତାପରେ ଅତି ଅଳ୍ପ ସମୟ ମଧ୍ୟରେ ସେହି କଥା ସମଗ୍ର ଗାଁ ଟି ଯାକ ଲୋକ ଜାଣିଗଲେ । ବିଜେପୁର ଜମିଦାରଙ୍କ ତରଫରୁ ଯେଉଁ ବ୍ୟକ୍ତି ଜଣକ ମୋକ୍ତାର ରୂପେ ରହିଥାନ୍ତି ତାଙ୍କ ନା ଥିଲା ସୁଦର୍ଶନ ବହିଦାର । ଏକଥା ଶୁଣି ସେ ମୋ ଉପରେ ଭୀଷଣ ରଗିଗଲେ । ମୋତେ ତାଙ୍କ ଘରକୁ ଡକାଇ ପଠାଇଲେ । ମୁ କିନ୍ତୁ ଗଲି ନାହିଁ । ତାପରେ ସେ ସେହି ଖବର କାଗଜଟିକୁ ତାଙ୍କର ଜଣେ ବିଶ୍ୱସ୍ତ ବ୍ୟକ୍ତି ବଳଭଦ୍ର ସାହୁ ହାତରେ ମଗାଇ ପଠାଇଲେ । ବଳଭଦ୍ର ଆସି ମୋତେ ଖୋସାମତ କରି କହିଲେ ଯେ ଗେଜେଟଟି କିଛି ସମୟ ପାଇଁ ଦିଅ । ବହିଦାର ପଢ଼ିବେ ତାପରେ ମୁ ଆଣିଦେବି ।

ତାଙ୍କ କଥା ଶୁଣି ମୁ ହସି ହସି କାଗଜଟି ତାଙ୍କୁ ଦେଇ ଦେଲି । ବହିଦାର କାଗଜଟି ଦେଖି ଜମିଦାରଙ୍କ ବିରୁଦ୍ଧରେ ଯାହା ବାହାରି ଥିଲା ତାକୁ ଉତାରି ପକାଇ ସେହି ନକଲଟି ଏବଂ ଏକ ଚିଠି ଲେଖି ଜଣେ ସ୍ୱତନ୍ତ୍ର ପତ୍ରବାହକ ଦ୍ୱାରା ତାହା ବିଜେ-ପୁର ପଠାଇ ଦେଲେ । ସୁଦର୍ଶନ ବାବୁ ଆଶା କରିଥିଲେ ଯେ ଚିଠି ପାଇବା କ୍ଷଣି ଜମିଦାର ରେମଣ୍ଡା ଚାଲି ଆସିବେ ଏବଂ ମୋତେ ମାଡ ମରାଇବେ । ରେମଣ୍ଡା ଗାଁରେ ଥିବା ପ୍ରାୟ ୮୦% ବ୍ୟକ୍ତି ମଧ୍ୟ ତାହା ଆଶା କରିଥାନ୍ତି । କିନ୍ତୁ ତାହା ହେଲା ନାହିଁ । ମୁ ଯେଉଁ ସମ୍ବାଦଟି ଦେଇଥିଲି ତାହା ସତ୍ୟ ଉପରେ ଆଧାରିତ ଥିଲା । ସେତେବେଳେ ସେ ଅରିନେରୀ ମାଜିଷ୍ଟ୍ରେଟ୍ । ଗୋଟିଏ ସାଧାରଣ କଥା ତଥା ସତ୍ୟ କଥା ଉପରେ ସେ ବା ମୁଣ୍ଡ ଖେଳାଇବେ କାହିଁକି ? ତେଣୁ ସେ ଆସି ନ ଥିଲେ କିମ୍ବା ସେଥିପାଇଁ କିଛି କଥା ଆଉ ପଡ ନ ଥିଲା । ଗାଁରେ କିନ୍ତୁ ୩/୪ ମାସ ଧରି ସେହି କଥାର ଆଲୋଚନା ହେଉଥିଲା । ମୋର ଗତିବିଧି ଉପରେ କ୍ରମେ ଗ୍ରାମାଧୀପ ତଥା ପୋଲିସ ସର୍ବଦା ଦୃଷ୍ଟି ରଖିଥାନ୍ତି ।

କିଶୋର ମେହେରଙ୍କଘରେ ଇଂରାଜୀ ପାଠ ପଢ଼ିବା, ହିନ୍ଦ, ବଙ୍ଗଳା

ପଷା ଶିଖିବା, ସୂତା କାଟିବା, ଆବଶ୍ୟକ ବେଳେ କଂଗ୍ରେସ ସଭ ମାନଙ୍କରେ ସକ୍ରିୟ ଅଂଶ ଗ୍ରହଣ କରିବା, ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ଖବରକାଗଜ ମାନଙ୍କୁ ସମ୍ବାଦ ପ୍ରେରଣ କରିବା ଆଦି କାର୍ଯ୍ୟମାନ ସେହି ସମୟରେ କରିବା ଥିଲା ମୋର ଏକ ସୌଖୀନ ବିଳାସ ।

ବୃନ୍ଦପୁଟରୁ ବାହାରୁ ଥିବା ଆଶା ପତ୍ରିକା ସହିତ ମୋର ସମ୍ପର୍କ ୧୯୨୮ ସାଲରୁ ରହି ଆସିଥିଲା ଏବଂ ଉକ୍ତ ସମ୍ପର୍କ ୧୯୫୦-୫୧ ଖ୍ରୀ: ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । ୧୯୩୬ ସାଲରୁ 'ସମାଜ' କୁ ମଧ୍ୟ ସମ୍ବାଦ ଗୁଡ଼କ ପଠାଉ ଥିଲି । ଏହିପରି ଭବେ ପତ୍ର ପତ୍ରିକା ମାନଂକ ସହିତ ମୁ ବରବର ଯୋଗସୂତ୍ର ସ୍ଥାପନ କରି ଆସୁଥିଲି । ୧୯୪୭ ସାଲର ମୟୀ ଓ ଯୁନ ମାସରେ କିଛି ଦିନ ପାଇଁ ମୁ ଆଶା ପତ୍ରିକାର ସହକାରୀ ସଂପାଦକ କାର୍ଯ୍ୟରେ ସହଯୋଗ କରି ଆସିଥିଲି । ସେତେ-ବେଳେ ଚାକିରୀ ଛାଡ଼ଦେଇ ଉକ୍ତ ସଂସ୍ଥାରେ ରହି କାର୍ଯ୍ୟ କରିବାର ସମସ୍ତ ବ୍ୟବସ୍ଥା ହୋଇ ସାରି ଥିଲା । କିନ୍ତୁ ଶେଷରେ ମୁ ତାହା କରିବା ପ୍ରତି ବିଶେଷ ଆଗ୍ରହୀ ଥିଲେ ମଧ୍ୟ ଅନ୍ୟ ଏକ ଗୁରୁ ଦାୟିତ୍ୱ ଯୋଗୁଁ ତାହା ଆଉ ଗ୍ରହଣ କରି ପାରି ନ ଥିଲି ।

୧୯୩୧ ସାଲରେ କେତେ ମାସ ପାଇଁ ମୁ ରେମଣ୍ଡା ମିଡ଼ଲ ଭର୍ଣ୍ଣାକ୍ୟୁଲର ସ୍କୁଲରେ ୩ୟ ଶିକ୍ଷକ ରୂପେ ଅସ୍ଥାୟୀ ଭବେ ରହିଥିଲି । ୧୯୩୨ ସାଲରେ ମୁ ଶିକ୍ଷକ ରୂପେ ରେମଣ୍ଡା ବାଳକ ସ୍କୁଲରେ ଶିକ୍ଷକତା କରିବା ପାଇଁ ନିଯୁକ୍ତି ପତ୍ର ପାଇଲି । ସେହି ଦିନ ଠାରୁ ମୋର ଶିକ୍ଷକ ଜୀବନ ଆରମ୍ଭ ହୋଇଥିଲା ଏବଂ ତାହା କ୍ରମାଗତ ଭବେ ଚାଲି ଶେଷରେ ୧୯୭୫ ସାଲ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା ।

## ଆତ୍ମହତ୍ୟା ଚେଷ୍ଟା ଏବଂ ତହିରେ ବିଫଳତା

ଇତିହାସ ହିଁ ଇତିହାସ । ମୋର ଜୀବନ ଇତିହାସରେ ଏପରି ଏକ କଳଙ୍କମୟ ଘଟଣା ଘଟିବ ଏହା ଥିଲା କଳ୍ପନାତୀତ । ତାହା ବାଞ୍ଛନୀୟ କି ଅବା-ଞ୍ଛନୀୟ, ନୀତି କି ଅନୀତି, ଉଚିତ ନା ଅନୁଚିତ ଏବେ କହି ଲଭ ନାହିଁ । ପରିସ୍ଥିତିର ଚାପରେ ପଡ଼ ଦିନେ ମୁ ଯେ ଆତ୍ମହତ୍ୟା କରିବାକୁ ଯାଇ ସମସ୍ତ ଉଦ୍ୟମ କରି ସୁଦ୍ଧା ପରିଣାମରେ ଅକୃତକାର୍ଯ୍ୟ ହୋଇଥିଲି ତାହା ଏଠାରେ ଉଲ୍ଲେଖ କରିବା ସମିଚୀନ ବୋଧ କରୁଛି ।

୧୯୩୩ ସାଲ ଜାନୁୟାରୀ ମାସ ୪ ତାରିଖ ଦିନ ମୋର ପିତାମହ କୃତ୍ତିବାସ

ଡାଶଙ୍କ ଦେହାବସାନ ଘଟେ । ତାଙ୍କର ମୃତ୍ୟୁ ସେତେବେଳେ ମୋର ତରୁଣ ପ୍ରାଣରେ ବିଶେଷ ଆଘାତ ଦେଇଥିଲା । ପିଲାଟି ଦିନୁ ୨କେତ ମୁ ଥିଲି ପିତୃମାତୃ ହୀନ । ୧୯୨୭ ଖ୍ରୀ:ରେ ମୋର ବଡ ବାପାଂକ ମୃତ୍ୟୁ ପରେ ମୋତେ ଯିଏ ଟିକିଏ ସହାୟତା କରୁଥାନ୍ତ ସେହି ହେଉଛନ୍ତ ମୋର ପିତାମହ । ତେଣୁ ତାଙ୍କର ମୃତ୍ୟୁ ଦିନ ମୁ ତାଂକ ପାଖେ ପାଖେ ରହି ସବୁ କଥ ଜାଣି ପାରୁ ଥାଏଁ । ସେ ଯେତେ-ବେଳେ ଚାଲିଗଲେ ସେ ଦିନ ମୁ ନିଜକୁ ବିଶେଷ ଦୁର୍ବଳ ମନେ କରିଥିଲି । ମୋର ତରୁଣ ପ୍ରାଣ ତାଂକର ଦେହାବସାନ ହେବା ଦେଖି ଭେ, ଭେ, କରି କାନ୍ଦ ଉଠି ଥିଲା । ଜଣକର ମୃତ୍ୟୁରେ ଯେ ଅନ୍ୟର ପ୍ରାଣରେ କେତେ କଷ୍ଟ ହୁଏ ତାହା ମୁ ସେ ଦିନ ହି ଅନୁଭବ କରି ପାରିଥିଲି । ତାଂକ ଅନ୍ତେଷ୍ଟି କ୍ରିୟାରେ ଯୋଗଦାନ କରି ନାନାବିଧ କାମ କରିବା ଦ୍ୱାରା ଶେଷରେ ଉକ୍ତ ଶୋକ ବି ମନରୁ ଅନ୍ତର୍ହିତ ହୋଇ ଯାଇଥିଲା । ପରିସ୍ଥିତିର ଉପରେ ପଡ ମୋ ନିଜ ଦାୟିତ୍ୱ ତେଣିକି ମୋ ଉପରେ ପଡଲା । ସଂସାର ପଥରେ ଗତି କରିବା ସକାଶେ ମୋର ସାମର୍ଥ୍ୟ ଯେତିକି ଲୋଡା ତାହା ନ ଥିଲା । ତେଣୁ ସାମାନ୍ୟ କଥା ମାନଂକରେ ମଧ୍ୟ ମୁ ବିଚଳିତ ହୋଇ ପଡୁଥାଏ । ଏପରି ସମୟରେ ଆମ ଘରେ ଭଗ ବଣ୍ଟାଆର ନେଇ ପ୍ରଶ୍ନ ଉଠିଲା । ସେହି ପରିପ୍ରେକ୍ଷୀରେ ମୋତେ ଘରୁ ଅଲଗ ହେବାକୁ ପଡଲା । ମୁ ଏବଂ ମୋର ପିତାମହୀ ଆମେ ଦିଜଣ ଗୋଟିଏ ପରିବାର ହୋଇ ରହିଲୁ । ସେଷେଇ ଅଲଗ୍ ହେଲା । ସମ୍ପତ୍ତିର ବଣ୍ଟାଆର ନେଇ ମୋ ବିରୁଦ୍ଧରେ ଏପରି ଷଡଯନ୍ତ୍ର ଚାଲିଲା ଯାହା ମୋ ପକ୍ଷରେ ଦୁର୍ବିସହ ହୋଇ ପଡଲା । ଫଳରେ ସେଥି-ପାଇଁ ମୁ ଆତ୍ମହତ୍ୟା କରିବାକୁ ଦିନେ ମନସ୍ଥ କରି ତହିଁର ଯୋଗାଡରେ ଲାଗି ପଡ଼ିଲି ।

ଯେଉଁ ମାନଙ୍କୁ ମୁ ନିଜର ଆତ୍ମୀୟ, ଗୁରୁଜନ ଭାବି ମନେ ମନେ ସମ୍ମାନ ଦେଇ ଆସୁଥିଲି, ଭକ୍ତି କରୁଥିଲି ସେମାନେ ଯେ ପରିଣାମରେ ସଂକୀର୍ଣ୍ଣ ସ୍ୱାର୍ଥର ବଶବର୍ତ୍ତୀ ହୋଇ ଯେତେବେଳେ ମୋ ବିରୁଦ୍ଧରେ ହୀନ ଚକ୍ରାନ୍ତ କରି ବସିଲେ ତାହା ୧୭ ବର୍ଷର ଏକ ତରୁଣ ପ୍ରାଣ, ସେମାନଂକର ମୁକାବିଲା କରିବାକୁ ଅସମର୍ଥ ହୋଇ ପଡ଼ଲା । ନୈରାଶ୍ୟରେ ଜର୍ଜରିତ ହୋଇ ଦିନୁଦିନ ମୁ କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲି । କୌଣସି ଆଡୁ ସାହାଯ୍ୟ ସହାନୁଭୂତି ମୋତେ ଆଉ ମିଳିବାର ସମ୍ଭାବନା ଦେଖା ଗଲାନାହିଁ । ତେଣୁ ଦିନେ ଭାବିଲି ଯେ ମୁ ବଞ୍ଚିଛି ବୋଲି ଏମା-ନଙ୍କର ଏ ହୀନ ଚକ୍ରାନ୍ତ । ସ୍ୱାର୍ଥର ସଂଘର୍ଷ । ମୁ ଯଦି ମରିଯାଏ ତେବେ ଏମାନଙ୍କ ଉଦ୍ଦେଶ୍ୟ ସିଦ୍ଧ ହେବ । ଆପାତତଃ ସେମାନେ ଶାନ୍ତର ନିଃଶ୍ୱାସ ମାରିବେ ।

ଏହା ଚିନ୍ତା କରି ଦିନେ ଆତ୍ମହତ୍ୟା କରିବାକୁ କୃତ ସଂକଳ୍ପ ହେଲି ।

ସେତେବେଳେ ଅଫିମ ତୋଳା ଥାଏ ଟଙ୍କାଏ ପଚିଶ ପଇସା । ମୋରି ବୟସର ଜଣେ ବ୍ୟକ୍ତିକୁ ସେତେବେଳେ ସର୍ବୋଚ୍ଚ ଦୁଇଅଣି ଓଜନର ଅଫିମ ଥରକରେ କିଣିବାର ନିୟମ ଥାଏ । ଚଉଦ ଅଣି ଓଜନର ଅଫିମ ୭ ଦିନରେ କିଣି ଆଣି ଜମା କଲି । ଗୋଟିଏ ଦିନ ସ୍ଥିର କଲି । ସେ ଦିନର ରାତିରେ ମୁଁ ଅଫିମ ସେବନ କରି ଇହଲୀଳା ସାଙ୍ଗ କରିବି ।

ନିର୍ଦ୍ଦିଷ୍ଟ ଦିନ ପହଞ୍ଚି ଗଲା । ସେ ଦିନର ସକାଳୁ ମୁ ଗାଧୋଇ ଦେଲି । ଘରେ ଥିବା ଠାକୁରଙ୍କୁ ପୂଜା କଲି । ତାପରେ ଗଲି ଗାଁରେ ଥିବା ମନ୍ଦର ମାନଙ୍କୁ । ପ୍ରତି ମନ୍ଦରରେ ଥିବା ଠାକୁର ମାନଙ୍କୁ ମୋର ଇପ୍‌ସିତ କାମନା ଜଣାଇ ଦେଲି । ମୁ ସ୍ପଷ୍ଟ ଜାଣିଥିଲି ଆତ୍ମହତ୍ୟା ମହାପାପ ତଥାପି ମୁ ତା କରିବାକୁ ଯାଉଥାଏ । ଠାକୁର ମାନଙ୍କ ମୂର୍ତ୍ତିକୁ ଅନାଏ । ମୋର ମାନସିକ ବେଦନା ତାଙ୍କୁ ପ୍ରକାରନ୍ତରେ ନିବେଦନ ସୂତ୍ରରେ ଉପହାର ଦେଇ ଦେଉଥାଏଁ । ମନ ମୋର ଗମ୍ଭୀର । ଚିତ୍ତ ସ୍ଥିର, ନିଶ୍ଚଳ ତଥାପି ଯେତେବେଳେ ମୁ ଠାକୁର ମାନଙ୍କୁ ଦେଖୁଥାଏ ସେତେ-ବେଳେ ସେମାନଂକ ମୂର୍ତ୍ତିମାନେ ମୋ ଆଖିକି ହସିଲା, ହସିଲା ପରି ଜଣା ପଡୁ-ଥାନ୍ତି । ବହୁ ସମୟରେ ହସର ପ୍ରତିଫଳନ ଘଟେ । ମୁ ତ ହସୁ ନ ଥିଲି ତେବେ ବିଗ୍ରହମାନେ ହସିଲା ପରି ଜଣା ପଡୁଥାନ୍ତି କାହିଁକି ? ଛୋଟ ମନ ତ । ମୋ ନିଜ ଚିନ୍ତା ପରିସର ମଧ୍ୟରେ ଥାଇ ମୁ ସେତେବେଳେ ଚିନ୍ତା କରିଥିଲି ଯେ ଠାକୁର ମାନେ ମୋ ପ୍ରସ୍ତାବକୁ ଏହି ଢଙ୍ଗରେ ସମର୍ଥନ କରୁଛନ୍ତି । ଏତକ ଚିନ୍ତା କରିବା ପରେ ମୁ ବି ହସି ପକାଇଥିଲି । ମୋର ଉତ୍ସାହ ଦ୍ୱିଗୁଣିତ ହୋଇଗଲା । କିପରି ରାତି ଆସିବ ତାରି ପ୍ରତିକ୍ଷାରେ ମୁ ଉଦ୍‌ଗ୍ରୀବ ରହିଥାଏ । ଯଥା ସମୟରେ ରାତି ଆସିଲା — ମୁ ମୋର କର୍ତ୍ତବ୍ୟରେ ଲାଗି ପଡ଼ିଲି । ସେଦିନ ରାତିରେ ମୁ ଖାଇ ନ ଥିଲି । ପେଟକୁ ଖାଲି ରଖିଥାଏ । ଗୋଟିଏ ବଖରା ଘର । ଭିତରେ ରହି ଭିତରପଟୁ ସିଙ୍କୁଳା ଲଗାଇ ଦେଲି । ଲଣ୍ଠନଟାଏ ଜଳୁଥାଏ । ଭିତରେ ମସିଣାଟାଏ ପକାଇ ତା ଉପରେ ବସି ପଡିଲି ଆଉ ଅଫିମତକ ହାତରେ ଧରି ହେ ଭଗବାନ କହି ପାଟିରେ ପକାଇଦେଲି । ସାଙ୍ଗେ ସାଙ୍ଗେ ଗିଳି ହୋଇଗଲା ମଧ୍ୟ । ତାପରେ ଆସିଲା କାନ୍ଦ । ଆଖିରୁ ଅନବରତ ଗଡ଼ି ପଡୁଥାଏ ଲୁହ ଆଉ ପେଟ ଭିତରୁ ଏକ ପ୍ରକାର କୋହ । କୋହର ମାତ୍ରା ଏତେ ବେଶୀ ହେଲା ଯେ ଅଫିମତକ ବାନ୍ତି ହୋଇ ତଳେ ପଡଗଲା । ତଳୁ ସାଉଣ୍ଟି ଆଣି ପୁଣି ଉଦରସ୍ଥ କଲି । ଏପରି ଭବେ କେତେଥର ସେପରି ଘଟିଛି ମୋର ଏବେ ଆଉ ମନେନାହିଁ । ପରିଣାମରେ ମୁ ଶୋଇଗଲି । ସକାଳୁ ଉଠି ଦେଖେ ଯେ ମୁ ମରିନାହିଁ, ବଞ୍ଚିଛି । ଦେଖିଲି ଅଫିମ ତକ ତଳେ ପଡ ରହିଛି । ଲଣ୍ଠନଟା କଳା ପଡ ମିଞ୍ଜି ମିଞ୍ଜି ହୋଇ ଜଳୁଛି ।

ଅଫିମ ତକ ସାଉଣ୍ଟି ଦେଇ ଗୋଟିଏ ସ୍ଥାନରେ ଲୁଚାଇ ଦେଲି । ଲଣ୍ଠନଟାକୁ ଲିଭାଇ ଦେଇ କବାଟ ଖୋଲି ତଳେ ବସି ରହିଲି । ଚିନ୍ତାକଲି ମଲି ନାହିଁ କାହିଁକି ? ଆଶ୍ଚର୍ଯ୍ୟ କଥା ଅଫିମ ପେଟ ଭିତରୁ ମୋ ଅଜାଣତରେ ବାହାରି ଆସିଛି ଆଉ ମୁ ଶୋଇ ଯାଇଛି । ତାହାହେଲେ ଭଗବାନ ମୋତେ ବଞ୍ଚାଇବାକୁ ଏ ଲୀଳା କଲେ । କାହିଁ ମୋ ପକ୍ଷରୁତ ଏହିପାଇଁ କୌଣସି ତ୍ରୁଟୀ ମୁ କରି ନ ଥିଲି । ତେବେ ମୋର ଉଦ୍ୟମ ଆଜି ବ୍ୟର୍ଥତାରେ ପର୍ଯ୍ୟବସିତ ହେଲା କାହିଁକି ? ଏହା ଦୈବୀ ଲୀଳା । ମୁ ମରିବାକୁ କୃତ ସଂକଳ୍ପ ହୋଇ ମଧ୍ୟ ଯେତେବେଳେ ମରି ପାରିଲି ନାହିଁ ମୋତେ ଅଲବତ୍ ବଞ୍ଚିବାକୁ ହେବ । ଜୀବନ ସଂଗ୍ରାମରେ ପଳାୟନପନ୍ଥୀ ହେବା ଏଣିକି ମୋ ପକ୍ଷରେ କାପୁରୁଷତା । ଏତକ ଭାବି ସେଦିନ ପୋଖରୀଆଡେ ଚାଲି ଯାଇଥିଲି ।

× × × × ×

ମୋର ସତର ବର୍ଷ ଜୀବନ କାଳ ମଧ୍ୟରେ ୩ ଥର ମୃତ୍ୟୁ ସଙ୍କଟ ଦେଖା ଦେଇଥିଲା । ୧ମତଃ ନିଜ ଜନନୀ କର୍ତ୍ତୃକ ଭ୍ରୂଣନଷ୍ଟ ଚେଷ୍ଟା । ସେଥର ଜନୈକା ମହିଳାଂକ ଅପ୍ରତ୍ୟାଶିତ ଆଗମନ ଦ୍ୱାରା ବନ୍ଦ ହୋଇଯିବା । ୨ୟ ଥର ମୋର ବୟସ ୬ ମାସ ବେଳେ [redacted] [redacted] ମୋ ମୁହଁରେ ଟେକାଏ ଅଫିମ ଦେଇ ମାରି ଦେବାର ଅପଚେଷ୍ଟା ଏବଂ ଉକ୍ତ ସଂକଟରୁ ଦୈବୀ କ୍ରମେ ବଞ୍ଚିଯିବା । ୩ୟତଃ ଶୈଶବ କାଳରୁ ପିତୃମାତୃ ହୀନ ଏବଂ ତାହା ଏକ ଦିନରେ ଘଟିବା ଦ୍ୱାରା ମାତୃସ୍ତନ୍ୟ ପାନରୁ ବଞ୍ଚିତ ହେବା । ଚତୁର୍ଥତଃ ନାନାବିଧ ଅଖାଦ୍ୟ ଖାଇ ଶିଶୁ ଅବସ୍ଥାରୁ ତରୁଣ ଅବସ୍ଥାରେ ଦୀର୍ଘ ଦିନ ଧରି ମୁମୂର୍ଷୁ ଅବସ୍ଥାରେ କାଳ ଯାପନ କରିବା ଆଦି ନାନାବିଧ ଘାତପ୍ରତିଘାତ ମଧ୍ୟରେ ବଞ୍ଚି ରହି ଆସିବା ପରେ ମଧ୍ୟ ନିଜ ଚେଷ୍ଟାରେ ଆତ୍ମହତ୍ୟା କରିବାକୁ ଯିବା ଏବଂ ତହିରେ ମଧ୍ୟ ବିଫଳତା ଘଟିବା ଆଦି ବିଷୟ ଚିନ୍ତା କଲେ ମୋର ସୃଷ୍ଟି ମୂଳରେ ଯେ ଅକଥନୀୟ ଯାତନା, ଦୁଃଖ, କଷ୍ଟ, ନିର୍ଯ୍ୟାତନା ଆଦି ଭୋଗିବା ବିଧାତା କର୍ତ୍ତୃକ ଉଦ୍ଦିଷ୍ଟ ଥିଲା ତାହା ଚିନ୍ତାକରି ନିଜ ମନରେ ସାହସ ସଞ୍ଚୟ କରିବାକୁ ସ୍ଥିର କଲି । କୌଣସି କାର୍ଯ୍ୟର ବିଫଳତାରୁ ଯେ ସଫଳତା ଜନ୍ମ ନିଏ, କାପୁରୁଷତାରୁ କ୍ରମେ ପୌରଷେୟତା ରୂପ ନିଏ, ଅନିଚ୍ଛାରୁ ଇଚ୍ଛାର ପ୍ରବଳ ଉଦ୍ୟମ ଆବିର୍ଭାବ ଘଟେ ଏହାହିଁ ମୋର ଜୀବନ ପ୍ରାକ୍‌କାଳରୁ ମୁ ସ୍ପଷ୍ଟ ରୂପେ ହୃଦୟଙ୍ଗମ କରିପାରିଲି ।

# ମରଣ ପ୍ରଚେଷ୍ଟାର ପରବର୍ତ୍ତୀ ଜୀବନ ତଥା ଶାରୀରିକ ପୁର୍ନଗଠନ

ମୋତେ ମାରିଦେବାକୁ ଯାଇ ବ୍ୟକ୍ତି ବିଶେଷ, ପ୍ରକୃତି ତଥା ପରିସ୍ଥିତି ଯେତେବେଳେ ବ୍ୟର୍ଥ ହେଲା ସେତେବେଳେ ମୁ ସ୍ୱୟଂ ନିଜକୁ ବିନାଶ କରିବାକୁ ଚେଷ୍ଟିତ ହେଲି । ପରିଣାମରେ ମୁ ବି ଶେଷରେ ତହିରେ ହାର ମାନିଲି । ଏତେ କଥା ସତ୍ତ୍ୱେ ମୁ ସ୍ୱତଃ ହୃଦୟଙ୍ଗମ କଲି ଯେ ମୋତେ ଏହି ସଂସାରରେ ସୁଖ ହେଉ ବା ଦୁଃଖ ହେଉ, ଅପମାନ ହେଉ ଅଥବା ସମ୍ମାନ ହେଉ ଅଲବତ୍ ବଞ୍ଚି-ବାକୁ ହେବ । ତେଣୁ ଦେଶ ଗୁଡକ ଯେପରି ଯୁଦ୍ଧୋତ୍ତର ପୁନର୍ଗଠନ ନିମିତ୍ତ ଲାଗି ପଡନ୍ତି ମୁ ମଧ୍ୟ ସେହିପରି ମୋର ମରଣ ପରବର୍ତ୍ତୀ ଶରୀରର ଯତ୍ନ ନିମିତ୍ତ ଶରୀ-ରରେ ମାନସିକ ତଥା ଦୈହିକ ଶକ୍ତି ସଞ୍ଚୟ ସକାଶେ ତାପରେ ଲାଗି ପଡ଼ିଥିଲି । ମୁ ମନେକଲି ପ୍ରତ୍ୟେକ କ୍ଷେତ୍ରରେ ମଣିଷ ନିର୍ଭୀକ ନ ହେଲେ ସେ କୃତକାର୍ଯ୍ୟ ହୋଇ ପାରିବ ନାହି ।

କୌଣସି କଥାକୁ ଖାତିର ନ କରି ତାପରେ ମୁ ସମ୍ପୂର୍ଣ୍ଣ ବେପରୁଆ ଭବେ ଚଳିବାକୁ ଚେଷ୍ଟା କଲି । ଦେହକୁ ମଜବୁତ୍ କରିବା ପାଇଁ ପ୍ରତିଦିନ ଦଣ୍ଡ, ବୈଠକ, ସନ୍ତୁଆଁ, ସନ୍ତରଣ ଆଦି ବ୍ୟାୟାମ ରୀତିମତ କରିବାରେ ଲାଗି ପଡ଼ିଲି । ବ୍ୟାୟାମ ସଙ୍ଗକୁ ସତିରେ ଭିଜା ଚଣା ସକାଳୁ ଗୁଡ ସହିତ ଖାଇ ଶିଖିଲି । ଏପରି ଭବେ ୨ ବର୍ଷ ଯାଏ ଏହି ଅଭ୍ୟାସ ରହିବା ଫଳରେ ମୋର ସ୍ୱାସ୍ଥ୍ୟରେ ପ୍ରଚୁର ଉନ୍ନତି ଦେଖା ଦେଇଥିଲା । ଦେହରେ ଅମାପ ଶକ୍ତି ଓ ସ୍ଫୁର୍ତ୍ତୀମଧ୍ୟ ଜାତ ହେଲା । ଯୋଗକୁ ସେତେବେଳେ ମୋତେ ସେହିପରି ଏକ ବନ୍ଧୁ ମିଳିଗଲେ । ତାଙ୍କର ନାମ ଅର୍ଜ୍ଜୁନ ମୋହନ ହୋତା । ଘର କୋଲାବିରା । ତାଙ୍କର ବି ଭରି ହୃଷ୍ଟପୁଷ୍ଟ ଶରୀର । ଉଭୟଂକ ଯୋଗ ମଣିକାଞ୍ଚନ ସଦୃଶ ହେଲା ପରି ଜଣାଗଲା । ତାଂକ ସହ ମିଶି ଉଭୟେ ଦାଡ଼ଘିରା, ମୁଦ୍‌ଗରବୁଲା, କୁସ୍ତି କଶରତ୍ ଆଦି କରିବାରେ ଲାଗିଲୁ । ମୋ ଠାରୁ ସେ ଟିକିଏ ଉଚ୍ଚ ଏବଂ ବଳିଷ୍ଠ । କୁସ୍ତି କଲାବେଳେ ମୁ ହାରି ଯାଏ ତାଂକ ନିକଟରେ । ହେଲେ ପ୍ରଥମେ ଅଧଘଣ୍ଟାଏ ପରେ ଘଣ୍ଟାଏ ଯାଏ ମୁ ତାଂକ ସହ ଲଢ ପାରୁଥାଏ । ବର୍ଷକ ପରେ ମୁ ତାଂକର ପୂର୍ଣ୍ଣ ସମକକ୍ଷ ହୋଇ ଯାଇଥିଲି ।

ନିଜର ବଳର ପରଖ ପାଇଁ ଆମେ ଦୁହେଁ ସେତେବେଳେ ଦିନକୁ ରେମଣ୍ଡା ଗାଁର ଗୋଟିଏ ପଡାକୁ ସଂଧ୍ୟା ସମୟରେ ଯାଇ ପଡାର ଯୁବକ ମାନଙ୍କୁ

ବାଡ ଘିଷ୍ଣ ପାଇଁ ଆହ୍ୱାନ କରୁଥାଉଁ । ଆଶ୍ଚର୍ଯ୍ୟ କଥା ଏପରି ଭାବେ ସମସ୍ତ ଗାଁଟି ପାକର ଲୋକଙ୍କୁ ଆମେ ବାଡ ଟଣାରେ ପରାସ୍ତ କରି ଦେଇଥିଲୁ । ରେମଣ୍ଡା ଗ୍ରାମରୁ କ୍ରମେ ଭେଇପାଲି, ଡୁଙ୍ଗୁରିପାଲି, ମହୁଲପାଲି, ଝରପାଲି, ଧୂଆପାଲି, ଲୁପୁରସିଂହା ପ୍ରଭୃତି ଗ୍ରାମ ମାନଙ୍କୁ ଯାଇ ବାଡଘିଷ୍ଣ ଓ କୁସ୍ତି ପାଇଁ ଯୁବକ ମାନଙ୍କୁ ଆହ୍ୱାନ କରିଥିଲୁ । ଏହି ଦୁଇ ପ୍ରକାର ବଳ ପ୍ରଦର୍ଶନ କ୍ରିୟାରେ ଯୋଗ ଦେବା ପାଇଁ ପ୍ରତି ପଡା ତଥା ଗ୍ରାମ ମାନଙ୍କରୁ ୧୫/୨୦ ଜଣ କରି ଯୁବକ ଉତ୍ସାହର ସହିତ ଯୋଗଦାନ କରୁଥିଲେ । ରେମଣ୍ଡା ଗ୍ରାମର ୭ ଜଣ ବ୍ୟକ୍ତିଙ୍କ ବ୍ୟତୀତ ଆଉ ସମସ୍ତଙ୍କୁ ଏବଂ ଉଲ୍ଲିଖିତ ମଫସଲ ଗ୍ରାମର ସମସ୍ତ ଯୁବକଙ୍କୁ ମୁଁ ପରାସ୍ତ କରି ଦେଇଥିଲି । ରେମଣ୍ଡାର ଯେଉଁ ୭ ଜଣଙ୍କୁ ମୁଁ ପାରି ନ ଥିଲି ଅର୍ଜୁନ ବାବୁ ସେମାନଙ୍କୁ ଅକ୍ଳେଶରେ ପରାସ୍ତ କରି ଦେଇଥିଲେ ।

ରେମଣ୍ଡାର ଖଡଗ ଜାତିର ପହିଲମାନ ମାନଂକ ସହ କିନ୍ତୁ ଏହା ଘଟି ନ ଥିଲା । ସେମାନେ ଏହି କାର୍ଯ୍ୟରେ ଯୋଗଦାନ କରି ନ ଥିଲେ । ଆମ୍ଭେ ମଧ୍ୟ ତାଙ୍କୁ ଆହ୍ୱାନ କରିବାକୁ ସାହସୀ ହୋଇ ନ ଥିଲୁ ।

୧୯୩୩ ସାଲରେ ମୁଁ ବରଗାଁ ସ୍କୁଲକୁ ପରିବର୍ତ୍ତିତ ହୋଇ ଯାଇଥିଲି । ଜୁଲାଇ ମାସ । ବରଗାଁ ଗ୍ରାମଟି ଜିରା ନଈ କୂଳରେ ଅବସ୍ଥିତ । ରେମଣ୍ଡାରୁ ବରଗାଁକୁ ଯିବା ବାଟରେ ମୋତେ ୨ଗୋଟି ନଦୀ ଅତିକ୍ରମ କରିବାକୁ ପଡୁଥାଏ । ବର୍ଷା ଦିନ । ନଈବଢ଼ ହେଉଥାଏ । ଏହି ସୁବିଧାରେ ମୁଁ ବରଗାଁରେ ଥିବାବେଳେ ନଈ ପହଁରା ଶିଖି ଯାଇଥିଲି । ଅତି ପ୍ରବଳ ନଈବଢ଼ରେ ମଧ୍ୟ ମୁଁ କାହାରି ବିନା ସାହାଯ୍ୟରେ ସନ୍ତରଣ କରି ନଈ ପାର ହୋଇ ଯାଉଥାଏ । ୧୯୩୪ ସାଲରେ ମୁଁ ବରଗଡରେ ଟ୍ରେନିଂ ପଢୁଥିବା ବେଳେ ଥରେ ଜିରା ନଈ ଅତି ପ୍ରବଳ ଭାବରେ ବଢ଼ିଥିଲା । ବନ୍ଧା ଯାଇ ଥିବା ପୋଲ ଉପରୁ ପ୍ରାୟ ହାତେ ଅଂଶ ଛାଡ଼ ପାଣି ବହୁଥାଏ । ଆମେ ଗୁରୁ ଛାତ୍ରଗଣ ନଈ ବଢ଼ ଦେଖିବାକୁ ଅନୁମତି ନେଇ ଦେଖି ଯାଇଥିଲୁ । ନଈବଢ଼ ଦେଖୁଁ ଦେଖୁଁ ପହଁରିବା ପାଇଁ ମୋ ମନରେ ଆଗ୍ରହ ଜାତ ହେଲା । ମନିଟର ବିଦ୍ୟାଧର ବାବୁଙ୍କୁ କହି ମୁଁ ପୋଲର ୧୪ ନମ୍ବର ଫାଙ୍କରେ ଉପରୁ ଡେଇଁ ପଡ଼ ପହଁରି ଯାଇଥିଲି ।

୧୯୨୮ ସାଲରେ ମୋର ବାଲ୍ୟ ବିବାହ ହୋଇଥିଲା ଏବଂ ୧୯୩୪ ସାଲରେ ମୁଁ ଟ୍ରେନିଂ ପଢୁଥିବା ବେଳେ ମୋର ଦ୍ୱିତୀୟ ବିବାହ (ଘୁଆଣି) ହୋଇଥିଲା । ମୁଁ ଯାହାଙ୍କୁ ବିବାହ କରିଥିଲି ତାଙ୍କ ସହ ମନ ଅମେଳ ହେବାରୁ ସେ ଯାଇ ତାଙ୍କ ବାପ ଘରେ ରହୁଥିଲେ ।

୧୯୩୪ ସାଲରେ ବରଗଡ ଏଲିମେଣ୍ଟାରୀ ଟ୍ରେନିଂ ସ୍କୁଲରେ ତାଲିମ ପାଇବା ସକାଶେ ନାମ ଲେଖାଇଲି । ପଣ୍ଡିତ ଜଗଦୀଶ ରଥ ହେ. ପ. ଥାଆନ୍ତି । ସେ ଜଣେ ବିଦ୍ୱାନ ବ୍ୟକ୍ତି । ତାଙ୍କ ଅଧୀନରେ ୧୧ ମାସ କଟାଇବାକୁ ପଡ଼ିଥିଲା । ବିଦ୍ୟାଳୟ ପରିଚାଳନା ଦିଗରେ ତାଙ୍କର ଯେପରି ଦକ୍ଷତା ଥାଏ, ଶୃଙ୍ଖଳା ରକ୍ଷା ସକାଶେ ମଧ୍ୟ ସେ ଅତି କଠୋର ନୀତି ଅବଲମ୍ବନ କରି ଚଳୁଥାନ୍ତି । ତାଙ୍କୁ ଶିକ୍ଷାଗୁରୁ ରୂପେ ପାଇ ମୁଁ ନିଜକୁ ଧନ୍ୟ ମନେ କରୁଥିଲି ।

୧୯୩୪ ସାଲ ପୂର୍ବରୁ ଟ୍ରେନିଂ ଛାତ୍ରମାନେ ସେମାନଙ୍କର ଅଧ୍ୟାପନା ପରୀକ୍ଷା ସମ୍ବଲପୁର ଜିଲା ସ୍କୁଲକୁ ଯାଇ ଦେଉଥାନ୍ତି । ୧୯୩୪ ସାଲରୁ ତାହା ବନ୍ଦ ହୋଇଗଲା । ତେଣୁ ଆମେ Teaching Examination ବରଗଡରେ ଦେଇ ଥିଲୁ । ଜିଲା ସ୍କୁଲରେ ସେଠା ହେ. ମା. ପରୀକ୍ଷକ ରହୁଥିଲେ । ତାହା ବନ୍ଦ ହୋଇ ଯାଇ ଜିଲ୍ଲାରେ ଥିବା ଦୁଇଗୋଟି ଟ୍ରେନିଂ ସ୍କୁଲର ହେ. ପ. ଦ୍ୱୟ, ଡ.ଇ. ତଥା ସ. ଇ. ଏପରି ୪ ଜଣ ବ୍ୟକ୍ତି ଅଧ୍ୟାପନା ପରୀକ୍ଷା କରିଥିଲେ । ଜଣେ ଛାତ୍ରର ଶିକ୍ଷାଦାନରେ ବିଭିନ୍ନ ମୁହୂର୍ତ୍ତରେ ୪ ଜଣ ଯାକ ଯାଇ ମୂଲ୍ୟାଙ୍କନ କରୁଥାନ୍ତି । ୪ ଜଣ ଯାକର ମୋଟ୍ ନମ୍ବରର ହାରହାରି ଯାହା ପଡୁଥାଏ ତାକୁ ହିଁ ଗୋଟିଏ ଛାତ୍ରର ଶିକ୍ଷାଦାନ ପରୀକ୍ଷାର ମାର୍କ ରୂପେ ଗୃହୀତ ହେବାର ବ୍ୟବସ୍ଥା ଖଞ୍ଜା ଯାଇଥିଲା ।

ଆମର Teaching ପରୀକ୍ଷା ଏବଂ ଅରେଲ ପରୀକ୍ଷା (ମେପ ପଏଣ୍ଟିଙ୍ଗ, ଡ୍ରଲ ଏବଂ ଗଣିତ) ମଧ୍ୟ ସେମାନେ କରଇଥିଲେ । ଡ୍ରିଲ ପରୀକ୍ଷା ଜର୍ଜ ହାଇସ୍କୁଲର ଡ୍ରିଲ ଶିକ୍ଷକ ଅଦ୍ୱୈତ ଚରଣ ଚମ୍ପତରାୟ କରିଥିଲେ ।

ଡ. ଇ. ମୌଲବୀ ଫରକନ ଅଲ୍ଲିବେଗ, ରମ୍ଭେଇ ଟ୍ରେନିଂ ସ୍କୁଲ ହେ. ପ. ମହମ୍ମଦ ଜାନ ସା ବରଗଡ ଟ୍ରେନିଂ ସ୍କୁଲ ହେ. ପ. ଜଗଦୀଶ ରଥ ଏବଂ ବରଗଡ ସ୍କୁଲ ସ: ଇ: ଅବଦୁଲ ରସିଦ୍ ଖାଁ ଏହି ଚାରିଜଣ ଶିକ୍ଷାଦାନ ସମ୍ପର୍କରେ ଯେଉଁ ମାର୍କ ପ୍ରଦାନ କରିଥିଲେ ସେଥିରୁ ଜଣାଗଲା ଯେ ମୁଁ ଉଭୟ ଟ୍ରେନିଂ ସ୍କୁଲ ଛାତ୍ର ମାନଙ୍କ ଠାରୁ ସର୍ବୋଚ୍ଚ ନମ୍ବର ରଖିଥିବା କଥା ଆମ ଟ୍ରେନିଂ ସ୍କୁଲ ହେ: ପ: ମହୋଦୟ ଆମ ଶ୍ରେଣୀରେ ସମସ୍ତଂକ ସମକ୍ଷରେ ଘୋଷଣା କରି ଦେଇଥିଲେ ।

ଲିଖିତ ପରୀକ୍ଷା ସମ୍ବଲପୁର ଜିଲ୍ଲା ସ୍କୁଲରେ ହୋଇଥିଲା । ସେଥିରେ ମଧ୍ୟ ମୁଁ ଉଚ୍ଚ ନମ୍ବର ରଖି ପାସ କରିଥିବା କଥା ଆମ ସ୍କୁଲ ସ: ଇ: ଗୌରହରି ପଟ୍ଟନାୟକ ସୋହେଲାରେ ମୋତେ କହିଥିଲେ ।

ଟ୍ରେନିଂ ପରେ ମୁ ଦେଶଭଟଲି ସ୍କୁଲରେ ହେ. ପ. ରୂପେ ନିଯୁକ୍ତି ପାଇ କାର୍ଯ୍ୟ କରିଥିଲି । ତାପରେ ମୋତେ ସୋହେଲା ସର୍କଲର ବେହେରପାଲି ସ୍କୁଲକୁ ହେ. ପ. ରୂପେ ପରିବର୍ତ୍ତନ କରା ଯାଇଥିଲା । ଏହି ସମୟରେ S. Ray ନାମରେ ଜଣେ ଡଭିଜନାଲ ସ୍କୁଲ ଇନ୍‌ସ୍ପେକ୍ଟର ଥାନ୍ତି । ଓଡଶାରେ ସେତେବେଳେ ୫ଟି ଜିଲ୍ଲା ଥାଏ । ପାଞ୍ଚୋଟି ଜିଲ୍ଲା ପାଇଁ ଜଣେ ଇନ୍‌ସ୍ପେକ୍ଟର । ହାଇସ୍କୁଲ ଗୁଡ଼କ ଦେଖିବା ତାଙ୍କର ମୁଖ୍ୟକାର୍ଯ୍ୟ ଥିଲେ ମଧ୍ୟ ଗେଡ କଡେ କଡେ ପଡ଼ୁଥିବା ସବୁ ପ୍ରକାର ସ୍କୁଲ ସେ ପରିଦର୍ଶନ କରୁଥାନ୍ତି । ତାଙ୍କର ପରୀକ୍ଷା ପ୍ରଣାଳୀ ଥାଏ ଅତ୍ୟନ୍ତ କଠିନ । ଯେଉଁ ଶିକ୍ଷକଙ୍କ କାର୍ଯ୍ୟରେ ସେ ସନ୍ତୁଷ୍ଟ ହେଉ ନ ଥାନ୍ତି ତାଙ୍କୁ ୨୪ ଘଣ୍ଟା ମଧ୍ୟରେ ଟ୍ରାନ୍‌ସଫର, ମାସକର ଦରମା ଜରିମାନା କିମ୍ବା କାର୍ଯ୍ୟରୁ ଡ଼ସମିସ୍ ମଧ୍ୟ କରି ଦେଉଥାନ୍ତି । ସେଥିପାଇଁ ଡ: ଇ: ତଥା ସ: ଇ: ମାନେ ବିଶେଷ ଚିନ୍ତା କରି ଉପଯୁକ୍ତ ଶିକ୍ଷକ ମାନଙ୍କୁ ବାଛି କରି ଗେଡ କଡେ କଡେ ଥିବା ସ୍କୁଲ ମାନଙ୍କରେ ରଖିଥାନ୍ତି । ବୋଲିବା ବାହୁଲ୍ୟ ଯେ ମୋର ବେହେରପାଲି ସ୍କୁଲରେ ରହିବାର ୬ ମାସ ପରେ ମୋତେ ଘେଁସ ସ୍କୁଲକୁ ପରିବର୍ତ୍ତନ କରି ନିଆ ଯାଇଥିଲା ।

ଘେଁସ ସ୍କୁଲରେ ମୁ ଥିବା ବେଳେ S. Ray ଦୁଇଥର ଏବଂ ଡାଇରେକ୍ଟର Mr. H. D. P. (ଇଂରଜ) ଥରେ ପରିଦର୍ଶନ କରିବାକୁ ଆସିଥିଲେ । ସୌଭଗ୍ୟବଶତଃ ତାଂକ ପରିଦର୍ଶନ ଭଲରେ ଭଲରେ କଟି ଯାଇଥିଲା ।

## ଡାଇରେକ୍ଟର Mr H. D. P. ସାହେବଙ୍କ ପରିଦର୍ଶନ ଢଙ୍ଗ

ଡ଼ାଇରେକ୍ଟର ଡ: ପି: ସାହେବ ଇଂଲଣ୍ଡ ବାସୀ । ଉଚ୍ଚ ମଣିଷ । ଗୋରା ଶରୀରକୁ କଳା ଡ୍ରେସ । ଧଳା ଟୋପି । S. Ray ଚିକେ ତାଙ୍କର ଲୋକ । ତାଙ୍କ ସହ ପୁଣି ଡ: ଇ: ମୌଲବୀ ଫରକନ ଅଲି ବେଗ୍ । ସାହେବ ସ୍କୁଲକୁ ନ ଆସିବା ଆଗରୁ ଡ: ଇ: ବେଗ୍ ସାହେବ, ସ: ଇ: ଗୌରହରି ପଟ୍ଟନାୟକ ସ୍କୁଲକୁ ଆସି ଆମ୍ଭମାନଙ୍କୁ ଆବଶ୍ୟକୀୟ ଟ୍ରେନିଂ ଦେବାରେ ଲାଗି ପଡଲେ । ଆମ୍ଭେ ତ ଧୋତି ପିନ୍ଧଥାଉଁ । ଧଳା ହାଫ୍ କମିଜ ଶିକ୍ଷକମାନେ ପିନ୍ଧବେ ବୋଲି ଆଗରୁ ସାରକ୍ୟୁଲାର ଜାରି କରା ଯାଇଥାଏ ।

ବେଗ ସାହେବ ଆସି ମୋତେ କହିଲେ ମାଲ କଚ୍ଛା ମାର । ମୁ ମାଲ କଚ୍ଛା ମାରି ଠିଆ ହେଲି । ତାପରେ କହିଲେ ତୁମ୍ଭର ଦୁଇ ପକେଟରେ ୨ଟି

ରୁମାଲ ରହୁ ଏବଂ ଚକଖଡ଼ ଦୁଇଖଣ୍ଡ ଲେଖା ପକେଟରେ ଥାଉ । ଆମେ ତାହା କଲୁ । ମନେରଖ, ସାହେବ ଆସିଲେ କୌଣସି ଶିକ୍ଷକ ବାରଣ୍ଡାକୁ ଆସିବ ନାହିଁ କିମ୍ବା ସାହେବଙ୍କୁ ଦେଖି କେହି ସଲାମ କରିବ ନାହିଁ । ପିଲାଏ ମଧ୍ୟ ଠିଆ ହେବେ ନାହିଁ କିମ୍ବା ନମସ୍କାର କରିବେ ନାହିଁ । ତୁମ୍ଭେମାନେ Method ଅନୁଯାୟୀ ଠିଆ ହୋଇ ପଢାଉ ଥିବ । ସାହେବ ଆସିଲେ ମଧ୍ୟ ତାଙ୍କ ଆଡକୁ କେହି ବି ଅନାଇବ ନାହିଁ । କାମ କରି ଯାଉଥିବ । ବେଶ୍ ଏତିକି କହି ସେ ଚାଲିଗଲେ ଏବଂ ସ୍କୁଲ ବଗିଚାରେ ବୁଲିବାରେ ଲାଗିଲେ । ଆମ୍ଭେମାନେ ସତର୍କ ରହି ନିଜ ନିଜ କ୍ଲାସରେ ପ୍ରସ୍ତୁତ ଥାଉଁ ।

କିଛି ସମୟ ପରେ ମଟର ଆସିବାର ଶବ୍ଦ ଶୁଣାଗଲା । ଶିକ୍ଷକ ମାନେ ତାପରେ ପାଠ ପଢାରେ ଲାଗି ପଡ଼ିଲୁ । ମୁଁ ଯେଉଁ କୋଠରୀରେ ଥାଏ ଠିକ୍ ସେହି କୋଠରୀ ବାରଣ୍ଡାରେ ସାହେବ ଆସି ଠିଆ ହେଲେ । ପିଲାମାନେ ତଳେ ବସିଥାନ୍ତି । ପାଠପଢା ଚାଲିଥାଏ । ଏତିକିବେଳେ ହଠାତ୍ ସାହେବ ବାରଣ୍ଡାରୁ ଗୋଟିଏ ଡ଼ିଆଁ ମାରି ଶ୍ରେଣୀ ଭିତରେ ଯାଇ ବସିଗଲେ । ଆଉ କହିଲେ ତୁମ୍ଭେ ପିଲାମାନେ କଣ କରୁଛ ? ଯୋତାର ଧଡାକ୍ ଶବ୍ଦ ଶୁଣି ଏବଂ ସେ ଝାମ୍ପି ମାରି ବସି ପଡ଼ବାର ଦେଖି ସବୁ ପିଲା ଇୟେ ବୁଆରେ କହି ଶ୍ରେଣୀରୁ ପଳାଇ ଗଲେ ଆଉ ସ୍କୁଲର ଖେଳ ପଡ଼ିଆରେ ଯାଇ ଠିଆ ହୋଇ ସାହେବ ଆଡକୁ ଅନାଇ ଭୟରେ ଥରିବାକୁ ଲାଗିଲେ । ସାହେବ ସେମାନଙ୍କୁ ଗୋଡାଇ ଗଲେ ଏବଂ ତୁମ୍ଭେମାନେ ଆଠ; ଆଠ କହିବାରେ ଲାଗିଥାନ୍ତି । ସାହେବ ଖେଳ ପଡ଼ିଆକୁ ଯିବାରୁ ପିଲାଏ ସେଠି ଯାହା ଛିଡା ହୋଇଥିଲେ ଆହୁରି ଦୂରକୁ ପଳାଇଲେ । ସାହେବ ପଛେ ପଛେ ମୁଁ ବି ଗଲି । ମୁଁ ବି ପିଲାଙ୍କୁ ଡାକିଲି କିନ୍ତୁ ପିଲାଏ ଆଉ ଆସିଲେ ନାହିଁ । ସାହେବ ଫେରି ଆସିଲେ । S. Ray ତାପରେ ସାହେବଙ୍କୁ କହିଲେ ଯେ ଇୟେ ତ ଆଉ ଇଂଲଣ୍ଡର ପିଲା ନୁହନ୍ତି ଯେ ଆପଣଙ୍କ ସହିତ ଖେଳିବେ ? କଥା ହେବେ ? ଆପଣଙ୍କୁ ଦେଖି ସମସ୍ତେ ଡରି ପଳାଇଲେ । ସାହେବ ଏହା ଶୁଣି ହୋ, ହୋ କରି ହସି ଉଠିଥିଲେ । ସ. ଇ. ଙ୍କୁ ହେ. ପ. କହିଲେ ଯେ ଆଜ୍ଞା ବାକି ପିଲାଏ ବି ପଳାଇବେ । S. Ray ତାପରେ ସାହେବଙ୍କୁ ସବୁ କଥା ବୁଝାଇ ଦେଲେ ଯେ ଆପଣଙ୍କୁ ଦେଖି ପିଲାଏ ଡରୁଛନ୍ତି । ତାହା ବୁଝି ସାହେବ ଟିକିଏ ଚିନ୍ତା କରି କହିଲେ ଯେ ସବୁ ପିଲାଙ୍କୁ ଛୁଟି କରିଦିଅ । ସବୁ ପିଲାଙ୍କୁ ତାପରେ ଆମେ ଛାଡ଼ ଦେଇଥିଲୁ । ସାହେବ ତାପରେ ବଗିଚା, ରିଲିଫ୍ ମେପ୍, ହାତକାମ ଆଦି ଦେଖି ପଦ୍ମପୁର ଚାଲି ଯାଇଥିଲେ ।

# ଶିକାରୀ ଜୀବନ

ଘେଁସ ଜମିଦାର ଯୋଗେନ୍ଦ୍ର ସିଂହ ବରିହା ଜଣେ ପୋଖତ ଶିକାରୀ । ତାଙ୍କର ୪୨ ବର୍ଗ ମାଇଲ ବଣ, ଜଙ୍ଗଲ, ପାହାଡ, ପର୍ବତ ଘେରା ଅଞ୍ଚଳ । ୧୯୩୫ ସାଲରେ ତାହା ନିବିଡ ଜଙ୍ଗଲରେ ପରିପୂର୍ଣ୍ଣ ଥାଏ । ଉକ୍ତ ଅଞ୍ଚଳକୁ ଲଗି ଗୋଟିଏ ପଟେ ବୋଡାସମ୍ବର ଜଙ୍ଗଲ ଓ ପର୍ବତ । ଅନ୍ୟପଟେ ୫ଏର୍ ରିଜର୍ଭ ସରକାରୀ ଜଙ୍ଗଲ । ତେଣୁ ସବୁ ଜଙ୍ଗଲ ଅଞ୍ଚଳର ବଣ୍ୟଜନ୍ତୁଙ୍କର ଯାତାୟାତ ସବୁ ଜଙ୍ଗଲ ମାନଙ୍କରେ ଘଟୁଥାଏ ।

ଘେଁସ ଜମିଦାରଙ୍କ ବ୍ୟବହୃତ ବନ୍ଧୁକ ଆଠଗୋଟି ଥାଏ । କେତେବେଳେ କେଉଁ ପ୍ରକାର ବନ୍ଧୁକ ବ୍ୟବହାର କରଯିବ ତାହା ସେ ଜାଣିଥାନ୍ତି । ସେ ନିଜେ ଜଣେତ ଦକ୍ଷ ଶିକାରୀ । ତାଙ୍କର ୪ ଜଣ ଚାକର ମଧ୍ୟ ଶିକାର କରିବାରେ ବେଶ୍ ଧୁରନ୍ଧର । ଶିକାର ନିମିତ୍ତ ଅର୍ଜୁନ ସିଂହ ଓ ଛିନୁ ବରିହା ଏ ଦି ଜଣଙ୍କୁ ପ୍ରତିଦିନ ଜଙ୍ଗଲକୁ ପଠା ଯାଉଥିଲା । ଶିକାର କରିବା ଜମିଦାରଙ୍କ ପ୍ରତିଦିନର କାମ । ତିନି-ଜଣ ଶିକାରୀ ସ୍ୱତନ୍ତ୍ର ରୂପେ ବିଭିନ୍ନ ସ୍ଥାନକୁ ଯାଆନ୍ତି । ତିନିଜଣଙ୍କ ମଧ୍ୟରୁ ପ୍ରତ୍ୟହ ମୃଗ ହେଉ ବା ବରାହ ହେଉ ଗୋଟିଏ ଅଥବା ତତୋଧିକ ଶିକାର କରି ସେମା-ନଙ୍କ ମଧ୍ୟରୁ ଜଣେ ନା ଜଣେ ନିଶ୍ଚିତ ଭବେ ଆଣୁଥାନ୍ତି ।

ଘେଁସରେ ଶିକ୍ଷକତା କଲାବେଳେ ମୋର ବୟସ ଥାଏ କୋଡଏ ବର୍ଷ । ବେଶ୍ ହୃଷ୍ଟପୁଷ୍ଟ ଶରୀର । ଶିକାରୀ ଜୀବନରେ ବଣ ଜଙ୍ଗଲରେ ଜନ୍ତୁ ପଛରେ ଅଥକ ଭବରେ ଗୋଡାଇବାକୁ ପଡେ । ଭେକ ଶୋଷ ଭୁଲି ଯିବାକୁ ହୁଏ ।

ଜଣେ ଶିକାରୀ ହେବା ପାଇଁ ଯେତେଟା ଗୁଣ ଦରକାର ସେ ସବୁ ମୋର ଥାଏ । ଘେଁସକୁ ଯିବାର ୧୫ ଦିନ ପରେ ମୁ ଜମିଦାରଙ୍କ ସାନ୍ନିଧ୍ୟ ଲଭ କଲି । କ୍ରମେ ତାଙ୍କର ପ୍ରିୟଭଜନ ମଧ୍ୟ ହୋଇ ପଡ଼ିଲି । ମୁ ସାଧାରଣତଃ ପଦା ଅଞ୍ଚଳର ଲୋକ । ଆମ ଭେଡେନ ଥାନାରେ ବଣ ଜଙ୍ଗଲ ନାହିଁ । ସେହି ଅଞ୍ଚ-ଳରେ ପହଞ୍ଚି ବଣ ଜଙ୍ଗଲର ଅପୂର୍ବ ସୌନ୍ଦର୍ଯ୍ୟ ରାଶି ଦର୍ଶନ କରି ମୁ ଅଭିଭୂତ ହୋଇ ପଡଲି । ଦିନେ ସନ୍ଧ୍ୟା ସମୟରେ ଜମିଦାରଙ୍କ ସହ ବସି ତାସ ଖେଳୁଥାଉଁ, ଇତ୍ୟବସରରେ ମୁ ମୋର ଅଭିପ୍ରାୟ ତାଙ୍କ ଆଗରେ ବ୍ୟକ୍ତ କରିବାକୁ ଯାଇ କହିଲି ଯେ ଆଜ୍ଞା, ମୋତେ ଆପଣ ଶିକାରକୁ ଗଲବେଳେ ସ୍କୁଲ ସମୟ ବ୍ୟତୀତ ଅନ୍ୟ ସମୟରେ ଡାକିବେ । ମୋର ଅନୁରୋଧ ଶୁଣି ଜମିଦାର ସାହେବ ଖୁସି ହୋଇ ଥିଲେ । ମୁ ଆପଣଙ୍କୁ ନିଶ୍ଚୟ ଡାକିବି ବୋଲି କହିବା ସଙ୍ଗେ ସଙ୍ଗେ ଗୋଟିଏ ଶିକାରୀ ଡ୍ରେସ ତିଆରି କରିବାକୁ ନିର୍ଦ୍ଦେଶ ଦେଲେ ।

ଖାକି କନାର ଗୋଟିଏ ହାଫ୍ ପେଣ୍ଟ ଏବଂ ଗୋଟିଏ ସାର୍ଟ ମୁ ସଙ୍ଗେ ସଙ୍ଗେ ତିଆରି କରି ପକାଇଲି । କିପ୍ ସୁଲ୍ ଯୋତା ହଳେ ମଧ୍ୟ ଯୋଗାଡ କରି ନେଲି । ତାପରେ ଚାଲିଲା ଆମର ଶିକାରୀ ଅଭିଯାନ ।

ଆଗରୁ କହିଛି ଯେ ମୁ ନିର୍ଭୀକ ଥିଲି । କାରଣ ମୋର ମୃତ୍ୟୁ ହୋଇ ପାରେନା । ଏ ବିଷୟ ନେଇ ମୁ ସମ୍ପୂର୍ଣ୍ଣ ନିଃସନ୍ଦେହ ଥାଏ । ତେଣୁ ଶିକାରୀଟିଏ ହେବାପାଇଁ ମୁ ଯେ ଜଣେ ଉପଯୁକ୍ତ ପାତ୍ର ଏ କଥାରେ ଆଉ କୌଣସି ଦ୍ୱିଧା ନ ଥିଲା ।

ଶିକାରକୁ ତାପରେ ଗଲି । ଛିନୁ ବରିହା ମୋତେ ବନ୍ଧୁକ ଚଳାଇବା କୌଶଳ ଶିଖାଇ ଦେଲେ । ଏଥିପାଇଁ ମୋତେ ୧୫ ଦିନ ଯାଏ ହାଟରୁ ଟୋଟା କିଣି ବ୍ୟବହାର କରିବାକୁ ହୋଇଥିଲା । କ୍ରମେ ମୋର ବି ଦକ୍ଷତା ଜନ୍ମିଗଲା ଏବଂ ଜଣେ ସାଧାରଣ ଶିକାରୀ ରୂପେ ମୁ ପରିଚିତ ହୋଇ ଯାଇଥିଲି ।

ମୈଁସ ସ୍କୁଲ ସବୁ ଦିନ ସକାଳୁଆ ହୁଏ । ସକାଳ ୭ଟାରୁ ୧୧ଟା ଯାଏ । ଛୁଟି ପରେ ମୁ ରୋଷେଇ କରେ, ଖାଏ, ଶୁଏ । ସାର ଦ୍ୱିପ୍ରହରଟା, ରାତିଟା ଯାକ ମୋର ଛୁଟି । ସେଥିପାଇଁ ଶିକାର କରି ଯିବାରେ ମୋର କର୍ତ୍ତବ୍ୟରେ କେବେ ତ୍ରୁଟୀ ବିଚ୍ୟୁତି ଘଟିବାର ଅବକାଶ ନ ଥାଏ । ଦ୍ୱିପ୍ରହରେ, ରାତିରେ, ସନ୍ଧ୍ୟାବେଳେ ମୁ ଯେତେବେଳେ ଡକରା ପାଇଛି ସେତେବେଳେ ଜମିଦାରଙ୍କ ସଙ୍ଗେ ଶିକାର କରିବାକୁ ଯାଇଛି ।

ଶିକାର କ୍ଷେତ୍ରରେ ହରିଣ, ଶମ୍ବର ତଥା ବାଘ ଶିକାର କରିବା ନିମିତ୍ତ ଅତ୍ୟନ୍ତ ସତର୍କତା ଲୋଡା । ବାଘ ଶିକାର ସବୁଠୁ ବଳି ବଡ ବିପଦ । ସେ ଯାହା ହେଉ ଜମିଦାରଂକ ସଙ୍ଗେ ଥାଇ ଆମେ ୩।୪ ଗୋଟି ବାଘ ମାରିଥିଲୁ । ସ୍ୱତନ୍ତ୍ର ଭାବରେ ମୁ ଗୋଟିଏ ଭଲୁ ମାରିଥିଲି । ହରିଣଟାଏ ମଧ୍ୟ ମୋର ଗୁଳିରେ ମାରି ପଡିଥିଲା । ଛର୍ଗ ଗୁଳିରେ ମୟୁର, କପୋତ, ହରଡ ପ୍ରଭୃତି ମରିଥିଲେ । ବଣ କୁକୁଡା କେତେଗୋଟି ମଧ୍ୟ ମାରିଥିଲି । ଏହାହିଁ ହେଲା ମୋର ଶିକାରୀ ଜୀବନ । ଏଠାରେ ମୁ ୨ ଗୋଟି ବାଘ ଛୁଆ ପାଳି ରଖିଥିଲି । ଜଣେ ଲୋକ ନିଘଞ୍ଚ ଜଙ୍ଗଲ ଧନୁଛାପରରୁ ସେହି ବ୍ୟାଘ୍ର ଶାବକ ଦୁଇଟିଙ୍କୁ ଧରି ଆଣିଥିଲା । ସେ ଯାହାଙ୍କ ବରଦମତେ ନିଜ ଜୀବନକୁ ବିପନ୍ନ କରି ଛୁଆ ଦୁଇଟିଙ୍କୁ ଆଣି ଦେଇଥିଲା ସେହି ବ୍ୟକ୍ତିଙ୍କର ତା ମଧ୍ୟରେ ମୃତ୍ୟୁ ହୋଇ ଯିବାରୁ ପରିଶେଷରେ ମୋତେ ନେବାକୁ କହିଲା । ମୁ ପ୍ରଥମେ ଦୋ ଦୋ ପାଞ୍ଚ ହେଲି । ଲୋକଟିର ଅଭାବ, ସାହସ କଥା ଚିନ୍ତା କରି ଶେଷରେ ଅନିଚ୍ଛା ସତ୍ତ୍ୱେ ରଖି ପକାଇଥିଲି । ବ୍ୟାଘ୍ର ଶାବକ ଦୁଇଟିଙ୍କ ଦାମ ସେ ମୋ ଠାରୁ ୨ ଟଙ୍କା ୧୨ ଅଣା ଅର୍ଥାତ୍ ୨ ଟଂକା

୨୫ ପଇସା, କିଛି ଷ୍ଟଉଳ ଏବଂ ମୋର ଏକ ପୁରୁଣା କମିଜ ନେଇଥିଲା ।

ବାଘ ଛୁଆ ୨ଟି ମୋଠି ମାହେଯାଏ ରହିଥିଲେ । ପ୍ରଥମେ ସେମାନଙ୍କୁ ମୁଁ ଗୋରସ କିଣି ପିଆଇ ରଖିଥିଲି । ମାସକ ପରେ ଟିକିଏ ବଡ ହେଲେ ଯେମିତି ସେମାନଙ୍କୁ ଅଳ୍ପ ଅଳ୍ପ ମାଂସ ଦେବାକୁ ମତେ ଲୋକେ ପରାମର୍ଶ ଦେଲେ । ସେମା-ନଙ୍କୁ ମାଂସ ଖାଇବାକୁ ଦେବାରେ ମୋ ପକ୍ଷେ ଅସୁବିଧା ନଥିଲା । ଦିନେ ସେ ଦୁଇଟି ଶାବକ ମଧ୍ୟରୁ ଗୋଟିଏ ମୋତେ ଦେଖି ହିଂସା ଆଚରଣ ଦେଖାଇଲା । ତାର ସେ ଉଗ୍ର ସ୍ୱଭାବ ଦେଖି ମୁଁ ଚିନ୍ତିତ ହୋଇ ପଡ଼ିଲି । ଦିନେ ସକାଳୁ ଉଠି ମୁଁ ସେମାନଙ୍କୁ ଫିଟାଇ ଦେଇ ମୋ କୋଠିରେ ଛାଡ଼ ଦେଇଥିଲି । ସେଥିରୁ ଗୋଟିଏ ଆସି ମୋର ପାଦକୁ କାମୁଡ଼ ଦେଲା । ଭଗ୍ୟକୁ ମୁଁ ଚମଡା ଯୋତା ପିନ୍ଧିଥିଲି । ତାପରେ ତାକୁ ମୁଁ ମଣ କରିବାକୁ ଯେତେ ଚେଷ୍ଟା କଲି ସେ ଆଉ ମୋ କଥା ମାନି ନ ଥିଲା । ତେଣୁ ବାଧ୍ୟ ହୋଇ ତାକୁ ଘରରେ କଚଡ଼ ଦେଲି, ସେ ମରି ଗଲା । ଆଉ ଗୋଟିକୁ ଜମିଦାରଙ୍କୁ ଦେଇ ଦେଲି । କେତେମାସ ପରେ ସେ ତାକୁ ଏକ ସର୍କସ ଦଳକୁ ଟ୫୦୦-୦୦ରେ ବିକି ଦେଇଥିଲେ ।

ଘୋଁସରେ ଥିବାବେଳେ ଅନେକ ଦିନ ମୁଁ ରତିରେ ମହୁ ସଂଗ୍ରହ ପାଇଁ ଯାଇଛି । ଜଙ୍ଗଲ ଭିତରେ ଅତି ଉଚ୍ଚ ସ୍ଥାନରେ ଗଛ ଡାଳ ମାନଙ୍କରେ ବାଘୁଆ ମହୁମାଛି ମାନେ ହାତେ ଦେଢହାତ ପ୍ରସ୍ଥ, ୫।୬ ହାତ ଲମ୍ବରେ ମହୁଫେଣା ମାନ କରିଥାନ୍ତି । ମହୁ, ଲାଖ, କୋଚିଲା ଫଳ, ଝୁଣା ଆଦି ସଂଗ୍ରହ ପାଇଁ ଜଣେ ଲୋକ ତାହା ଜମିଦାରଂକ ଠାରୁ ଠିକା ନେଇଥାଏ । ସର୍ବ ସାଧାରଣ ତାହା ଛୁଇଁ ପାରିବେ ନାହିଁ । ତେଣୁ ଆମେ ରତିରେ ଯାଇ ଲୁଚିକରି ମହୁ ଆଣୁଥିଲୁ । ବିପିନ ନାମକ ଜଣେ ଗଉଡ ଯୁବକ ଏବଂ ଆଶା ନାମରେ ଜଣେ ସହରା ଜାତିର ଯୁବକ ଏ କାମରେ ମୋର ଆଗ୍ରହ ଦେଖି ମୋତେ ଡାକନ୍ତି । ମୁଁ ବି କେବଳ ଜୀବନର ଇଏ ଏକ ଅନୁଭୂତି ବୋଲି ସେମାନଂକ ସହ ଯୋଗ ଦେଉଥାଏ । ଉଭୟଂକ ମଧ୍ୟରୁ ଆଶା ଥାଏ ଏଥିପାଇଁ ବେଶ୍ ଓସ୍ତାଦ୍ ।

ଦିନକର କଥା । ମୁଁ ରତିରେ ଖାଇ ସାରି ଶୋଇଥାଏ । ବିପିନ ଆସି ମୋତେ ଉଠାଇଲେ । କହିଲେ ମହୁ ଝାଡ଼ ଯିବା । ମୁଁ ତାଙ୍କ କଥା ଶୁଣି ତତ୍-କ୍ଷଣାତ୍ ବାହାରି ପଡଲି । ସେମାନେ ଗୋଟିଏ ଉରରେ ଗୋଟାଏ ପଟେ ଟିଣ ଟାଏ ଓ ଅନ୍ୟ ପଟେ ପିତଳ ବାସନଟାଏ ନେଇଥାନ୍ତି । ଅନ୍ଧାର ରତି । ଟର୍ଚ୍ଚ ଆଲୁଅ ସାହାଯ୍ୟରେ ଜଙ୍ଗଲ ଭିତରେ ଗ୍ଲିଥାଉଁ । ଆମେ ଯେଉଁ ଗଛରୁ ମହୁ ଆଣିବୁ ଟର୍ଚ୍ଚ ପକାଇ ଦେଖି ଜାଣିଗଲୁ ଯେ ସେହି ଗଛତଳେ ସେତେବେଳେ ଚିତାବାଘ ଦୁଇଟି ଥାନ୍ତି । ବିପିନ ସେମାନଙ୍କୁ ଦେଖି ଟିଣ ବଜାଇ ଦେଲା । ଶବ୍ଦ

ଶୁଣି ସେମାନେ ପଳାଇ ଗଲେ ।

ଗଛତଳେ ଆମେ ପହଞ୍ଚି ମହୁ ଝାଡବା ସକାଶେ ଆବଶ୍ୟକୀୟ କାମ କରିବାରେ ଲାଗି ପଡିଲୁ । ଆଶା ଆଗରୁ କାକମଇତା ଅର୍ଥାତ୍ କୁଆବାଦିଲି ଗଛ କେତେଗୋଡି ସଂଗ୍ରହ କରି ନେଇଥାଏ । ସେ ସେଠାରେ ତାହା ବାହାର କରି ତାର କଞ୍ଚା ପତ୍ରକୁ ହାତରେ ମଳି ଦେହସାରା ଲଗାଇ ହେଲା ଏବଂ ତାପରେ ତାର ନିର୍ଦ୍ଦେଶମତେ ଆମେ ୨ ଜଣ ମଧ୍ୟ ତାହାର ପତ୍ରକୁ ଦେହସାରା ଲଗାଇ ଦେଲୁ । ଆଶା ତାପରେ ଗୋଟିଏ ଗଞ୍ଜାରୀ ଡାଳ (ଶୁଖିଲା)ରେ ନିଆଁ ଧରାଇ ଡାଳି ପକାଇଲା । ସେହି ଡାଳ ମଶାଳ ଜଳିଲା ପରି ଜଳୁଥାଏ । ତା'କୁ ଧରି ସେ ସେହି ଗତିରେ ଗଛ ଉପରକୁ ମାଙ୍କଡ ଗଛ ଚଢିଲା ପରି କ୍ଷୀପ୍ରଗତିରେ ଚଢିଗଲା । ମହୁ ଫେଣାରେ ସେହି ଜଳନ୍ତା ଡାଳକୁ ଦେଖାଇ ଦେଲା । ନିଆଁ ପାଇବାକ୍ଷଣି ବାଘୁଆ ମହୁମାଛି ମାନେ ମଧ୍ୟ ଏକ ପ୍ରକାର ଶବ୍ଦ କରି ପଳାଇ ଗଲେ । ଗଛ ତଳକୁ ବି ଦଳେ ଆସିଲେ କିନ୍ତୁ ସେହି ପ୍ରତିଶେଧ କୁଆବାଦିଲି ଗଛର ଗନ୍ଧରେ ଆମ ଦେହକୁ ଛୁଇଁଲେ ନାହିଁ ।

ମାଛି ସବୁ ପଳା'ଇ ଯିବା ପରେ ଆଶା ଗୋଟିଏ ଦାଆ ଦ୍ୱାର ଫଣାଟିକୁ ଘଞ୍ଚି ପକାଇଲା । ଅଳ୍ପ ସମୟ ମଧ୍ୟରେ ମହୁ ଫେଣାଟି ତଳେ ଭଦ୍ କରି ପଡ଼ ଗଲା । ଧାର ଧାର ହୋଇ ମହୁତକ ଉପରୁ ତଳକୁ ଗଡ଼ ପଡ଼ିଲା । ଫଣାଟିକୁ ଚିପୁଡ଼ ଦେଲାରୁ ତାହା ଟିଣଟି ପୂର୍ଣ୍ଣ ହୋଇଗଲା । ତଳେ ପଡ ଜମା ହୋଇଥିବା ମହୁ ସଂଗ୍ରହ କଲାରୁ ତାହା ପିତ୍ତଳ ବାସନଟି ପୂରିଗଲା । ସେହି ରତିରେ ଅବଶିଷ୍ଟ ମହୁକୁ ଆଞ୍ଜୁଳା ଆଞ୍ଜୁଳା କରି ଆମେ ଖାଇଥିଲୁ । ଯଥା ସମୟରେ ତାପରେ ଆମେ ନିର୍ବିଘ୍ନରେ ଘରେ ପହଞ୍ଚି ଯାଇଥିଲୁ ।

ଆଉଥରେ ଦିନେ ଦିନବେଳା ଗୋଟେ ପ୍ରକାର ଭଲୁ ଶିକାର କରିବାକୁ ଆମେ ଜଙ୍ଗଲକୁ ଯାଇଥିଲୁ । ଏହି ଭଲୁ ଶିକାରରେ ମୁ କେବଳ ଦର୍ଶକ ରୂପେ ଯାଇଥାଏ ।

କେଉଁ ଋତୁରେ କିପରି ଭଲୁମାନେ ଖାଦ୍ୟ ସଂଗ୍ରହ କରିଥାନ୍ତି ଏକଥା ବଣୁଆ ଲୋକଙ୍କୁ ଜଣା ଅଛି । ପିପ୍‌ପଳ ଗଛରେ ପିପ୍‌ପଳ ସବୁ ପାଚିଥିବା ବେଳେ ଭଲୁମାନେ ଗଛ ଉପରକୁ ଚଢ଼ ପିପ୍‌ପଳ ଖାଇଥାନ୍ତି ।

୫/୬ ଜଣ ଲୋକ ସେଦିନ ବଡ ବଡ ଠେଙ୍ଗା କେତେଗୋଟା ଆଉ ଲମ୍ବା ଲମ୍ବା ବାଉଁଶ ୨ଟି, ଗୋଟେ ହେବ ଦୁଆଳ ଧରି ଯାଇଥାନ୍ତି । ଜଙ୍ଗଲ ଭିତରେ ଯାଉଁ ଯାଉଁ ଦୂରରୁ ଥାଇ ଦେଖିଲେ ଯେ ଭଲୁଟାଏ ଗଛରେ ଚଢ଼

ପିପ୍‌ପଲ ଖାଉଛି । ତାକୁ ଦେଖି ଏମାନେ ସବୁ ଚୁପ୍‌ଚାପ୍ ହୋଇ ଆସ୍ତେ ଆସ୍ତେ ଯାଇ ଗଛମୂଳେ ଠିଆ ହେଲେ । ବାଉଁଶ ୨ଟିକୁ ବାନ୍ଧ ଦେଇ ଲମ୍ବ କରିଦେଲେ । ବାଉଁଶ ଅଗରେ ପୁଆଳ ଗୋଛାକ ବାନ୍ଧ ଦେଇ ତାକୁ ଜଣେ ଟେକି ଧରିଲା । ତାକୁ ନେଇ ଭାଲୁର ପଛପଟରୁ ତା ପିଚ୍ଛକୁ ଛୁଆଁଇ ଦେଇ ଡାଳକୁ ଲଗାଇ ଶୂନ୍ୟରେ ବାଉଁଶଟିକୁ ଧରି ରଖିଲା । ଭାଲୁ ତ ବିଭୋର ହୋଇ ପିପ୍‌ପଲ ଖାଉଥାଏ । ତା ପିଚ୍ଛରେ ପୁଆଳ ଲାଗିବା ଜାଣି ସେ ଆଗ ଗୋଡ ଯାହା ହାତ ପରି କାମ କରେ, ଡାହାଣ ହାତକୁ ପଛକୁ ନ ଅନାଇ ପୁଆଳ ଥିବା ଅଂଶରେ ଛୁଇଁ ଦେଲା । ତାପରେ ସେ ମନେ କଲା ଯେ ସେ ମାଟି ପାଖରେ ପହଞ୍ଚି ଯାଇଛି । ତେଣୁ ନିଜର ପିଚ୍ଛ-ଟାକୁ ଗଛ ଡାଳରୁ ଉଠାଇ ଆଣି ସେ ପୁଆଳ ଉପରେ ବସିଗଲା । ପୁଆଳ ଉପରେ ବସିଲା ଯେମିତି ତାପରେ ତଳେ ଦୁମ୍ କରି କଚଡ଼ ହୋଇ ପଡଗଲା । ତଳେ ଥିବା ଲୋକେ ସେତେବେଳେ ଠେଙ୍ଗାମାନ ଧରି ସତର୍କ ଥାନ୍ତି । ଭାଲୁ ତଳେ ପଡଗଲା କ୍ଷଣି ତା ଉପରେ ଠେଙ୍ଗା ମାଡ ଚଢାଇ ଦେଲେ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଭାଲୁଟି ମାଡଖାଇ ମରିଗଲା । ଭାଲୁ ମରିଯିବା ପରେ ତାକୁ ବୋହି ଆଣି ତାହାର ମାଂସ ସେମାନେ ଘରେ ଖାଇଥିଲେ । ଏହି ପ୍ରକାର ଭାଲୁ ଶିକାରକୁ ମୁ ୨ ଥର ଯାଇଥିଲି ।

ଆଉ ଥରେ ୨ଟି ଭାଲୁଙ୍କ ଆକ୍ରମଣର ମୁ ଶରବ୍ୟ ହୋଇଥିଲି । ସେ ଦିନ ମୁ ଘେଁସରୁ ବାହାରି ମେଲଛାମୁଣ୍ଡା ଶିକ୍ଷକ ମାନଙ୍କ ଦରମା ଆଣିବାକୁ ପୋଃଅଃ କୁ ଯାଇଥାଏ । ମେଲଛାମୁଣ୍ଡାରେ ପହଞ୍ଚି ଦେଖିଲି ଯେ ବରପାଲି ଓ ଅନ୍ୟାନ୍ୟ ସ୍ଥାନରୁ ଶିକ୍ଷକ ମାନେ ବୃତ୍ତି ପରୀକ୍ଷା ସକାଶେ ସେମାନଙ୍କ ଛାତ୍ର ଛାତ୍ରୀ ମାନଙ୍କୁ ଆଣିଥାନ୍ତି । ବରପାଲି ଶିକ୍ଷକ ମାନଙ୍କ ଅନୁରୋଧରେ ମୁ ସେଦିନ ରହିଗଲି । ବୃତ୍ତି ପରୀକ୍ଷା ସରିଗଲା । ବରପାଲି ଶିକ୍ଷକଗଣ ତାଙ୍କ ଶଗଡ ଫାନ୍ଦ ରାତି ୯ଟାରୁ ବାହାରି ପଡିଲେ । ସେମାନେ ଚାଲିଯିବା ପରେ ସେଠାରେ ରହିବାକୁ ମୋର ଆଉ ଇଚ୍ଛା ହେଲା ନାହିଁ । ଯୋରକୁ ଭାମୁଟପାଲିର ଶିକ୍ଷକ ପାଣ୍ଡବ ଦାଶ ମୋ ସହିତ ଆସି-ବାକୁ ରାଜି ହୋଇଗଲେ । ତେଣୁ ଆମ୍ଭେ ଦୁଇଜଣ ସାଇକେଲ ଯୋଗେ ମେଲଛା-ମୁଣ୍ଡାରୁ ରାତି ୩ ଟାରେ ବାହାରି ପଡିଲୁ । ଚନ୍ଦ୍ର ରାତ୍ରି । ପକ୍‌କା ସଡକ ଗଡାଣିଆ ବାଟ । ଅଳ୍ପ ସମୟ ପରେ ଆମେ ସାହେନ୍‌ପାଲି ଗ୍ରାମରେ ଆସି ପହଞ୍ଚିଲୁ । ପାଣ୍ଡବ ବାବୁ ସେଠାରୁ ଉତ୍ତର ଦିଗେ ପଡିଥିବା ରାସ୍ତାରେ ଭାମୁଟପାଲି ଚାଲିଗଲେ । ମୁ ସଡକ ରାସ୍ତାରେ ପୂର୍ବକୁ ଘେଁସ ଅଭିମୁଖେ ରମାନା ହେଲି । ବାଟରେ ବାଟ-ତେରମ୍ଭା ନାମକ ଏକ ଗିରିନାଳ ପଡିଲା । ନାଳଟିରେ ଏକ କଜ୍‌ୱେ (ରପଟା) ବନ୍ଧା ଯାଇଥାଏ । ରାସ୍ତା ଅତ୍ୟନ୍ତ ଢାଲୁ ତଥା ଅଣଓସାରିଆ । ଦୁଇପାଖେ ନିଘଞ୍ଚ

ଜଙ୍ଗଲ । ଭାଲୁ ରାସ୍ତା ଯୋଗୁଁ ସାଇକେଲ ଦ୍ରୁତତର ଗତିରେ ଗଡୁଥାଏ । ଗିରି-ନାଳକୁ ଛାଡ ଅଳ୍ପ ଦୂରଯାଏ ମୁ ହୋଇଛି, ଦେଖିଲି ମୋ ଆଗରେ ଦୁଇଗୋଟି ଭଲୁ ଆସି ଛିଡା ହୋଇଗଲେ । ଅଗତ୍ୟା ମୁ ସାଇକେଲରେ ବ୍ରେକ ଦେଇ ଓହ୍ଲାଇ ପଡିଲି । ଭଲୁ ଦୁଇଟି ମୋର ସାଇକେଲର ଝଣ୍‌ଝଣ୍‌ ଶବ୍ଦ ଶୁଣି ସଡକ ସାମ-ନାରେ ଆସି ଠିଆ ହୋଇଗଲେ । ସାଇକେଲରୁ ଓହ୍ଲାଇ ପଡ ମୁ ଦେଖିଲି ଯେ ମୋ ଆଗରେ ସାକ୍ଷାତ୍‌ ଯମଦୂତ ପରି ଦୁଇଟି ଭଲୁ ଠିଆ ହୋଇ ମୁଣ୍ଡଟି ମାନ ଏପଟ ସେପଟ କରୁଛନ୍ତି । ସେମାନଙ୍କୁ ବାଗେଇ ଆଗକୁ ଚ଼ଲି ଆସିବାକୁ ଆଉ ଜାଗା ନାହିଁ । ଯାହା ବା ସ୍ଥାନ ଅଛି ତାହା ଖାଲ । ଏପରି ପରିସ୍ଥିତିରେ ପଡ ମୁ ହତବାକ୍‌ ହୋଇଗଲି । ହଠାତ୍‌ ସେତେବେଳେ ମୋ ମୁହଁରୁ ବାହାରି ପଡ଼ିଲା ‘ହେ ଭଗବାନ୍‌ ମୋତେ ରକ୍ଷା କର’ । ଏତିକି ମାତ୍ର କହିଛି ମୋ ମୁଣ୍ଡକୁ ଏକ ବୁଦ୍ଧି ହଠାତ୍‌ ଦେଖାଗଲା । ମୋ ସାଇକେଲରେ ୨ଟି ଘଣ୍ଟି ଲାଗିଥାଏ । ଘଣ୍ଟି ୨ଟିକୁ ବଜାଇବାକୁ ଇଚ୍ଛା ହେଲା । ଘଣ୍ଟି ୨ଟିକୁ କେତେ ସମୟ ଯାଏ ଘନଘନ ବଜାଇ ଦେଲି । ଅରଣ୍ୟ ପଥ । ଘଣ୍ଟି ୨ଟିର ଶବ୍ଦରେ ବନଭୂମି ଶବ୍ଦାୟମାନ ହୋଇ ଉଠିଲା । ଏଥିରେ ଭଲୁ ୨ଟି ଡରିଗଲେ ଆଉ ରାସ୍ତା ଛାଡ ଦେଇ ଦଉଡ଼ ଦଉଡ଼ ବଣ ଭିତରକୁ ପଶିଗଲେ । ସେମାନେ ରାସ୍ତା ଛାଡ଼ ଦେବା ମାତ୍ରେ କାଳ ବିଳମ୍ବ ନ କରି ମୁ ସାଇକେଲ ଚଢ଼ ଏକା ନିଃଶ୍ୱାସରେ ଘେଁସରେ ଆସି ପହଞ୍ଚି ଯାଇଥିଲି ।

ମୋ ଆସିବା ପଥକୁ ଏ ପଟେ ହେଡ ପଣ୍ଡିତ ଗଜେନ୍ଦ୍ର ଦାଶ ଓ ସହ-କାରୀ ଶିକ୍ଷକ ଶ୍ରୀପତି ଦେବତା ଅନାଇ ରହିଥାନ୍ତି । କାରଣ ତାଙ୍କୁ ନ କହି ମୁ ରତିଟା ସେଠାରେ ରହି ଯାଇଥିଲି । ମୋର ନ ଆସିବା ଜାଣି ସେମାନେ ଆଶଙ୍କା କରୁଥାନ୍ତି ଯେ କାଳେ ଟଙ୍କା କେହି ଅପହରଣ କରି ନେଇ ଗଲେ ବୋଲି । ମୁ ଆସି ସବୁ କଥା କହିବାରୁ ସେମାନେ ବିସ୍ମିତ ହେବା ସଙ୍ଗେ ସଙ୍ଗେ ଈଶ୍ୱରଙ୍କୁ ଶତ ଧନ୍ୟବାଦ ପ୍ରଦାନ କରିଥିଲେ ।

# ଓଡ଼ିଆ ଜାତିର ଜାତୀୟତା ପାଇଁ ଦୁଃସାହସିକ ପଦକ୍ଷେପ

ଢେଁସ ଜମିଦାର ଲାଲ ଯୋଗେନ୍ଦ୍ର ନାଥ ସିଂହ ବରିହାଂକର ଗୋଟିଏ ଭଉଣୀ ଥାନ୍ତି । ତାଂକ ନାମ ପ୍ରିୟବତୀ । ସେ ବିଧବା ତଥା ମଧ୍ୟପ୍ରଦେଶ-ପିଥୋରା ଜମିଦାରଂକ ପୁତ୍ରବଧୂ । ପିଥୋରା ଜମିଦାର ଯୁବକ ଅବସ୍ଥାରେ ମରି ଯିବାରୁ ଏବଂ ତାଂକର ସନ୍ତାନ ଆଦି ନ ଥିବା ହେତୁ ତାଂକ ରାଜ୍ୟ କୋର୍ଟ ଅଫ୍ ଓ୍ୟାର୍ଡସ୍ ଅଧୀନରେ ରହିଲା । ପ୍ରିୟବତୀ ବିଧବା ହେବା ପରେ ନିଜ ବାପ ଘରେ ଆସି ରହିଥାନ୍ତି । ତାଂକର ଭରଣ ପୋଷଣ ସକାଶେ ମାସକୁ ଟ ୪୦୦ ଆସୁଥାଏ । ବୁଲାବୁଲି କରିବାକୁ ଗୋଟିଏ ଟି ମଡେଲ କାର ଥାଏ । ପାହାଡଆ ଜାଗାକୁ ବୁଲି ଯିବା ସକାଶେ ଗୋଟିଏ ଟାଙ୍ଗା ଗାଡ଼, ବଳଦ ବଡ ବଡ ୨ଟି, ଜଣେ ରକ୍ଷକ ଏବଂ କାର ପାଇଁ ଜଣେ ଡ୍ରାଇଭର ଥାନ୍ତି । ଡ୍ରାଇଭର ଦରମା ମାସକୁ ଟ ୪୦, ଗାଡ଼ ରକ୍ଷକ ଦରମା ଟ ୩୦, ବଳଦ ୨ଟିଙ୍କ ଖର୍ଚ୍ଚ ପାଇଁ ଟ୩୦, ପେଟ୍ରୋଲ ଖର୍ଚ୍ଚ ଟ ୫୦ ଏପରି ଟ୧୫୦ ମଧ୍ୟ ପୃଥକ ଭବେ ଆସୁଥାଏ ।

କାର୍ ଡ୍ରାଇଭର ମଣ୍ଡଳ ବାବୁ ବୋଲି ଜଣେ ବିହାରୀ ବ୍ୟକ୍ତି ଥାନ୍ତି । ତାଂକ ବୟସ ୩୦।୩୨ ମଧ୍ୟରେ । ସେ ପ୍ରତିଦିନ କଶରତ କରୁଥାନ୍ତି । ଅବି-ବାହିତ । ଶରୀର ହୃଷ୍ଟ ପୁଷ୍ଟ । ସେ ଢେଁସ ଲୋକଂକ ଆଗରେ କହେ ଯେ ତାର ସମକକ୍ଷ ବଳବାନ ବ୍ୟକ୍ତି ଢେଁସ କାହିଁକି ଏହି ଅଞ୍ଚଳରେ ନାହାନ୍ତି । ଓଡ଼ଆ ମାନେ ଭୀରୁ, ଦୁର୍ବଳ । ଏ କଥା ତା ମୁହଁରୁ ଅନେକ ଥର ଶୁଣି ସ୍ଥାନୀୟ ଜନୈକ ବ୍ୟକ୍ତି ମିତ୍ରଭନୁ ଦେବତାଂକ ମନରେ ଦୁଃଖ ତଥା ମାନସିକ ଗ୍ଲାନି ଦେଖା ଦିଏ । ପରେ ସେ ମିଃ ଇଃ ସ୍କୁଲର ଶିକ୍ଷକ ହୋଇଥିଲେ ।

ଦିନେ ସଞ୍ଜବେଳେ ସେ ମୋ ପାଖକୁ ଆସି କହିଲେ ଯେ ମଣ୍ଡଳ ବାବୁ ସବୁବେଳେ ଆମ ଓଡଆ ମାନଙ୍କୁ ଭୀରୁ ଦୁର୍ବଳ ବୋଲି କହି ଆସୁଛି । ଆପଣ ତ ହେଉଛନ୍ତି ତା'ଠୁ ବଳି ସୁନ୍ଦର, ଯୁବକ ତଥା ବଳିଷ୍ଠ । ଥରେ ଯଦି କହନ୍ତେ ଯେ ତା ସହିତ କୁସ୍ତି କରିବାକୁ ଏବଂ ଯଦି ତାକୁ କୁସ୍ତିରେ ହଟାଇ ଦେଇ ପାରନ୍ତେ ତେବେ ଆମ ଓଡ଼ଆ ଜାତିର ମାନ ସମ୍ମାନ ବଜାୟ ରହନ୍ତା । ତାଙ୍କ କଥା ଶୁଣି ମୁ ଅବିଳମ୍ବେ ରାଜି ପଡ଼ଗଲି । ମିତ୍ରଭନୁ ବାବୁ ମୋତେ ଏ କଥା କହିବାବେଳେ ସେଠାକାର ଆଉ କେତେ ଜଣ ବ୍ୟକ୍ତି ମଧ୍ୟ ଉପସ୍ଥିତ ଥାନ୍ତି । ମୋ ମୁହଁରୁ ସମ୍ମତି ସୂଚକ କଥା ଶୁଣି ସେମାନେ ଯେତେ ଜଣ ସେଠାରେ ଥିଲେ ସମସ୍ତେ

ଉଲ୍ଲସିତ ହୋଇ ଗଲେ । ମୋତେ ଉତ୍ସାହିତ ମଧ୍ୟ କଲେ । ଇତ୍ୟବସରରେ ସେହି ରାସ୍ତାରେ ମଣ୍ଡଳ ବାବୁ ଫେରୁଥାନ୍ତି । ତାଙ୍କୁ ଅକସ୍ମାତ୍ ଦେଖି ପକାଇ ମିତ୍ରଭାନୁ ବାବୁ ଅଟକି ଯିବାକୁ ଇସାରା ଦେଲେ । ମଣ୍ଡଳ ବାବୁ ତାପରେ ଆମ୍ଭ ମାନଙ୍କ ନିକଟକୁ ଆସି ଛିଡା ହେଲେ ।

ସେ ଛିଡା ହେବା ଦେଖି ମିତ୍ରଭାନୁ ବାବୁ ତାପରେ ମୋର ବାହାକୁ ଧରି କହିଲେ ଯେ ଇୟେ ହେଉଛନ୍ତି ଜଣେ ଓଡଆ ଯୁବକ । ଆପଣ ୟାଙ୍କ ସଙ୍ଗରେ ଲଢବେ ଯଦି କହନ୍ତୁ ।

ମଣ୍ଡଳ ବାବୁ ତାପରେ ମୋତେ ଦେଖି ପଚାରିଲେ
'ଆପ୍ କ୍ୟା ଓଡଆ ହେଁ ?
ଏକଦମ୍ ଓଡଆ, — ପିଓର ଓଡ଼ଆ ।
ଆପ୍ ମୁଝ୍‌ସେ ଲଢନେ କୋ ରାଜି ହେଁ ?
ଜୀ, ହାଁ, ତୟାର ହୁଁ । ମୁ କହିଲି ।
ତୋ କବ୍ ? ସେ କହିଲେ ।
ଅବି ବୋଲେ ରାଜି, ନହିତୋ ପିଛେ ବୋଲେ ସହି ।
ସେ କହିଲେ ଠିକ୍ ହେ ରେଡ ହୋ ଯାଓ ।
ପିନ୍ଧିଥିବା ଲୁଗାକୁ ଟିକିଏ ପ୍ରସ୍ତୁତ କରି ମୁ କହିଲି ରେଡ଼ି ।

ତାପରେ ସେହି ସନ୍ଧ୍ୟାରେ — ଗାଁ ଦାଣ୍ଡରେ ମୋ ବସା ସାମନା ବାଳିକା ସ୍କୁଲ ସମ୍ମୁଖରେ ଅପ୍ରତ୍ୟାଶିତ ଭାବେ ଆମେ ଦୁହେଁ ଲଢିବା ପାଇଁ ପରସ୍ପର ଅବତୀର୍ଣ୍ଣ ହୋଇ ପଡଲୁ । ଇତ୍ୟବସରରେ ମୁ ମୋର ଇଷ୍ଟଦେବ ହନୁମାନଙ୍କୁ ସ୍ମରଣ କରିବାରେ କେତେ ସେକେଣ୍ଡ ଯାହା ବ୍ୟୟ କରିଥିଲି । ପ୍ରାୟ ୧୦ କି ୧୫ ମିନିଟ୍ ଆମ ମଧ୍ୟରେ କୁସ୍ତିର ବିଭିନ୍ନ ଟ୍ରିକ୍ ଚାଲିଥିଲା, ତାପରେ ତାଙ୍କୁ ମୁ ସମସ୍ତଙ୍କ ସାମନାରେ ଧରାଶାୟୀ କରିଦେଲି ।

ମିତ୍ରଭାନୁ ବାବୁ ଓ ଅନ୍ୟାନ୍ୟ ମାନେ ମୋର ବିଜୟରେ ଉଲ୍ଲସିତ ହୋଇ ଉଠିବା ସଙ୍ଗେ ସଙ୍ଗେ ଅବୋ, ଅବୋ, କରି ବୁବି ମାରି ମୋତେ ସାଧୁବାଦ ଜ୍ଞାପନ କରି ପକାଇଲେ । ମଣ୍ଡଳ ବାବୁ ମୁଣ୍ଡଟାକୁ ତଳକୁ କରି ସେଦିନ ତାଂକ ବସାକୁ ନୀରବରେ ଚାଲିଗଲେ । ମୋର ଅନୁମାନ ସେଦିନ ରାତିରେ ସେ ଖାଇ ନ ଥିବେ ।

ତାପରେ ଆଉଦିନେ ମୁ ତାଙ୍କୁ ସୌଖୀନ ଭାବେ ଲଢିବାକୁ ଆହ୍ୱାନ କରିଥିଲି । ସେ କିନ୍ତୁ ରାଜି ପଡ଼ ନ ଥିଲେ । ସେଦିନଠାରୁ ସେ କେବେ ଆଉ

ଓଡ଼ିଆ ମାନଙ୍କର ନିନ୍ଦା କରିବାକୁ ସାହସୀ ହୋଇ ନ ଥିଲେ । ମୁଁ ଥିବା ପର୍ଯ୍ୟନ୍ତ ସେ ମୋତେ ଦେଖିଲେ ରାମ, ରାମ, ମାଷ୍ଟର ଜୀ କହି ଆସୁଥିଲେ ।

ଜମିଦାର ଦିନେ ମୋତେ ଅଲଗ ଡାକି ଏକଥା ପଚାରିଲେ । ମୁଁ ସତ ବୋଲି ତାଙ୍କୁ କହିବାରେ ସେ ମୋତେ Good, Thanks କହି ମୋର ପିଠିରେ ହାତ ଥାପୁଡାଇ ଥିଲେ ।

# ମୋ ବିରୁଦ୍ଧରେ ପୋଲିସରେ ମିଥ୍ୟା ଅଭିଯୋଗ ଆନୟନ

ମୁଁ ଘେଁସରେ ଥାଏ । ଦିନେ ଶିକ୍ଷା ବିଭାଗରୁ ଆଦେଶ ଆସିଲା ଯେ ଆମ୍ଭ ମାନଂକର ସାର୍ଟିଫିକେଟ ସବୁ ଯାଞ୍ଚ କରାଯିବ । ମୋର ସାର୍ଟିଫିକେଟ ସବୁ ରେମଣ୍ଡାରେ ଥାଏ । ତେଣୁ ମୁଁ ଛୁଟି ନେଇ ରେମଣ୍ଡା ଗଲି । ଯାନ୍ତ୍ରିକ ଯାନର ପ୍ରଚଳନ ସେତେ ନ ଥିବା ହେତୁ ମୁଁ ଚାଲି କରି ରେମଣ୍ଡା ଆସିଲି । ଘେଁସରୁ ରେମଣ୍ଡା ୮୫ କିଲୋମିଟର ବାଟ । ମୋର ଦୈହିକ ବଳ ଥିବା ସକାଶୁ ପଞ୍ଚାଅଶି କିଲୋମିଟର ବାଟ ଚାଲିଯିବା ଅକିଞ୍ଚିତ୍କର ।

ଘେଁସରୁ ମୁଁ ଆସି ବିଜେପୁରରେ ସେ ଦିନ ରହିଗଲି । ବିଜେପୁରରେ ମୋର ଜନୈକ ବନ୍ଧୁ ଥାନ୍ତି । ତାଙ୍କ ଅନୁରୋଧ କ୍ରମେ ରାତିଟା ସେଠାରେ ତାଙ୍କ ଘରେ କଟାଇବା ସ୍ଥିର କଲି । ମୁଁ ବିଜେପୁର ଦିନ ୪ଟାରେ ପହଞ୍ଚି ଥିଲି ।

ବିଜେପୁର ଜମିଦାର ସଂକର୍ଷଣ ଗଡତିୟା ଆମ ଗାଁର ଗୌନ୍ତିଆ । ମୁଁ ବିଜେପୁର ଆସିଥିବାରୁ ଏବଂ ସମୟ ଥିବା ଯୋଗୁଁ ଜମିଦାରଙ୍କ ନିକଟକୁ ସାକ୍ଷାତ ପାଇଁ ଗଲି ।

ରେମଣ୍ଡାର ଯେ କୌଣସି ବ୍ୟକ୍ତି ତାଙ୍କ ନିକଟକୁ ଗଲେ ସେ ବିଶେଷ ସତ୍କାର କରନ୍ତି । ମୋତେ ଦେଖି ସେ ଆଦର କଲେ । ପାଖରେ ବସାଇଲେ । ନାନାବିଧ କଥା ଆଲୋଚନା ଚାଲିଲା । କଥା ପ୍ରସଙ୍ଗରେ ସେ କହିଲେ ଯେ ବାବୁ ତୁମେ ସୋହେଲା ବାଟେ ମଟରରେ ନ ଆସି ଚାଲି କରି ଏ ବାଟେ କାହିଁକି ଆସିଲ ? ମୁଁ କହିଲି ମୋ ଦେହରେ ବଳଅଛି । ସ୍ଫୂର୍ତ୍ତି ଅଛି । ମୁଁ କାହିଁକି ଚାଲିକରି ନ ଆସିବି । ଘେଁସରୁ ରେମଣ୍ଡା ୫୫ମାଇଲ ବାଟ ତ । ତୁମ୍ଭେ କଣ ନିଜକୁ ବଳବାନ୍ ମନେ କର ? 'ଆଜ୍ଞା ହଁ' । ତାହା ଶୁଣି ସେ କୌତୁହଳୀ ହୋଇ ମୋତେ ପଚାରିଲେ ତାହାର ପ୍ରମାଣ କଣ ? ମୁଁ କହିଲି ଆପଣ ମୋତେ ପରୀକ୍ଷା କରି ପାରନ୍ତି ।

ସେ ତାପରେ କହିଲେ କିପରି ପରୀକ୍ଷା ହେବ ?

ଆପଣ ଆପଣଙ୍କର ଏଠାକାର କାହାରି ସହିତ ମୋତେ ଲଢ଼ିବାକୁ ସୁବିଧା କରଇ ଦିଅନ୍ତୁ । ତା ଯଦି ନୁହେଁ କାହା କାହାକୁ ଡାକି ମୋର ସହ ବାଡ଼-ଘିଚ୍ଚ ଅନ୍ତଃ କରଇ ପାରନ୍ତି ।

ମୋ ଦମ୍ଭୋକ୍ତି ଶୁଣି ସେ କଣ ଭାବିଲେ କେଜାଣି ତାପରେ ତାଙ୍କର ଚାକର ଫକିରକୁ ଡାକି କହିଲେ ଯେ ଯାଅ ତ ଆମ ବାଡ଼ ପଟେ ୪ ଜଣ ଲୋକ କାଠ ହାଣୁଛନ୍ତି ସେ ସମସ୍ତଙ୍କୁ ଡାକି ଆଣିବୁ । କାଳ ବିଳମ୍ବ ନ କରି ଫକିର ଯାଇ ୪ ଜଣ ଦିନ ମଜୁରିଆ ଭେଣ୍ଡିଆ ମାନଙ୍କୁ ଡାକି ଆଣି ତାଙ୍କ ଆଗେ ଉପସ୍ଥିତ କରଇଦେଲା । ସେମାନଙ୍କୁ ମୋତେ ଦେଖାଇ ଜମିଦାର କହିଲେ ଏମାନଙ୍କୁ ପାରିବେ ? ମୁଁ ସେମାନଙ୍କୁ ଦେଖି ଟିକିଏ ହସିଦେଲି ଏବଂ କହିଲି ଫଳେନ ପରିଚିୟତେ ।

ମୋ ଉତ୍ତର ଶୁଣି ଜମିଦାର ଖୁସି ହେଲେ ସତ କିନ୍ତୁ ମୁଁ ଜାଣି ପାରିଲି ଯେ ମୁଁ ଜିତେ ସେ ଏହା ଚାହୁଁ ନ ଥାଆନ୍ତି । ସେ ଦିନ ସେମାନଙ୍କ ସହ ମୁଁ ବାଡ଼ ଘିଚି ଥିଲି । ୪ ଜଣ ଯାକ ଅକ୍ଳେଶରେ ମୋ ନିକଟରେ ପରାଭୂତ ହୋଇ ପଡ଼ିଥିଲେ ।

ଜମିଦାର ତାପରେ ଶୁଖିଲା ହସ ହସି ମୋତେ ସାବାସ କହିଲେ ସିନା କିନ୍ତୁ ତାଂକ ଲୋକ ହାରିଯିବାରେ ତାଂକ ଅନ୍ତରକୁ ତାହା ବାଧି ଯାଇଥିଲା । ସେ ଦିନର ପରୀକ୍ଷାରେ ମୁଁ ଯେପରି ଭବେ କୃତକାର୍ଯ୍ୟ ହେଲି ତାହା ଦେଖି ଅନ୍ୟ କୌଣସି ଜମିଦାର ମୋତେ କିଛି ପୁରସ୍କାର ପ୍ରଦାନ କରିଥାନ୍ତେ । କିନ୍ତୁ ସେ ତାହା କଲେ ନାହିଁ । ମୁଁ ବି ତାହା ଆଶା କରି ନ ଥିଲି ।

ରାତିରେ ତାଂକ ଘରେ ଖାଇବାକୁ ସେ ମୋତେ ନିମନ୍ତ୍ରଣ କଲେ । ମୁଁ କିନ୍ତୁ ତାଂକ ନିମନ୍ତ୍ରଣ ରକ୍ଷା ନ କରି ମୋର ବନ୍ଧୁ ଦେବାର୍ଚ୍ଚନ ବାବୁଂକ ଘରେ ରାତିରେ ଖାଇଥିଲି ।

ତା ଆରଦିନ ମୁଁ ରେମଣ୍ଡା ଅଭିମୁଖେ ଯାତ୍ରା ଆରମ୍ଭ କରିଦେଲି । ବିଜେପୁରରୁ ରେମଣ୍ଡା ଆସିବାକୁ ହେଲେ ମାର୍ଗରେ କୁମ୍ଭାରୀ ନାମକ ଏକ ଗ୍ରାମ ପଡେ । ମୁଁ କୁମ୍ଭାରୀକୁ ପହଞ୍ଚିଥିଲି ସକାଳ ୯ଟାରେ । କୁମ୍ଭାରୀ ଗ୍ରାମରେ ମୋର ଶ୍ୱଶୁର ଘର । ମୋର ୧ମା ସ୍ତ୍ରୀ ପରିତ୍ୟକ୍ତା ଅବସ୍ଥାରେ ସେଠାରେ ଥାଏ । ଶ୍ୱଶୁର ଘରର କେତେକ ଲୋକ ସେ ଦିନ ମୁଁ ସେ ବାଟରେ ଆସିଥିବାର ଦେଖିଥାନ୍ତି । ତା ଆରଦିନ ମୋ ଶ୍ୱଶୁର ଦଳେ ଲୋକଙ୍କ ସହ ମୋ ସ୍ତ୍ରୀକୁ ସଙ୍ଗରେ ଆଣି ଆମ ଘରେ ଛାଡ ଦେଇଗଲେ । ମୋର ତ ତାକୁ ଘରେ ପୂରଇ ଦେବାର ଇଚ୍ଛା ନ

ଥାଏ । ତେଣୁ ସେମାନଙ୍କୁ ଦେଖି ମୁ ଘର ଛାଡ଼ି ପଳାଇ ଆସିଲି । ଏଥର ବିଜେ-ପୁର ବାଟେ ନ ଯାଇ ବରଗଡ ସୋହେଲା ପଥେ ଠିକ୍ ଚାଲି ଚାଲି ଘେଁସରେ ପହଞ୍ଚିଲି ।

ମୁ ଚାଲି ଆସିବା ଜାଣି କୁମ୍ଭାରୀରୁ ଆସିଥିବା ଲୋକେ ସେ ଦିନ ରାତିରେ ଆମ ଗାଁରେ ଥିବା ବାଳିକା ସ୍କୁଲରେ ରହିଥିଲେ । ସେତେବେଳେ କୁମ୍ଭାରୀ ଗ୍ରାମ ନିବାସୀ ଜଣେ ବ୍ୟକ୍ତି ଉକ୍ତ ସ୍କୁଲରେ ଶିକ୍ଷକ ଥାନ୍ତି । ଉକ୍ତ ଶିକ୍ଷକ ଏବଂ ମିଃ ଇଃ ସ୍କୁଲର ଜଣେକ ଶିକ୍ଷକଙ୍କ କୁ ପରାମର୍ଶ କ୍ରମେ ତା ଆରଦିନ ସେମାନେ ମୋ ସ୍ତ୍ରୀକୁ ସଙ୍ଗେ ନେଇ ଭେଡେନ ପୋଲିସକୁ ଆସି ମୋ ବିରୁଦ୍ଧରେ ଏକ ମିଥ୍ୟା ଅଭିଯୋଗ ଦାଏର କଲେ ।

ମୋ ସ୍ତ୍ରୀ ତାର ବାଁ ହାତରେ ଲାଗିଥିବା କଳା ଚିହ୍ନ ଥାନା ବାବୁଙ୍କୁ ଦେଖାଇ କହିଲା ଯେ ମୋ ସ୍ୱାମୀ ମୋତେ ବାନ୍ଧ ପକାଇ ତତଲା ଲୁହାରେ ଏହି ସ୍ଥାନରେ ଚଙ୍କେଇ ଦେଇଛି ।

ନୀଳମଣି ମିଶ୍ର ଥାନାବାବୁ ତାର ହାତ ଦେଖି ସବୁ କଥା ଠଉରାଇ ନେଲେ । କୃତ୍ରୀମ ସହାନୁଭୂତି ଦେଖାଇ ତାକୁ କହିଲେ ଯେ ଆହା, କେତେ କଷ୍ଟ ତୁମେ ନ ପାଉଛ ? କେତେ ନିଷ୍ଠୁର ତୁମର ସେ ସ୍ୱାମୀ । ବାବୁଙ୍କର ଏହି ଦରଦ-ପଣିଆ ଦେଖି ଯୋଗକୁ ସେ ବାବୁଙ୍କ ମୁହଁକୁ ଦେଖି ହସି ପକାଇ ଥିଲା । ଏହି ହସର ଅର୍ଥ ନାନା ପ୍ରକାର ହୋଇପାରେ । ବାବୁ ତାପରେ ଗମ୍ଭୀର ହୋଇଗଲେ ଏବଂ ଜଣେ କନଷ୍ଟବଲକୁ ବାଲଟିଏ ପାଣି, ସାବୁନ ଓ ତଉଲିଆଟିଏ ଆଣିବାକୁ ଆଦେଶ ଦେଲେ । ସେ ତାହା ଆଣିଲାରୁ ତାକୁ ଉକ୍ତ କ୍ଷତ ସ୍ଥାନରେ ସାବୁନ ଲଗାଇ ଧୋଇ ଦେବାକୁ କହିଲେ । କନଷ୍ଟବଲଟି ସାବୁନ ଲଗାଇ ଧୋଇ ଦେବାରେ କ୍ଷତ ଚିହ୍ନ ସବୁ ଲିଭିଗଲା ଏବଂ ହାତଟି ନିର୍ଦ୍ଦୋଷ ଭବେ ଥିବାର ଜଣା ପଡଗଲା । ବାବୁ ଏହା ଦେଖି ସେମାନଙ୍କୁ ବହୁତ ଶୋଧିଲେ । ଓଲଟି ମିଥ୍ୟା ଅଭିଯୋଗ ଆଣିଥିବାରୁ ମୁ ତୁମ୍ଭମାନଙ୍କୁ — ଧାରାରେ ଅଭିଯୁକ୍ତ କରିବି ବୋଲି କହି ସେଠୁ ଉଠିଯାଇ ନିଜ ଆସନରେ ବସି ପଢ଼ ତା ସହ ଯାଇଥିବା ସମସ୍ତ ଲୋକଙ୍କୁ ଅଟକାଇ ରଖିଲେ । ଫଳରେ ସେମାନେ ବିଭିନ୍ନ ପ୍ରକାର କାକୁତି ମିନତି ହୋଇ ସେଠାରୁ ଚାଲି ଆସି ବରଗଡରେ ମୋ ନାମରେ ଏକ ଫୌଜଦାରୀ ମୋକଦ୍ଦମା ଦାଏର କରିଦେଲେ ।

ଉକ୍ତ ମୋକଦ୍ଦମା ବାନାମୂର ମହାନ୍ତ, ଏଡସନାଲ ତହସିଲଦାରଙ୍କ କୋର୍ଟରେ ପଡଲା । ମହାନ୍ତ ସାହେବ ବିଭିନ୍ନ ସୂତ୍ରରୁ ଜାଣିଗଲେ ଯେ କେସ ଟି ଏକ ମିଥ୍ୟା ଅଭିଯୋଗ ଅଟେ । ତେଣୁ କେସଟିକୁ ସେ ଖାରଜ କରିଦେଲେ ।

ଏତେ ବଡ ଷଡଯନ୍ତ୍ର, ପୋଲିସ ରିପୋର୍ଟ, କଚେରୀରେ ମୋକଦ୍ଦମା ଦାଏର, ମୋକଦ୍ଦମା ଖାରଜ ଆଦି କଥା ମୁଁ କିଛି ଜାଣି ପାରି ନ ଥିଲି । ଥାନାବାବୁ ନୀଳାମ୍ବର ମିଶ୍ର ଦିନେ ରେମଣ୍ଡା ଆସି ମୋର ପିତାମହୀଙ୍କୁ ଭେଟି ଏହି ସମସ୍ତ କଥା କହିଥିବାରୁ ମୋର ପିତାମହୀ ତାପରେ ଏକ ଚିଠି କାହାରି ଦ୍ୱାରା ଲେଖାଇ ମୋ ପାଖକୁ ପଠାଇଥିଲେ । ତାହା ପଢ଼ି ମୁଁ ସେଠାରେ ବିସ୍ମିତ ହୋଇ ପଡ଼ିଲି । ଇତି ପୂର୍ବେ ମୋର ସେହି ପରିତ୍ୟକ୍ତା ପତ୍ନୀକୁ ଆଣିବା ସକାଶେ ମୋ ମନରେ ବେଳେ ବେଳେ ଯେଉଁ କିଛିର ସଙ୍କଟ ଦେଖା ଦେଉଥିଲା ଏବଂ ସେଥିରୁ ମୁଁ ମୋର ମତ ପରିବର୍ତ୍ତନ କରି ତାକୁ ପୁନରାୟ ଘରକୁ ଆଣିବା ସକାଶେ ଯେଉଁ କ୍ଷୀଣ ଆଶା ମନରେ ପୋଷଣ କରିଥିଲି ଏହି ଘଟଣା ଶୁଣିବା ପରେ ତାହା ଚିରଦିନ ମୋ ମନରୁ ଅନ୍ତର୍ହିତ ହୋଇ ଯାଇଥିଲା ।

## ପୁନର୍ବିବାହ

ଘୋଁସରୁ ପରିବର୍ତ୍ତିତ ହୋଇ ତାପରେ ମୁଁ ନିଜ ଘରଠାରୁ ୭ ମାଇଲ ଦୂର ସଂକ୍ରୀଡା ସ୍କୁଲରେ ଶିକ୍ଷକ ରୂପେ ଯୋଗଦାନ କରିଥିଲି । ମୋର ପ୍ରଥମ ବିବାହ ବିଫଳ ହୋଇଯିବା ପରେ ମୁଁ ପୁନରାୟ ବିବାହ କରିବାକୁ ସ୍ଥିର କଲି । ଏଥିପାଇଁ ମୋ ଆଗରେ ନାନା ସମସ୍ୟା ଦେଖା ଦେଇଥିଲା । ଲୋକେ କହିଲେ ବ୍ରାହ୍ମଣ ଜାତି । ପୂର୍ବ ସ୍ତ୍ରୀ ଭରଣ ପୋଷଣ ମୋକଦ୍ଦମା କରି ହଇରାଣ କରିଦେବ । ତେଣୁ ତାକୁ ଅଣାଯାଉ । ଆଉ କେତେକ କହିଲେ ଯେ ଗୋଟିଏ ଦୁଷ୍ଟା ସ୍ତ୍ରୀକୁ ଘରକୁ ଆଣିବା ଅର୍ଥ ସାରାଜୀବନ ଦହଗଞ୍ଜ ହୋଇ ମରିବା ସାର ହେବ । ଏପରି କ୍ଷେତ୍ରରେ ଗୋଟିଏ ନୂତନ ବିବାହ କରିବା ଶ୍ରେୟସ୍କର ।

ମୁଁ ନିଜେ ଚିନ୍ତା କରି ସ୍ଥିର କଲି ଯେ ନୂତନ ବିବାହ କରିବା ଉଚିତ ହେବ । ତେଣୁ ଦିନେ ମୁଁ ମୋର ପିତାମହୀଙ୍କର ପରାମର୍ଶ ଲୋଡ଼ିଲି । କାରଣ ପରିବାର ମଧ୍ୟରେ ଥାଉଁ କେବଳ ସେ ଓ ମୁଁ । ମୋ କଥା ଶୁଣି ସେ କହିଲେ

ଦୁଷ୍ଟା ଭରିଜା ସ୍ନେହ ଦେଖି<br>
ଯେ ଗୃହୀ କାମ ଲୋଭେ ରଖି<br>
ସକଳ ଧର୍ମ ତାର ନାଶ<br>
ଅନ୍ତେ ନରକେ କରେ ବାସ ।

'ଯାହା ବିପତ୍ତି ପଡ଼ବ ପଡୁ ପଛକେ, ତୁ ଆଉ ଗୋଟିଏ ବିବାହ କରି ପକା' । ସେତେବେଳେ ମୋର ବୟସ ହୋଇଥାଏ ୨୧ ବର୍ଷ । ତାଙ୍କର ଉପଦେଶକ୍ତ ଯୁକ୍ତି ମୋର ମନର ଭାବନାକୁ ପୂର୍ଣ୍ଣ ରୂପେ ସ୍ୱାଗତ କଲା ।

ତାପରେ ବିବାହ ସକାଶେ ଝିଅ ଖୋଜା ଚାଲିଲା । କେତେଗୋଟି ଗାଁକୁ ଝିଅ ଦେଖି ମଧ୍ୟ ଗଲି । ପରିଶେଷରେ ପଦ୍ମଲୋଚନ ଶତପଥି ନାମରେ ଜଣେ ମୋର ହିତୈଷୀ ବ୍ୟକ୍ତି ମୋ ପାଇଁ ଏକ କନ୍ୟା ତାଲଶ୍ରୀଗିଡାରେ ସ୍ଥିର କରି ଦେଇ ଆସି ମୋତେ କହିଲେ ।

ବିମଳେଶ୍ୱର ମିଶ୍ର ନାମରେ ଜଣେ ବ୍ୟକ୍ତି ଉକ୍ତ ଗ୍ରାମରେ ଶିକ୍ଷକ ଥାନ୍ତି । ତାଙ୍କର ଦ୍ୱିତୀୟା କନ୍ୟା ନାମ ଭଗବତୀ ।

ତାଙ୍କୁ ବିବାହ କରିବା ସ୍ଥିରୀକୃତ ହେଲା । ବିମଳେଶ୍ୱର ବାବୁ ମୋର ଗୁଣ ଗାରିମା ସହିତ ପରିଚିତ ଥାନ୍ତି । ଶିକ୍ଷକ ମହଲରେ ମଧ୍ୟ ମୋର କାର୍ଯ୍ୟ ଦକ୍ଷତାର ପ୍ରସାର ବ୍ୟାପି ଯାଇଥାଏ । ମୋତେ ଜାମାତା ରୂପେ ପାଇଲେ ସେ ଖୁସି ହେବେ ବୋଲି ସମ୍ବାଦ ମଧ୍ୟ ଦେଲେ ।

ଗୋଟିଏ ପତ୍ନୀ ଥାଉଁ ଥାଉଁ, ପୁଣି ତାର ଜଞ୍ଜାଳ କିଛି ନ ଛିଣ୍ଡାଇ ଥିବା ସତ୍ତ୍ୱେ ଜଣେ ଶିକ୍ଷିତ ବ୍ୟକ୍ତି ତାଙ୍କର କନ୍ୟାକୁ ମୋ ପରି ଜଣେ ଯୁବକକୁ ବିବାହ ଦେବା ଯେ ଏକ ଦୁଃସାହସିକ ପଦକ୍ଷେପ ଏହା ନିଃସନ୍ଦେହ । ତଥାପି ସେ ମୋ ଠାରେ କି ଗୁଣ ଥିବାର ଦେଖିଲେ ଅଳ୍ପ ସମୟ ଦେଖା ସାକ୍ଷାତ ଏବଂ ମୋ ମୁହଁରୁ ଦୁଇ ଚାରି ପଦ କଥା ଶୁଣି ସେତିକିବେଳେ ଯେଉଁ କେତେ ପଦ କଥା ମୋର ଭବିଷ୍ୟତ ନେଇ କହିଥିଲେ ଆଜି ସେ ସବୁ କଥା ଅକ୍ଷରେ ଅକ୍ଷରେ ସତ ହୋଇଛି । ସେ କହିଥିବା ସମସ୍ତ କଥା ଏବେ ବି ମୁ ମନେ ରଖିଛିଁ ।

ସେ କହିଥିଲେ ଏ ପିଲା ହାତରେ ମୁ ମୋର ଝିଅକୁ ଦେଇ କିଛି ଭୁଲ କରୁ ନାହିଁ । ୟାଙ୍କର ଆଉ ଗୋଟିଏ ସ୍ତ୍ରୀ ଅଛି ସତ୍ୟ, ତଥାପି ମୋର ବିଶ୍ୱାସ ମୋ ଝିଅ ପ୍ରତି ଇଏ କେବେ ମଧ୍ୟ କୃତଘ୍ନତା ଆଚରଣ ଦେଖାଇବେ ନାହିଁ । ଆପାତତଃ ୟାଙ୍କର ମନୋଭାବ ଯାହା ସେଥିରେ ମୁ ସ୍ପଷ୍ଟ ମନେକରୁଛି ଯେ ଇଏ ତାଙ୍କର ପୂର୍ବ ସ୍ତ୍ରୀକୁ କେବେ ମଧ୍ୟ ଆଣିବେ ନାହିଁ ।'

ବାସ୍ତବିକ ତାଙ୍କର ସେହି ଭବିଷ୍ୟତ ବାଣୀ ମୋର ଉତ୍ତର ଜୀବନରେ ସତ୍ୟ ରୂପେ ପରିଣତ ହୋଇଥିଲା ।

୧୯୩୬ ସାଲ ମୟୀ ମାସ ୧୩ ତାରିଖରେ ମୁଁ ପୁନର୍ବିବାହ କରିଥିଲି । ତାହା ବାଲ୍ୟ ବିବାହ ଥିଲା । ୧୯୩୯ ସାଲ ଜାନୁୟାରୀ ମାସ ୨୩ ତାରିଖ ଦିନ ମୋର ବନ୍ଧାପନା (ପୁଅାଣି) ହୋଇଥିଲା ।

ମୋର ସ୍ତ୍ରୀ ଆମ ଘରକୁ ଆସିବାର ୨ ବର୍ଷ ପରେ ୧୯୪୧ ସାଲ ଫଗୁଣ ମାସରେ ମୋର ଶ୍ୱଶୁରଙ୍କର ଦେହାବସାନ ଘଟିଥିଲା । ସେ ଜଣେ ଉଚ୍ଚ-ମନା, ସରଳ ପ୍ରକୃତି ତଥା ଅମାୟିକ ବ୍ୟକ୍ତି ଥିଲେ । ତାଙ୍କ ଜୀବଦ୍ଦଶାରେ ସେ କେତେଖଣ୍ଡ ବହି ମଧ୍ୟ ଲେଖିଥିଲେ । ସେ ସମସ୍ତ ପାଣ୍ଡୁଲିପି ଆକାରରେ ରହି ଯାଇ ଥିବାର ଶୁଣାଯାଏ ।

## ଭରଣ ପୋଷଣ ମୋକଦ୍ଦମା

ମୁଁ ଦ୍ୱିତୀୟ ବିବାହ କରିଦେବା ପରେ ମୋର ପୂର୍ବ ସ୍ତ୍ରୀ ମୋ ନାମରେ ଏକ ଭରଣ ପୋଷଣ ମୋକଦ୍ଦମା ବରଗଡ ମୁନସଫ କୋର୍ଟରେ ଆଗତ କରି ଦେଲା । କେତେ ଥର ବରଗଡ ଯିବା ଆସିବା କରି ସାରିବା ପରେ ଦିନେ ବିଚାର ଦିନ ଆସି ପହଞ୍ଚି ଗଲା । ମୋ ପକ୍ଷରୁ କେବଳ ମାତ୍ର ମୁଁ କଚେରୀରେ ଉପସ୍ଥିତ ହେଉଥାଏ । କେହି ଜଣେ ମଧ୍ୟ ମୋତେ ସାହାଯ୍ୟ କରିବାକୁ ଆସୁ ନ ଥାନ୍ତି । ମୋକଦ୍ଦମାର ବିଚାର ବେଳେ ସାକ୍ଷ ଅନ୍ତତଃ ପକ୍ଷେ ୨ ଜଣ ଦରକାର । ମୋର ତାହା ବି ନ ଥାନ୍ତି ।

ଅନ୍ୟ ପକ୍ଷରେ ପ୍ରାୟ ୧୦।୧୫ ଜଣ ବ୍ୟକ୍ତି ପ୍ରତି ତାରିଖରେ ଦଳବଳ ସହିତ ଆସୁଥାନ୍ତି ।

ଅପର ପକ୍ଷର ହସ ଖୁସି, କଥାବାର୍ତ୍ତା, ଯିବା ଆସିବାରେ ତତ୍ପରତା ଆଦି ମୁଁ ନୀରବରେ କଚେରୀ ବାରଣ୍ଡାରେ ବସି ଦେଖୁଥାଏଁ । ସେ ଦିନ ଶୁଣାଣି ହେବ ବୋଲି ମୋ ପକ୍ଷର ଓକିଲ ମୋତେ କେତେକ ମିଛକଥା କହିବାକୁ ସକାଳେ ଶିଖାଇ ଦେଇଥାନ୍ତି ।

ମୁଁ କିନ୍ତୁ ଭାବୁଥାଏଁ କେସରେ ମୋର ତ ପରାଜୟ ଘଟିବ କାରଣ ମୋର ଲୋକବଳ ନ ଥିଲେ । ତେବେ ମିଛ କହିବି କାହିଁକି ? ସାହେବ ଆଗେ ସତ କଥା କହି ଦେଲେ ତେଣିକି ଯାହା କରିବେ । କେବଳ ମାତ୍ର ଭଗବାନ ହିଁ ମୋର ସହାୟ ଭାବି ମୁଁ ମୁହଁ ଶୁଖାଇ ବସିଥାଏଁ । ଏପରି ସମୟରେ ଡକରା ଆସିଲା । ମୁଁ ଏବଂ ମୋର ତଥାକଥିତା ସ୍ତ୍ରୀ ଇଜଲାସ ଉପରେ ଯାଇ ସେ ଗୋଟିଏ ପଟେ ଏବଂ ମୁଁ ଗୋଟିଏ ପଟେ ଛିଡା ହୋଇଗଲୁ ।

ଆମ ଦୁଇପକ୍ଷର ଓକିଲମାନେ ବି ଆସି ଯାଇଥାନ୍ତି । ସେତେବେଳେ ରମେଶ ଚନ୍ଦ୍ର ମିତ୍ର ନାମରେ ଜଣେ ମୁନସଫ ଥାଆନ୍ତି । ସେ ମୋତେ ଦେଖି ପଚାରିଲେ ତୁମ୍ଭର କଣ କହିବାର ଅଛି କହ ? ନିଜକୁ ନିତାନ୍ତ ଅସହାୟ ବୋଧ କରି ମୁଁ ସାହେବଙ୍କୁ କହିଲି ଯେ ଆଜ୍ଞା ମୁଁ କେତେକ କଥା କହୁ କହୁ ହୁଏତ ଏଠାରେ ତାହା ଅସଙ୍ଗତ ହୋଇପାରେ । କିନ୍ତୁ ମୁଁ ଯାହା କହିବି ତାହା ଯେ ଖାଣ୍ଟି ସତ୍ୟ ଏହା ମୁଁ ଅତି ଦମ୍ଭର ସହିତ ଆପଣଙ୍କ ଆଗେ କହୁଛି । ମୋ ଓକିଲ ଉପସ୍ଥିତ ଅଛନ୍ତି ଏବଂ ଅନ୍ୟ ପକ୍ଷର ଓକିଲ ମଧ୍ୟ ଅଛନ୍ତି । ମୁଁ ସେମାନଙ୍କର ଯୁକ୍ତିତର୍କ ଜେରା ଆଦି କିଛି ଆବଶ୍ୟକ କରେ ନାହିଁ । ଆପଣ ବିଚାରପତି ମୋ କଥା ଏବଂ ମୋର ଏହି ସ୍ତ୍ରୀଙ୍କୁ ପଚାରି ତାଙ୍କ କଥା ଶୁଣି ଆପଣ ଯାହା ନିଷ୍ପତ୍ତି କରିବେ ମୁଁ ସେଥିରେ ରାଜି ଅଛି । ଏତକ କହି ଦେଇ ତାପରେ ମୁଁ ମୋର ବକ୍ତବ୍ୟରେ ଘଟଣାର ସମସ୍ତ ବିବରଣ ଠିକେ ଠିକେ କହି ଦେଲି ।

ସାହେବ ତାହା ଶୁଣି ସ୍ତବ୍ଧ ହୋଇଗଲେ । ତାପରେ କହିଲେ ଯେ ଅଧଘଣ୍ଟା ପରେ ଆସିବ ଯାଅ । ଆରପକ୍ଷକୁ କହିଲେ ଯେ ଏହି ଅଧଘଣ୍ଟା ମଧ୍ୟରେ ଯାଅ ରାଜିନାମା ହୋଇ ଆସ । ତାପରେ ଆମେ ଚାଲି ଆସିଥିଲୁ । ଆମ୍ଭ ମାନଙ୍କର ଏହି ସମସ୍ତ କଥା ଶୁଣି ବୁର୍ଦ୍ଧା ଗ୍ରାମର ଶ୍ରୀନିବାସ ପଣ୍ଡା ନାମରେ ଜଣେ ବ୍ୟକ୍ତି ଆମ ଦୁଇପକ୍ଷକୁ ନାନା ପ୍ରକାରେ ବୁଝାବୁଝି କରାଇ କେସଟିକୁ ରାଜିନାମା କରାଇ ଦେଲେ ।

ମୁଁ ତାଙ୍କୁ ଚିରଦିନ ପାଇଁ ମୋଟା ଆକାରରେ କିଛି ନଗଦ ଟଙ୍କା କୋର୍ଟ ମାଧ୍ୟମରେ ଦେବା ସ୍ଥିର ହେଲା । ମାସକ ପରେ ମୁଁ ଉକ୍ତ ଟଙ୍କା କୋର୍ଟରେ ଦାଖଲ କରି ଦେଲି ଏବଂ ମୋକଦ୍ଦମା ଯେଉଁ ପରିପ୍ରେକ୍ଷୀରେ ନିଷ୍ପତ୍ତି ହୋଇ ଯାଇଥିଲା ।

ସେତେବେଳେ ମୁଁ ଯେଉଁ ଟଙ୍କା ଦେଲି ସେହି ଟଙ୍କାରେ ସେ ପାଞ୍ଚ ଏକର ଜମି କିଣି ନିଜ ବାପ ଘରେ ସ୍ୱତନ୍ତ୍ର ଭାବେ ରହିଥିଲା । ପରିଣାମରେ ସେ ନିଜ ବୁଦ୍ଧିବଳ ଖଟାଇ ନିଜ ଗାଁରେ ଧନୀ ପାଲଟି ଯାଇଥିଲା ।

୧୯୫୭ ସାଲରେ ଏକ ଅହେତୁକ କାରଣ ନେଇ ତାର ମୃତ୍ୟୁ ହୋଇ ଗଲା ।

# ସଙ୍କ୍ରୀଡାରେ ଅବସ୍ଥାନ ଏବଂ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଜଡିତ ।

ସଂକ୍ରୀଡା ଗ୍ରାମରେ ମୁଁ କ୍ରମାଗତ ସାତବର୍ଷ ପର୍ଯ୍ୟନ୍ତ ରହିଥିଲି । ଏହି ଗ୍ରାମର ଜନସାଧାରଣ ବିଶେଷ ସଂଖ୍ୟାରେ ବ୍ରାହ୍ମଣ ଜାତୀୟ । ବିଦ୍ୟା, ବୁଦ୍ଧି, ଜ୍ଞାନ ଗାରିମାରେ ଏଠାକାର ବ୍ୟକ୍ତି ବିଶେଷ ବିଶେଷ ପ୍ରବୀଣ । ଗ୍ରାମରେ ସାହିତ୍ୟ ଜ୍ୟୋତିଷ, କବିରାଜୀ, କର୍ମ କର୍ମାଣୀ ପ୍ରଭୃତି ବହୁବିଧ ଗୁଣଗରିମା ଲୋକଙ୍କ ନିକଟରେ ରହିଅଛି । ମାଲି ମୋକଦ୍ଦମାରେ ଏଠାକାର ଜନସାଧାରଣ ଅଭ୍ୟସ୍ତ । ତେଣୁ ଏଠାରେ ରହିବା ଫଳରେ ସକଳ ଦିଗରୁ ମୋର ବ୍ୟକ୍ତିଗତ ଉନ୍ନତି ସାଧିତ ହୋଇଥିଲା । ଏହି ଗ୍ରାମର ଜନୈକ ଶିକ୍ଷାନୁରାଗୀ ତଥା ବହୁ ବିଶିଷ୍ଟ ଗୁଣର ଅଧିକାରୀ ଶ୍ରୀଯୁକ୍ତ ଗଙ୍ଗାଧର ବିଶୀଙ୍କ ସହିତ ମୋର ସଖ୍ୟଭବ ସଂସ୍ଥାପିତ ହେବା ଫଳରେ ସାହିତ୍ୟ ଦିଗରେ ମୁଁ ବହୁତ କିଛି ତାଙ୍କ ଠାରୁ ଶିକ୍ଷାଲାଭ କରିଥିଲି । ତତ୍ ପୂର୍ବରୁ ଅର୍ଥାତ ୧୯୩୪ ସାଲରୁ ସାହିତ୍ୟ ପ୍ରତି ମୋର ଅନୁରାଗ ଜାତ ହୋଇ ଆସିଥିଲା । ସେତେବେଳେ ମୋରି ସମ୍ପାଦନାରେ 'ମିହିର' ନାମକ ଏକ ହାତଲେଖା ପତ୍ରିକା ବାହାରୁ ଥାଏ । ଗଙ୍ଗାଧର ବାବୁ ମଧ୍ୟ ଜଣେ ସାହିତ୍ୟ ରସିକ । ତେଣୁ ଆମ ଉଭୟଙ୍କ ମଧ୍ୟରେ ଅକ୍ଲେଶରେ ବନ୍ଧୁତା ଜନ୍ମି ଯାଇଥିଲା । ଜଗବନ୍ଧୁ ପୁରୋହିତ ନାମରେ ମଧ୍ୟ ଆଉ ଜଣେ ଯୁବକ । ସେ ଅତ୍ୟନ୍ତ ସାହସୀ ତଥା ସତ୍ କାମ ନିମିତ୍ତ ତାଙ୍କର ପ୍ରଗାଢ଼ ନିଷ୍ଠା ଥାଏ । କ୍ରମେ ତାଙ୍କ ସହିତ ମଧ୍ୟ ମୁଁ ମିଶି ଯାଇଥିଲି । ଜଗବନ୍ଧୁ ବାବୁଙ୍କ ଘରେ ମୁଁ ବର୍ଷାଧିକ କାଳ ରହିଥିଲି । ଗଙ୍ଗାଧର ବାବୁଙ୍କ ଘର ଠାରୁ ତାଙ୍କ ଘରର ବ୍ୟବଧାନ ମାତ୍ର ୪ ଫୁଟ । ସେଥିପାଇଁ ବହୁ ସମୟ ଆମେ ତିନିଜଣ ଏକତ୍ରିତ ହୋଇ ପାରୁଥାଉଁ ।

ସାହିତ୍ୟ, ଧର୍ମ, ସଙ୍ଗୀତ, ରାଜନୀତି ଆଦି ବିଷୟ ନେଇ ପ୍ରତ୍ୟହ ଆମ ଭିତରେ ଆଲୋଚନାଦି ହେଉଥାଏ । ସେମାନଙ୍କ ସାହଚର୍ଯ୍ୟ ହେତୁ ମୋର ଜୀବନ ପଥ ବହୁଳାଂଶରେ ସୁନିୟନ୍ତ୍ରିତ ହୋଇ ପାରିଥିଲା । ମୋ ପ୍ରତି ସେମାନଙ୍କର ଯେଉଁ ସ୍ନେହ ତଥା ସୌହାର୍ଦ୍ଦ୍ୟ ସେତେବେଳେ ଥିଲା ଏବେ ବି ତାହା ଅକ୍ଷୁର୍ଣ୍ଣ ରହି ଆସିଅଛି ।

ସ୍କୁଲରେ ସାପ୍ତାହିକ ଛାତ୍ର ସମ୍ମିଳନୀ, ଗଙ୍ଗାଧର ଶ୍ରାଦ୍ଧ ବାର୍ଷିକୀ, ଗୀତା ଜୟନ୍ତୀ, ଗଣେଶ ପୂଜା, ପୁରସ୍କାର ବିତରଣୀ ଆଦି ବହୁବିଧ ସାଂସ୍କୃତିକ କାର୍ଯ୍ୟମାନ କରାଯାଉଥାଏ । ମଧ୍ୟେ ମଧ୍ୟେ ସ୍କୁଲରେ ଏକାଙ୍କିକା ମାନ ମଧ୍ୟ ମୁଁ

ପିଲାଙ୍କୁ ଶିଖାଇ ଅଭିନୟାଦି ପ୍ରଦର୍ଶନ କରଉଥିଲି । ଗସ୍ତା ଘାଟ ସଫା କରିବା, ପୋଖରୀରୁ ଦଳ କାଢ଼ିବା ଆଦି କାମ ବି ମୁ ପିଲାଙ୍କୁ ନେଇ କରଉଥାଏ । ଧମା ଥାନା, ଅତାବିରା ଥାନା ଏବଂ ଭେଡେନ ଥାନା ଏହି ତିନିଗୋଟି ଥାନାକୁ ନେଇ ସେତେବେଳେ ଗୋଟିଏ ଶିକ୍ଷା ସର୍କଲ ଗଠିତ ହୋଇଥାଏ ଏବଂ ଜଣେ ସ୍କୁଲ ସ. ଇ. ରହି ଏହି ସର୍କଲରେ ଥିବା ସ୍କୁଲ ଗୁଡ଼କ ପରିଚାଳନା କରୁଥାନ୍ତି । ମୁ ଯେଉଁ ସମୟର କଥା କହୁଛି ସେତେବେଳେ ଆମର ସେହି ତଥାକଥିତ ସର୍କଲରେ ହୃଷୀକେଶ ନାୟକ ନାମକ ଜଣେ ସବ୍ଇନ୍ସ୍ପେକ୍ଟର ଥାନ୍ତି । ସେ ଜଣେ ଉତ୍ସାହୀ ତଥା ସଚ୍ଚୋଟ ବ୍ୟକ୍ତି ଥିଲେ ; ନିଜ ସର୍କଲର ଶିକ୍ଷକ ମାନଙ୍କ ଶିକ୍ଷାର ମାନ ବୃଦ୍ଧି ପାଇଁ ସେ ୧୫ ଦିନରେ ଥରେ ଲେଖା କେନ୍ଦ୍ର ସ୍କୁଲ ମାନଙ୍କରେ ଶିକ୍ଷା ସମ୍ମିଳନୀମାନ କରଉଥିଲେ । ପ୍ରତିବର୍ଷ ବାର୍ଷିକ ଶିକ୍ଷକ ସମ୍ମିଳନୀ ମଧ୍ୟ ହେଉଥାଏ ।

୧୯୩୯ ସାଲ ମାର୍ଚ୍ଚ ମାସ ୨୨/୨୩ ତାରିଖରେ ଦୁଇଦିନ ଧରି ଏହି ସମ୍ମିଳନୀ କାଦୋବାହାଲ ଗ୍ରାମରେ ହୋଇଥିଲା । ଉକ୍ତ ଦୁଇଦିନିଆ ସମ୍ମିଳନୀରେ ଲରମ୍ଭା ସ୍କୁଲ ପିଲାଏ ଏବଂ ସଂକ୍ରୀଡା ସ୍କୁଲ ଛାତ୍ର ଛାତ୍ରୀ ମାନେ ଗୋଟିଏ ଗୋଟିଏ ରାତିରେ ମନୋରଞ୍ଜନ ପାଇଁ ଦୁଇଟି ନାଟକ ଦେଖାଇବା ପାଇଁ ସ. ଇ. ନିର୍ଦ୍ଦେଶ ଦେଇଥାନ୍ତି ।

ସେହି ପରିପ୍ରେକ୍ଷୀରେ ମୁ ସଂକ୍ରୀଡା ସ୍କୁଲର ଛାତ୍ରଛାତ୍ରୀ ମାନଙ୍କୁ ନେଇ ସୁଦାମା ନାଟକଟି ଶିଖାଇ ଥିଲି । ଉକ୍ତ ନାଟକ କାଦୋବାହାଲ ଶିକ୍ଷକ ସମ୍ମିଳନୀର ପ୍ରଥମ ଦିନର ରାତିରେ ଅଭିନୀତ ହୋଇଥିଲା । କି ଅଦ୍ଭୁତ ଯୋଗରେ ସେହି ନାଟକଟି ସେଦିନ ରାତିରେ ଅଭିନୀତ ହୋଇଥିଲା ଯାହା ଫଳରେ ହଜାର ହଜାର ଦର୍ଶକ ତାହା ଦେଖି ବିସ୍ମିତ ତଥା ମୁଗ୍ଧ ହୋଇ ଯାଇଥିଲେ । ସେ ଦିନର ଅଭିନୟ ବେଳେ ଆମ ପିଲାଙ୍କ ଅଭିନୟ ଦେଖି ୬ ଗୋଟି ମେଡଲ ଘୋଷଣା କରାଯାଇଥିଲା । ସକାଳ ପାହିଲା ଯେମିତି ସମସ୍ତଙ୍କ ମୁଖରୁ ମୋର ପ୍ରଶଂସା ବାଣୀ ମୁଖରିତ ହୋଇ ପଡ଼ିଥିଲା ।

ତା ଆରଦିନ ଲରମ୍ଭା ତଥା କାଦୋବାହାଲ ସ୍କୁଲର ପିଲାଏ ଅଭିନୟ ଦେଖାଇ ଥିଲେ । ଉକ୍ତ ଅଭିନୟ ପୂର୍ବ ରାତ୍ରି ପରି ସମସ୍ତଙ୍କ ମନକୁ ଆକର୍ଷଣ କରି ପାରି ନ ଥିଲା ।

ସଂକ୍ରୀଡାରେ ମୁ ଥିବାବେଳେ ଏକ ପବ୍ଲିକ ଲାଇବ୍ରେରୀ, ସେବା ସମିତି ବିଭିନ୍ନ ଖେଳ ପ୍ରତିଯୋଗିତା ଆଦି କରାଇ ଜନସାଧାରଣଙ୍କ ଠାରୁ ବିଶେଷ ଲୋକପ୍ରିୟତା ଅର୍ଜନ କରି ପାରିଥିଲି । ସେତେବେଳେ ଯାହା ଯାହା ସବୁ କାର୍ଯ୍ୟଗୁଡ଼ିକ

ସେହି ଗ୍ରାମରେ କରଯାଇ ଥିଲ ଆଜି ମଧ୍ୟ ଲୋକେ ତାହା ଭୁଲି ପାରି ନାହାନ୍ତି । ଲଳିତ କଳା ବିଦ୍ୟାର ମୁ ଜଣେ ଯେ ନିଷ୍ଠାପର ସେବକ ଏହା ଅବିସମ୍ବାଦିତ । ହାରମୋନିୟମ ବଜାଇବାରେ ମୋର ଅଙ୍ଗୁଳି ଗୁଡକ ବେଶ୍ ପାରଙ୍ଗମ । ବଂଶୀ ବାଦନ କରିବା ମୋ ଜୀବନର ଏକ ସୌଖୀନ ବିଳାସ ।

ବିଭିନ୍ନ ରଙ୍ଗମଞ୍ଚରେ ଜଣେ ଅଭିନେତା ରୂପେ ଶତାଧିକ ଥର ଅବତୀର୍ଣ୍ଣ ହୋଇଥିବାର ଏବେ ମୋର ମନେ ପଡୁଛି । ସେହିପରି ବହୁ ନାଟକରେ ମୁ ନିର୍ଦ୍ଦେଶକ ରୂପେ ମଧ୍ୟ ନିର୍ଦ୍ଦେଶନା ଦେଇଅଛି ।

ଟଂକ୍ରୀଡାରେ ଏପରି ଭବେ ସର୍ବଜନାଦୃତ ହୋଇ ରହିଥିବା ବେଳେ ଏକ ବିଶେଷ ଘଟଣା ଘଟିଥିଲା । [redacted] ଜଣେ ସ୍କୁଲ ସଃ ଇଃ ଆସି ଥରେ ଆମ ସ୍କୁଲ ପରିଦର୍ଶନ କଲେ । ସେ ଯୁବକ ଶିକ୍ଷା ବିଭଗରେ ନୂତନ ଭବେ ପ୍ରବେଶ କରିଥିବା ହେତୁ ଶିକ୍ଷାଗତ ବିଷୟ ନେଇ ତାଙ୍କର ସେତେ ଜ୍ଞାନ ନ ଥାଏ । ଶିକ୍ଷକ ମାନଙ୍କୁ ସେ ତୁ, ତା ବ୍ୟବହାର କରୁଥାନ୍ତି । ତାଙ୍କର ସେହି ପ୍ରକାର ବ୍ୟବହାର ଦେଖି ମୋ ମନରେ କଷ୍ଟ ହେଲା । ତାଙ୍କ ଅଧୀନରେ କାମ କଲେ କାଳେ କୌଣସି ଅପ୍ରୀତିକର ଘଟଣା ଘଟିଯିବ ଏଥିପାଇଁ ମୁ ବିଭଗରୁ ବିଦାୟ ନେବା ଅଭିପ୍ରାୟରେ ଇସ୍ତଫା ପ୍ରଦାନ କରିଦେଲି । ଇସ୍ତଫା ପ୍ରଦାନ କରିଦେଇ ଆମ ଗାଁକୁ ଆସି ଦିନେ କି ଦୁଇଦିନ ରହିଛି ଏପରି ଅବସ୍ଥାରେ ଦୈବାତ୍ ଦିନେ ବରଗଡର କୃତାର୍ଥ ଆଚାର୍ଯ୍ୟଙ୍କ ସହ ମୋର ଦେଖା ହେଲା । ସେ ମୋତେ ମୋ ଠାରୁ ଇସ୍ତଫା ଦେବା କଥା ଶୁଣି ବିଶେଷ ଖୁସି ହେଲେ ଏବଂ ତାଙ୍କ ସମ୍ବଲପୁରୀ ବସ୍ତ୍ରାଳୟରେ କାମ କରିବାକୁ କହିଲେ । ସେତେବେଳେ ସେ କଟକରେ ତାଙ୍କର ଏକ ବ୍ରାଞ୍ଚ ଖୋଲିବାକୁ ଭବି ଥାଆନ୍ତି ଏବଂ ଜଣେ ଯୋଗ୍ୟ ବ୍ୟକ୍ତିର ସନ୍ଧାନରେ ଥାନ୍ତି । ମୋଠାରୁ ସମ୍ମତି ସେ ନେଇ ନିମ୍ନମତେ ଏକ ନିଯୁକ୍ତି ପତ୍ର ପଠାଇ ଦେଲେ ।

The Sambalpuri Bastraloy
·Ref No 159/41

P.o. Bargarh, Dist- Sambalpur
Dated 21st. October 1941

ଶ୍ରୀ ବୀରବର ଦାଶ, ରେମଣ୍ଡା

ଶୁଣିବାରେ ଆପଣ ଆମ ଦୋକାନରେ କାମ କରିବାକୁ ଚାହାନ୍ତି । ବିଶେଷତଃ ଆପଣଙ୍କୁ ଆମେ କଟକ ଦୋକାନରେ କାମ କରିବାକୁ ସ୍ୱୀକୃତ କରି ସାରିଅଛୁ । ଏଣୁ ଆପଣଙ୍କୁ ଟ ୮-୦୦ ବେତନରେ ଆମ ଏଠାରେ ମାସେ ଖଣ୍ଡେ ଟ୍ରେନିଂ ନେବାକୁ ହେବ । ଟ୍ରେନିଂ ନେଇ ସାରିବା ପରେ ଆପଣ ଟ ୨୦ (କୋଡ଼ିଏ ଟଙ୍କା) ବେତନରେ କଟକ ବ୍ରେଞ୍ଚରେ କାମ କରିବେ ।

ଏଣୁ ଆପଣ ଯେତେ ଶୀଘ୍ର ପାରନ୍ତ ଆସି ଆମ ଏଠାରେ କାମରେ ଯୋଗଦାନ କରନ୍ତୁ ।

Sd/- Krutarth Acharjya, Manager

ସମ୍ବଲପୁରୀ ବସ୍ତ୍ରାଳୟରୁ ନିଯୁକ୍ତି ପତ୍ରଟି ପାଇ କଟକ ଯିବା ପାଇଁ ପ୍ରସ୍ତୁତ ହୋଇ ପଡ଼ିଲି । ଏ ପଟେ ସ. ଇ. ମୋର ଇସ୍ତଫା ପତ୍ରଟି ପାଇ ଯାଇ ଥାନ୍ତି । ମୋର ଇସ୍ତଫା ଦେବା ଜାଣି ସେ ବିବ୍ରତ ହୋଇ ପଡ଼ିଲେ । ସଙ୍ଗେସଙ୍ଗେ ସାଇକଲ ଧରି ସେ ମୋ ନିକଟକୁ ନ ଆସି ଯୋଶ୍ଣା ସ୍କୁଲରେ ପହଞ୍ଚିଲେ । ଯୋଶ୍ଣା ସ୍କୁଲ ଶିକ୍ଷକ ରମଚନ୍ଦ୍ର ବିଶୀଙ୍କୁ ତାପରେ ମୋ ନିକଟକୁ ପଠାଇ ମୁ ତାଙ୍କ ନିକଟକୁ ଯିବାକୁ କହିଲେ । ମୁ ଯିବାକୁ ମନା କରି ଦେଲି । ତାହା ଶୁଣି ସେ ଏବଂ ରମଚନ୍ଦ୍ର ବାବୁ ଉଭୟେ ମୋ ନିକଟକୁ ଆସି ଇସ୍ତଫା ପତ୍ରଟି ଫେରାଇ ନେବାକୁ ମୋତେ ଅନୁରୋଧ କଲେ । ମୋର ଦୋଷ କ୍ଷମା କରନ୍ତୁ ବୋଲି ବାରମ୍ବାର କହିଲେ । ତାଙ୍କ କଥା ଶୁଣି ମୋ ମନ ପରିବର୍ତ୍ତିତ ହୋଇଗଲା । ଇସ୍ତଫା ପତ୍ରଟିକୁ ସେ ସଙ୍ଗରେ ଧରି ଆସିଥାନ୍ତି । ତାକୁ ତାଙ୍କଠୁ ଆଣି ଶେଷରେ ତାଙ୍କ ସମକ୍ଷରେ ଫାଡ଼ ଦେଇଥିଲି । ଫଳରେ ମୋର କଟକ ଯାଇ କାମ କରିବା ବନ୍ଦ ହୋଇଗଲା ।

ସଂକ୍ରୀଡ଼ାରୁ ୨ ମାସ ପାଇଁ ମୋତେ ଭେଡେନକୁ ଟ୍ରାନ୍ସଫର ହେଲା । ତାପରେ ମୋତେ ରେମଣ୍ଡା ଟ୍ରାନ୍ସଫର ହୋଇଥିଲା । ରେମଣ୍ଡା ଆସି ମୁ ବିଭିନ୍ନ ଶିକ୍ଷାନୁଷ୍ଠାନରେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ୧୬ ବର୍ଷ କାଳ ବିତିଗଲା । ବିଭିନ୍ନ ଗଠନ ମୂଳକ କାମ ମାନଙ୍କରେ ସଂଶ୍ଳିଷ୍ଟ ହୋଇ ପଡ଼ିଲି । ବିଭିନ୍ନ ଗଠନ ମୂଳକ କାର୍ଯ୍ୟ ମାନଙ୍କ ମଧ୍ୟରୁ ପ୍ରାଥମିକ ସ୍କୁଲ ଶିକ୍ଷକ ସଂଗଠନ, ବିଧବା ବିବାହ ଆନ୍ଦୋଳନ, ବ୍ରାହ୍ମଣ ଜାତୀୟ ସଭା ସ୍ଥାପନ, ପବ୍ଲିକ ଲାଇବ୍ରେରୀ, କୃଷକ ସଂଘ, ଗ୍ରାମ ମଙ୍ଗଳ ସମିତି, କୋ-ଅପରେଟିଭ ସୋସାଇଟି ଗଠନ, ରେମଣ୍ଡା ହାଇସ୍କୁଲ ପ୍ରତିଷ୍ଠା ଆଦି ଅନୁଷ୍ଠାନ ଗୁଡ଼ିକ ଅନ୍ୟତମ ।

ଅନୁଷ୍ଠାନ ଗୁଡ଼ିକ ଖୋଲଯାଇ ତହିଁର ଦୃଢ଼ୀକରଣ ନିମିତ୍ତ ପ୍ରତ୍ୟେକ ଅନୁଷ୍ଠାନରେ ମୋତେ ସଂପାଦକ ରୂପେ ରହିବାକୁ ପଡ଼ିଥିଲା । ମୋର ମୌଳିକ ଆଭିମୁଖ୍ୟ ହେଲା ଜନସେବା । ଏଥିପାଇଁ ପିଲାଟି ଦିନରୁ ମୋ ମନରେ ବାସନା ଜାଗି ଉଠିଥାଏ । ତାକୁ ରୂପ ଦେବା ପାଇଁ ଯେତେବେଳେ ମୁ ସୁବିଧା ସୁଯୋଗ ପାଇଛି ତାର ସଦୁପଯୋଗ କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲି । କି ଅପୂର୍ବ ଉନ୍ମାଦନା ଯେତେବେଳେ ମୋ ପ୍ରାଣକୁ ଉନ୍ମାଦିତ କରି ରଖିଥିଲା ଯା ଫଳରେ ମୁ ନିଃସ୍ୱାର୍ଥ

ଭବରେ ସେ ଦିଗରେ ଲାଗି ପଡ଼ିବା ହେତୁ ପରିବାର ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ହୋଇ ପଡ଼ିଥିଲି ।

# ଦ୍ୱିତୀୟ ମହାଯୁଦ୍ଧ ଓ ତାହାର ପରିଣତି

## କର ବା ମର

୧୯୩୯ ସାଲ ସେପ୍‌ଟେମ୍ବର ମାସ ୨ ତାରିଖରୁ ଦ୍ୱିତୀୟ ଯୁଦ୍ଧ ଇଉରୋପରେ ଲାଗିଗଲା । ଇଂରେଜ ସରକାର ଭାରତରେ ପ୍ରତିଷ୍ଠିତ ହୋଇଥିବା ସାତଗୋଟି ପ୍ରଦେଶର କଂଗ୍ରେସ ମନ୍ତ୍ରୀମଣ୍ଡଳର ପରାମର୍ଶ ବିନା ଭାରତକୁ ଯୁଦ୍ଧରେ ଜଡ଼ିତ କରିଦେବାରୁ ସମସ୍ତ ମନ୍ତ୍ରୀ ଇସ୍ତଫା ପ୍ରଦାନ କରି ଚାଲି ଆସିଲେ । ମହାତ୍ମା ଗାନ୍ଧୀ ଏହି ପରିସ୍ଥିତିରେ ବିଚଳିତ ହୋଇ ପଡ଼ି ଭାରତ ଜନ ସାଧାରଣଙ୍କୁ କର ବା ମର ଏହି ନୀତି ଘୋଷଣା କରିଦେଲେ ।

କଂଗ୍ରେସ କର୍ମୀ ଗଣ ଏହି ନିର୍ଦ୍ଦେଶ ପାଇ ଭାରତର ବିଭିନ୍ନ ଅଞ୍ଚଳରେ ଧ୍ୱଂସ ମୂଳକ କାମ ମାନ କରିବାରେ ଲାଗି ପଡ଼ିଲେ । ଶାସକ ଗଣ କଂଗ୍ରେସ କର୍ମୀ ମାନଙ୍କୁ ନେଇ ଜେଲରେ ପୂରାଇ ଦେଉଥାନ୍ତି । ବିପ୍ଳବର ନେତୃତ୍ୱ ନେଇ ଥାନ୍ତି ସ୍ୱୟଂ ମହାତ୍ମା ଗାନ୍ଧୀ । ସେହି ବିପ୍ଳବରେ ଗାନ୍ଧିଜୀଙ୍କ ଠାରୁ ନିର୍ଦ୍ଦେଶ ପତ୍ର ଆଣି ଆମ ଗାଁର ମଙ୍ଗଲୁ ପଧାନ, ଲକ୍ଷ୍ମଣ ଯେଶୋଓ୍ୱାଲ, ଦ୍ୱାରିକା ମହାପାତ୍ର, ରାମଚନ୍ଦ୍ର ନନ୍ଦ, ହନୁ ପଧାନ; ଯୋଗେନ୍ଦ୍ର ଦୋରା, ଭୀମସେନ ସାହୁ ପ୍ରମୁଖ କେତେକ କଂଗ୍ରେସ କର୍ମୀ ଧ୍ୱନିପାଠ କରିବାକୁ ଭେଡେନ ପୋଲିସ ସ. ଇ. ଙ୍କୁ ଜଣାଇ ଦେଲେ ।

ଭେଡେନରେ ସେତେବେଳେ ନବକିଶୋର ଜେନା ନାମରେ ଜଣେ ପୋଲିସ ସ. ଇ. ଥାନ୍ତି । ଖବର ପାଇ ସେ ୨୦୦ ଜଣ ଚୌକୀଦାର, କେତେଜଣ କନଷ୍ଟବଲ ଆଦିଙ୍କୁ ସଙ୍ଗେ ନେଇ ରେମଣ୍ଡା ଗ୍ରାମରେ ପହଞ୍ଚିଲେ । ପ୍ରତ୍ୟେକ ଚୌକୀଦାର ସେଦିନ ନିଜ ନିଜ ଚୌକୀଦାରୀ ଡ୍ରେସରେ ସଜ୍ଜିତ ହୋଇ ବଲମ ବାଡ଼ ଗୋଟିଏ ଲେଖା ହାତରେ ଧରି ଧାଡ଼ବାନ୍ଧି ଗାଁର କେନ୍ଦ୍ରସ୍ଥଳ ଗୁଡ଼ି ତଳକୁ ଆସି ଗୋଲାକାର ଭାବେ ଠିଆ ହୋଇଗଲେ । ସତ୍ୟାଗ୍ରହୀ ଗଣ ତାପରେ ଜଣ ଜଣ କରି ଲିଖିତ ଧ୍ୱନିପତ୍ର ପାଠ କରିଥିଲେ । ସମସ୍ତଙ୍କୁ ଏରେଷ୍ଟ କରି ଜେନାବାବୁ ଭେଡେନ ନେଇ ଆସିଥିଲେ । ପରେ କୋର୍ଟରେ ସେମାନଙ୍କର ବିଚାର ହୋଇ

କାହାକୁ ବର୍ଷେ; କାହାକୁ ଦୁଇବର୍ଷ, କିଏବା ୬ମାସ ଏପରି ଜେଲ ହୋଇଥିଲା ।

ଅନିରୁଦ୍ଧ ସାହୁଙ୍କୁ ଅଟକ ବନ୍ଦୀ ରୂପେ ଘଟଣାର କେତେ ଦିନ ଆଗରୁ ନିଆ ଯାଇଥାଏ । ପରେ ପରମେଶ୍ୱର ସଙ୍ଘପ ନାମରେ ଜଣେ ବ୍ୟକ୍ତିଙ୍କୁ ମଧ୍ୟ ୩ ମାସ ଜେଲଦଣ୍ଡ ହୋଇଥିଲା ।

ରେମଣ୍ଡାରେ ଘଟିଥିବା ସେ ଦିନର ଘଟଣା ସାରା ଜିଲ୍ଲାରେ ଚହଳ ପକାଇ ଦେଇଥିଲା । ମୋର ମଧ୍ୟ ସେମାନଙ୍କ ସହ ସତ୍ୟାଗ୍ରହ କରିବାର ଥିଲା କିନ୍ତୁ ମୋର ପିତାମହୀ ଏଥିରେ କନ୍ଦାକଟା କରି ତୀବ୍ର ରୂପେ ବିରୋଧ କରିବାରୁ ମୁଁ ଅଗତ୍ୟା ତହିଁରୁ ଓହରି ଗଲି ।

ଦ୍ୱିତୀୟ ମହାଯୁଦ୍ଧର ଘନଘଟା । ୟୁରୋପ ପରିସ୍ଥିତି ଅତ୍ୟନ୍ତ ସଂକଟାପନ୍ନ । ଭରତର ପୂର୍ବପଟେ ଜାପାନୀ ଆକ୍ରମଣ । ବଙ୍ଗପ୍ରଦେଶରେ ଦୁର୍ଭିକ୍ଷ । ଯୁଦ୍ଧର ଭୟାବହତା ଯୋଗୁଁ ଉତ୍ପାଦନ ହ୍ରାସ । ଦରଦାମ ବୃଦ୍ଧି । ଋଉଳ ବସ୍ତା ହଠାତ୍ ଟ୨୦, ଟ୨୨ ରୁ ଟ୬୪, ଟ୭୦, ଟ୭୨ କୁ ବୃଦ୍ଧି ହୋଇଗଲା । କିରୋସିନ ତେଲ ବୋତଲ ଦୁଇଅଣାରେ ଯାହା ମିଳୁଥିଲା ତାହା ଟ୧, ଟ୧୪ ହୋଇଗଲା । ଧାନ ଟଙ୍କାକୁ ୪ ସେର । ଏପରି ପରିସ୍ଥିତିରେ ବହୁ ପ୍ରାଥମିକ ଶିକ୍ଷକ ମାସିକ ବେତନ ଟ୧୨, ଟ୮ ରେ କାର୍ଯ୍ୟ କରିବା ଅସମ୍ଭବ ମନେ କରି କାମମାନ ଛାଡ ଦେଇ ଅନ୍ୟ ଧନ୍ଦାମାନ ଧରିବାକୁ ଲାଗିଲେ । ସମସ୍ତ କଳ କାରଖାନା ବନ୍ଦ । ଯାହା କିଛି ଥାଏ ତାର ଇଞ୍ଜିନ ଗୁଡକୁ ଇଂରେଜ ସରକାର ନେଇ ଯାଇ ଯୁଦ୍ଧରେ ଲଗାଇ ଦେଉ ଥାନ୍ତି । ଲୁଗା ଖଣ୍ଡକର ଦାମ୍ ପ୍ରଚଳିତ ଦାମ୍ ଠାରୁ ହଠାତ୍ ୭/୮ ଗୁଣ ବୃଦ୍ଧି ପାଇଗଲା ।

ଏହି ପରିସ୍ଥିତିରେ ପଡ଼ ମୁଁ ମଧ୍ୟ ବିଶେଷ ଅର୍ଥାଭବର ସମ୍ମୁଖୀନ ହୋଇ ପଡ଼ଗଲି । ଶିକ୍ଷକ ଗଣ ହା ହତାଶ ଭବେ ପଡ଼ ରହିଥାନ୍ତି । କଟକ ଜିଲାର କୁଜଙ୍ଗରେ ଏକ ଜାପାନି ବୋମା ପଡ଼ ଯିବାରୁ କଟକ ଆକ୍ରମଣ ହେବ ଏହି ଆଶଙ୍କାରେ କଟକର ସେକ୍ରେଟେରିଏଟ୍ ସମ୍ବଲପୁର ଚାଲି ଆସିଲା । ଗୁଡାଏ ଲୋକ ସମ୍ବଲପୁରରେ ଅବସ୍ଥାନ କରି ରହିଲେ । ଫଳରେ ପରିବା ପତ୍ର ସେହି ଦିନ ଠାରୁ ଏହି ଜିଲାରେ ସେର ଓଜନରେ ବିକା କିଣା ଲାଗିଲା ।

ଯୁଦ୍ଧ ସରିଗଲା । ତଥାପି ଜିନିଷ ପତ୍ରର ଦରଦାମ କମିବା ଦୂରେ ଥାଉ ବରଂ ବଢ଼ିବାରେ ଲାଗି ରହିଲା ।

ଏପରି ପରିସ୍ଥିତିରେ ୧୯୪୬ ସାଲ ମାର୍ଚ୍ଚ ମାସରେ ଅତାବିରା ସର୍କଲ ଶିକ୍ଷକ ବାର୍ଷିକ ସମ୍ମିଳନୀ ଲଖନପଲ୍ଲୀ ଗ୍ରାମରେ ହେବା ସ୍ଥିର ହେଲା । ଅତାବିରା

ସର୍କଲର ସମସ୍ତ ଶିକ୍ଷକ ଲସ୍କଲା ସ୍କୁଲରେ ଯାଇ ସମବେତ ହେଲେ । ମୁ ମଧ୍ୟ ରେମଣ୍ଡାରୁ ଅନ୍ୟାନ୍ୟ ଶିକ୍ଷକ ମାନଙ୍କ ସହିତ ସେଠାକୁ ଯାଇଥାଏ । ସେଠାରେ ପହଞ୍ଚି ଆମ୍ଭେମାନେ ଅବଗତ ହେଲୁ ଯେ ଅତାବିରା ଥାନାର ବିଭିନ୍ନ ଗ୍ରାମର ଭଦ୍ରବ୍ୟକ୍ତି ମାନଙ୍କୁ ନେଇ ସ୍କୁଲ ଥିବା ଗ୍ରାମ ମାନଙ୍କରେ ଗୋଟିଏ ଲେଖା ଅଭି- ଭବକ ସଂଘ ଗଢା ହେବ । ତାର ନେତୃତ୍ୱ ନେଇଥାନ୍ତି ସ. ଇ. ଶିଶିର କୁମାର ଦେ ଙ୍କ ପ୍ରରୋଚନାରେ ସ୍ଥାନୀୟ ଜନୈକ ଧନୀ ବ୍ୟକ୍ତି ବଜରଙ୍ଗଲାଲ ଅଗ୍ରୱାଲ । କିଛି ସମୟ ପରେ ଆମ୍ଭେ ଦେଖିବାକୁ ପାଇଲୁ ଯେ ବିଭିନ୍ନ ଗ୍ରାମରୁ ବହୁ ବ୍ୟକ୍ତି ଆସି ସେଠାରେ ଭେଳା ଭେଳା ହୋଇ ବୁଲୁଥାନ୍ତି ।

ଏହି ସମସ୍ତ କଥାର ଗୁରୁତ୍ୱ ବିବେଚନା କରି ସେତେବେଳେ ମୁ ଅନୁ- ଭବ କଲି ଯେ ଅଭିଭବକ ସଂଘ ଗଠନ ହେବା ପୂର୍ବରୁ ଶିକ୍ଷକ ସଂଘଟାଏ କାହିଁକି ଗଠନ କର ନ ଯିବ । ଆଲୋଚନା ଚାଲିଲା । ପ୍ରାୟ ୮୦% ଶିକ୍ଷକ ମୋ କଥାକୁ ସମର୍ଥନ କଲେ । ସ. ଇ. କିନ୍ତୁ ବାଧା ଦେଲେ । ତାଙ୍କ ବାଧା ସତ୍ତ୍ୱେ ଶିକ୍ଷକ ସଂଘ ଗଠିତ ହୋଇଗଲା । ସେ ଦିନର ଅପରାହ୍ଣ ଥିଲା ଅତି ଗୁରୁତ୍ୱପୂର୍ଣ୍ଣ । ସ୍କୁଲ ସ. ଇ. ଗୋଟାଏ ଦିଗରେ ମୁଷ୍ଟିମେୟ କେତେ ଜଣ ଚାଟୁକାର ଶିକ୍ଷକଙ୍କୁ ନେଇ ଗୋଟାଏ ପଟେ ସଭ କରି ବସିଥାନ୍ତି । ସଭକୁ ଛାଡ ପ୍ରାୟ ୨୦ ହାତ ଦୂରେ ଆମ୍ବତୋଟା ତଳେ ଆମ୍ଭେ ଗରିଷ୍ଠ ସଂଖ୍ୟକ ଶିକ୍ଷକ ଗଣ ଉପସ୍ଥିତ ହୋଇ ଥାଉ । ସମବେତ ଶିକ୍ଷକ ମାନଙ୍କ ମଧ୍ୟରୁ କେତେକ ସ. ଇ.ଙ୍କୁ ଡରି ଏ ପଟ ସେ ପଟ ହେବାରେ ଲାଗି ଥାଆନ୍ତି । ସେହି ସଙ୍କଟ ଜନକ ପରିସ୍ଥିତିରେ ହଠାତ୍ ମୁ ଗୋଟିଏ ଷ୍ଟୁଲ ଉପରେ ଛିଡା ହୋଇ ଶିକ୍ଷକ ମାନଙ୍କୁ ଉତ୍ସାହିତ କରିବା ଢଙ୍ଗରେ ପ୍ରାୟ ଘଣ୍ଟାଏ କାଳ ଭଷଣ ଦେଇଥିଲି । ଭଷଣଟି ଥିଲା ଅତ୍ୟନ୍ତ ଉତ୍ତେଜନାପୂର୍ଣ୍ଣ ତଥା ଚିତ୍ତାକର୍ଷକ । ଭଷଣ ଅଧା ହେବା ବେଳକୁ ଦେଖାଗଲା ଯେ କେବଳ ୨ ଜଣ ଶିକ୍ଷକଙ୍କ ବ୍ୟତୀତ ଆଉ ସମୁଦାୟ ଶିକ୍ଷକ ଆମରି ପରିସରର ଅନ୍ତର୍ଭୁକ୍ତ ହୋଇଯାଇ ଥାନ୍ତି । ଭଷଣ ସରିଗଲା । ଶିକ୍ଷକ ମାନଙ୍କର ଅନ୍ତର ତାତି ଉଠିଲା । ରେମଣ୍ଡାର ଜନୈକ ଶିକ୍ଷକ ମୁଟ୍ଟୁରୁ ନାୟକ ଏତିକିବେଳେ ଉଠି କହିଲେ ଯେ ସବୁ କଥା ତ ଶୁଣିଲ ଏବେ କୁହ ସଂଘ ଗଢା ହେବ କି ନାହିଁ । ତାଙ୍କ କଥାଶୁଣି ସମସ୍ତେ ତାପରେ ସମସ୍ୱରରେ କହି ଉଠିଥିଲେ ଯେ ସଂଘ ଗଢା ହେବ । ଆଜି ହେବ । ଏବେ ହେବ । ବିପୁଳ କରତାଳି ମଧ୍ୟରେ ପ୍ରସ୍ତାବଟି ତାପରେ ସମର୍ଥନ ଲାଭ କରିଥିଲା । ସଙ୍ଗେ ସଙ୍ଗେ ସଭପତି, ସମ୍ପାଦକ, ଇତ୍ୟାଦି ସବୁ ନିର୍ବାଚନ ପଦ୍ଧତିରେ ଗଠିତ ହୋଇଗଲା ।

ଅଭିଭବକ ସଂଘ ଗଠନ ପ୍ରସ୍ତାବ ଫସର ଫାଟିଗଲା । ଶିକ୍ଷା ସମ୍ମିଳନୀର

ନିମନ୍ତ୍ରଣ କ୍ରମେ ତା ଆରଦିନ ଆମ ସମ୍ମିଳନୀକୁ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ଡ. ବୋର୍ଡ଼ ଚେୟାରମେନ ରଜେନ୍ଦ୍ର ପଣ୍ଡା ଆସିଲେ । କେତେ ସମୟ ପରେ ଧମ୍ବଲପୁର ଜିଲ୍ଲାପାଳ ଭି. ରମନାଥନ ଏବଂ ବରଗଡ ଏସ୍. ଡ. ଓ. ଜଗନ୍ନାଥ ମିଶ୍ର ଆସି ପହଞ୍ଚିଲେ । ଶିକ୍ଷକ ସଭ ଚାଲିଥାଏ । ଉକ୍ତ ସଭରେ ସ. ଇ. ଶିଶିର କୁମାର ଦେ ଚେୟାରମେନ ରଜେନ୍ଦ୍ର ବାବୁଙ୍କୁ କହିଲେ ଯେ ଶିକ୍ଷକ ମାନେ ବେଆଇନ ଭବେ ସଂଘ ଗଠନ କରିଛନ୍ତି ତାକୁ ଆପଣ ଅସିଦ୍ଧ ଘୋଷଣା କରି ଦିଅନ୍ତୁ । ମୁଁ ଏତିକିବେଳେ ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କ ନିକଟକୁ ଯାଇ ତାଙ୍କୁ କହିଲି ଯେ ଉତ୍ତର ପ୍ରଦେଶରେ ଏପରି ଗଢା ଯାଇଛି । ସେ ତାହାଶୁଣି ଚେୟାର-ମେନଙ୍କୁ କହିଲେ ଯେ ଆପଣ ଏବେ ଡ. ବୋ.ର କଂଗ୍ରେସ ଚେୟାରମେନ । କଂଗ୍ରେସର ଲକ୍ଷ୍ୟ ହେଲା ସଂଗଠନ ଜରିଆରେ ଦାବୀ ହାସଲ କରିବା । ତେଣୁ ଏହି ସଂଘକୁ ବେଆଇନ କରିବା ପାଇଁ ସ. ଇ. ଯାହା କହୁଛନ୍ତି ତାହା କହିବା ତାଙ୍କର ବେଆଇନ ଅଟେ । କାରଣ ସେ ବ୍ରିଟିସ ସରକାରର ଗୋଲାମୀ ମନୋ-ଭବ ଏ ପର୍ଯ୍ୟନ୍ତ ପରିତ୍ୟାଗ କରି ନାହାନ୍ତି । ଭଦ୍ରଲୋକଙ୍କୁ ମୋର ଅନୁରୋଧ ସେ ଉତ୍ତରପ୍ରଦେଶକୁ ଯାଇ ଦେଖ କେତେ ଆଗେଇ ଗଲାଣି ତାହା ସନ୍ଦର୍ଶନ କରି ଆସନ୍ତୁ ।

ରଜେନ୍ଦ୍ର ବାବୁ ତାପରେ କହିଲେ ଯେ ମୁଁ ଚେୟାରମେନ ଥିବାଯାଏ ଆପଣମାନେ ଏଥିପାଇଁ ମୋତେ ଚିନ୍ତା କରିବେ ନାହିଁ । ଆପଣଂକ ସଂଘ ପ୍ରତି ମୋର ପୂର୍ଣ୍ଣ ସମର୍ଥନ ଅଛି । କିନ୍ତୁ ଉଚ୍ଛୃଙ୍ଖଳ ନ ହୋଇ ଧୀର ସ୍ଥିର ଭବେ କାମ କରି ଯାଆନ୍ତୁ ।

ତାହା ଶୁଣି ମୁଁ ଉଠି ପଡ଼ିଲି ଏବଂ କହିଲି ଯେ ଡିଷ୍ଟ୍ରିକ୍ଟ ବୋର୍ଡ଼ ଚେୟାରମେନ ଜିନ୍ଦାବାଦ, ଶିକ୍ଷକ ମାନେ ବିପୁଳ ଉତ୍ସାହରେ କରତାଳି ଦେଇ କହି ଉଠିଥିଲେ ଜିନ୍ଦାବାଦ । ପୁଣି କହିଲି ପଣ୍ଡିତ ମିଶ୍ର ଜିନ୍ଦାବାଦ— ଶିକ୍ଷକ ମାନେ କହିଲେ ଜିନ୍ଦାବାଦ ।

ଏପରି ଭବେ ପ୍ରାଥମିକ ଶିକ୍ଷକ ସଂଘ ଗଠନ କାମ ହୋଇଗଲା । ସମସ୍ତ ଶିକ୍ଷକ ମୋତେ ଅଭିନନ୍ଦନ ଜ୍ଞାପନ କରି ନିଜ ନିଜ ସ୍କୁଲକୁ ତା ଆର ଦିନ ପ୍ରତ୍ୟାବର୍ତ୍ତିତ ହୋଇ ଚାଲିଗଲେ ।

# ଶିକ୍ଷକ ଫେଡରେସନ ଗଠନ ନିମିତ୍ତ କଟକ ଯାତ୍ରା

ଆମେ ଅତାବିରା ଶିକ୍ଷକ ସଂଘ ଗଠନ କରିବାର ପ୍ରାୟ ୧୫ ଦିନ ପରେ କଟକରେ ୨୪ । ୪ । ୪୬ ଦିନ ସମଗ୍ର ଓଡ଼ିଶାକୁ ନେଇ ଏକ ପ୍ରାଥମିକ ଶିକ୍ଷକ ଫେଡେରେସନ ଗଠନ ପାଇଁ ଏକ ଲେଖା ସମାଜରେ ପ୍ରକାଶିତ ହୋଇଗଲା । ଖବରକାଗଜରୁ ଉକ୍ତ ବିବରଣୀ ଦେଖି ମୁଁ ଆମ ସଙ୍ଘର ଅନୁମତି ନେଇ ତତ୍କାଳୀନ ଅବସ୍ଥାରେ ସମ୍ବଲପୁର ଜିଲା ପକ୍ଷରୁ ପ୍ରତିନିଧିତ୍ୱ କରିବା ପାଇଁ କଟକ ଯାତ୍ରା କରିଥିଲି । କଟକରେ ୨୪ । ୪ । ୪୬ ଦିନ ଦରଗାପଡ଼ା ସ୍ଥିତ ଏକ ସାର୍ବଜନୀନ ସଭା ଗୃହରେ ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ଫେଡେରେସନ ଗଠିତ ହୋଇଥିଲା । ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରୁ ପ୍ରତିନିଧିଗଣ ଆସି ତହିଁରେ ଯୋଗଦାନ କରିଥିଲେ । ପ୍ରାୟ ୭୦୦ ଜଣ ଶିକ୍ଷକ ସେଦିନର ସଭାରେ ଯୋଗଦାନ କରିଥିଲେ ।

ପ୍ରାଦେଶିକ ସ୍ତରରେ ଶିକ୍ଷକ ମାନଙ୍କ ଉପସ୍ଥିତି ସେଦିନ ହିଁ ଘଟିଥିଲା । ସମ୍ବଲପୁର ଜିଲ୍ଲା ପକ୍ଷରୁ ଏକମାତ୍ର ପ୍ରତିନିଧି ରୂପେ ମୋତେ ସେଠାରେ ଭାଷଣ ଦେବାର ସୁଯୋଗ ମିଳିଲା ଏବଂ ସେଥିପାଇଁ ମୁଁ ନିଜକୁ ଧନ୍ୟ ମନେ କରିଥିଲି ।

ସଭାପତି ରୂପେ ସମାଜ ସଂପାଦକ ଶ୍ରୀ ରାଧାନାଥ ରଥ ଏବଂ ସେକ୍ରେଟେରୀ ରୂପେ ଶ୍ରୀ ଶ୍ୟାମ ସୁନ୍ଦର ମିଶ୍ର, M.A. ସର୍ବସମ୍ମତି କ୍ରମେ ନିର୍ବାଚିତ ହୋଇଥିଲେ । ଉକ୍ତ ସଭାରେ ମୁଁ ଆମ ଅତାବିରା ସଂଘ ଗଠନ କରିଥିବାର ସମସ୍ତ ବିବରଣୀ ପ୍ରଦାନ କରିଥିଲି । ତା ଆରଦିନ ରାଧାନାଥ ବାବୁ ମୋତେ ତାଙ୍କ ବସାକୁ ଯାଇ ପ୍ରାତରାଶ ଗ୍ରହଣ କରିବାକୁ ନିମନ୍ତ୍ରଣ କଲେ । ସକାଳ ୭ଟାରେ ମୁଁ ଯାଇ ସମାଜ ଅଫିସ ନିକଟରେ ଯେତେବେଳେ ଦେଖେ ସେତେବେଳେ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ପ୍ରାୟ ୧୦/୧୨ ଜଣ ବ୍ୟକ୍ତି ଜମା ହୋଇଥାନ୍ତି ।

ପ୍ରତ୍ୟେକଙ୍କୁ ୨ ମିନିଟ କରି ତାଙ୍କ ଅଭାବ ଅଭିଯୋଗ କହିବାକୁ ରଥ ମହାଶୟ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ସମ୍ବଲପୁର ଭାଇ କିନ୍ତୁ ଏହି ନିୟମର ବହିର୍ଭୂତ ବୋଲି କହି ସେ ଅନ୍ୟ ମାନଙ୍କୁ ବିଦାୟ କରି ଦେଇ ମୋତେ ତାପରେ ତାଙ୍କ ବସାକୁ ଡାକି ନେଇଥିଲେ ।

ଏକ ସୁସଜ୍ଜିତ ବୈଠକଖାନାରେ ଯାଇ ମୁଁ ତାଙ୍କ ସହିତ ବସିଥିଲି । ତାଙ୍କ ଝିଅ ୨ଟି ପ୍ଲେଟରେ କ୍ଷୀର ମୋହନ ୨ଟି ଆଣି ଥୋଇ ଦେଲେ । ଆମେ ଖାଇବାକୁ ଉଦ୍ୟତ ହେଉଛୁ ଏପରି ସମୟରେ ପାରଳା ମାହାରାଜା କୃଷ୍ଣଚନ୍ଦ୍ର ଗଜପତି ଆସିଗଲେ । ଶ୍ରୀଯୁକ୍ତ ରଥ ତାପରେ ତାଙ୍କୁ ମଧ୍ୟ ଜଳଯୋଗ କରିବାକୁ

ଅନୁରୋଧ କଲେ ଏବଂ ·ଆମେ ତିନିଜଣ ଗୋଟିଏ ଟେବୁଲ ରଖି ସେଦିନ ଜଳଯୋଗ କରିଥିଲୁ ।

ସେଦିନ ବୁଝିଲି ଶ୍ରୀଯୁକ୍ତ ରଥ ସମାଜର ସଂପାଦକ ରୂପେ ରହି କେତେ ବ୍ୟକ୍ତିଙ୍କର ସୁଖଦୁଃଖ ବୁଝିବାର ଦାୟିତ୍ୱ ବହନ କରିଛନ୍ତି । ସମ୍ବଲପୁର ଜିଲ୍ଲାରେ ସଙ୍ଗଠନ ନିମିତ୍ତ ତାପରେ ସେ ମୋତେ ବହୁ ଉପଦେଶ ତଥା ପରାମର୍ଶ ଦେଲେ । ଫେଡେରେସନର ଏକ ଟାଇପ କରା ସମ୍ବିଧାନ ତଥା ଆବଶ୍ୟକୀୟ ଫର୍ମମାନ ଦେଇ ସେଦିନ ମୋତେ ସସମ୍ମାନେ ବିଦାୟ କରିଥିଲେ ।

କଟକରୁ ଫେରି ସମ୍ବଲପୁର ଜିଲ୍ଲାର ବିଭିନ୍ନ ସ୍ଥାନକୁ ଯାଇ ମୁଁ ସଙ୍ଗଠନ କାର୍ଯ୍ୟ କରିଥିଲି । ବହୁ ଶିକ୍ଷକ ସେତେବେଳେ ସଙ୍ଘର ସଭ୍ୟ ହେବା ପ୍ରତି ଅନିଚ୍ଛା ଭାବ ପ୍ରକାଶ କରୁଥାନ୍ତି ।

ବରଗଡରେ ବରଗଡ ଶିକ୍ଷକ ମାନଙ୍କ ସହାୟତାରେ ଆମେ ଏକ ଆଡ୍‌ହକ୍ ଜିଲ୍ଲା ସଙ୍ଘ ଗଠନ କରିଥିଲୁ । ସଭାପତି ରୂପେ ଜଣେ ଓକିଲ ରହିବା କଥା ଥାଏ । ତେଣୁ ପଣ୍ଡିତ ଜଗଦୀଶ ରଥଙ୍କୁ ବିଶେଷ କୁହାବୋଲା କରି ତାଙ୍କ ସାହାଯ୍ୟରେ ଆମ୍ଭେ କେତେଜଣ ଓକିଲଙ୍କ ପାଖକୁ ଯାଇଥିଲୁ । କିନ୍ତୁ ବହୁ ଓକିଲ ଏଥିରେ ପଶିବାକୁ ଇଚ୍ଛା କରି ନ ଥିଲେ । ପରିଶେଷରେ ବାଲୁଙ୍କେଶ୍ୱର ମିଶ୍ର ତତ୍କାଳୀନ ବରଗଡର ବୟସ୍କ ତଥା ଗରିଷ୍ଠ ସ୍ଥାନୀୟ ପ୍ରବୀଣ ଓକିଲ ମହୋଦୟ ସଭାପତି ରୂପେ ରହିବାକୁ ସ୍ୱୀକୃତି ପ୍ରଦାନ କରିଦେଲେ । ପଣ୍ଡିତ ଜଗଦୀଶ ରଥେ ସେକ୍ରେଟେରୀ ଭାବେ ଜିଲା ସଙ୍ଘରେ ରହିବାକୁ ସ୍ୱୀକୃତି ପ୍ରଦାନ କରିଦେଲେ ।

ସେହିବର୍ଷ ଡିସେମ୍ବର ମାସରେ ବରଗଡରେ ଏକ ବଡ ଧରଣର ଶିକ୍ଷକ ସଭା ହୋଇଥିଲା । କଟକରୁ ୨ଜଣ କର୍ମୀ ମଧ୍ୟ ଆସିଥିଲେ । ଶିକ୍ଷକ ଧର୍ମଘଟ କରିବା ପରିକଳ୍ପନାରେ ପ୍ରତ୍ୟେକ ଜିଲ୍ଲାରେ ସେହିପରି ସଙ୍ଗଠନମାନ କରା ଯିବାକୁ ଫେଡେରେସନର ନିର୍ଦ୍ଦେଶ ଥାଏ । ବରଗଡରେ ସେଥର ୨୭୦୦ ଜଣ ଶିକ୍ଷକ ଉପସ୍ଥିତ ହୋଇଥାନ୍ତି । ସମଗ୍ର ଜିଲ୍ଲାରୁ ଜଣେ ମାତ୍ର ପ୍ରତିନିଧି କାଉନ୍‌ସିଲ ଅଫ୍ ଏକ୍‌ସନକୁ ନିର୍ବାଚିତ ହୋଇ ଯିବାର ପ୍ରଶ୍ନ ଥାଏ । କାଉନ୍‌ସିଲ ଅଫ୍ ଏକ୍‌ସନ ସେଥର ସମସ୍ତ ଶିକ୍ଷକ ମୋତେ ହିଁ ନିର୍ବାଚନ କରିଥିଲେ । ସେହି ଦାୟିତ୍ୱ ଘେନି ମୁଁ ସମ୍ବଲପୁର ଜିଲ୍ଲା ପ୍ରାଥମିକ ଶିକ୍ଷକଗଣଙ୍କ ପ୍ରତିନିଧି ରୂପେ କଟକ ୬ । ୧ । ୪୭ ରେ ଯାଇ ୧୫ । ୧ । ୪୭ ରେ ଫେରିଥିଲି । ଓଡଶା ସରକାର ସେଥର ଆମ ଦାବୀ ସ୍ୱୀକାର କରି ଶିକ୍ଷକମାନଙ୍କ ବେତନ ବୃଦ୍ଧି କରିଥିଲେ । ସେହିବର୍ଷ ଅପ୍ରେଲ ଠାରୁ ଟ ୧୨ ଓ ଟ ୮ ପରିବର୍ତ୍ତେ ଟ ୨୫ ଓ ଟ ୨୦ ଟ୍ରେଣ୍ଡ

ଓ ଅନ୍‌ଟ୍ରେଣ୍ଡ ଶିକ୍ଷକ ପାଇବା ହକଦାର ହେଲେ । ସେହି ଦିନଠାରୁ ଶିକ୍ଷକ ମାନଙ୍କ ବେତନ କ୍ରମଶଃ ବୃଦ୍ଧି ହେବାରେ ଲାଗି ଆସୁଅଛି ।

## ପୁରୀ ପ୍ରାକ୍‌ଟିସିଙ୍ଗ ସ୍କୁଲରେ ଅଧ୍ୟାପନା

ଶିକ୍ଷକ ମାନଙ୍କ ଧର୍ମଘଟ ନ ହୋଇ ସରକାରଙ୍କ ସହିତ ବୁଝାମଣା ହେବା ପରେ ବିଭିନ୍ନ ଜିଲ୍ଲାରୁ ଯାଇଥିବା ପ୍ରତିନିଧି ଦଳ ଆନନ୍ଦୋଲ୍ଲାସ ସହ ଫେରି ଯାଇଥିଲୁ । କାରଣ ସେଥର ଆମେ ଯେଉଁ ଉଦ୍ଦେଶ୍ୟରେ ଯାଇଥିଲୁ ସେଥିରେ ଏତେ ଚଞ୍ଚଳ ଫେରି ଆସିବୁ ଏ ଆଶା କାହାରି ମନରେ ନ ଥିଲା । ଧର୍ମଘଟ ଚାଲିଲେ ଆମେ ପ୍ରତିନିଧି ବର୍ଗଙ୍କୁ ସରକାର ଜେଲରେ ଆବଦ୍ଧ କରି ରଖିବେ ସେଥିପାଇଁ ପ୍ରତ୍ୟେକେ ପ୍ରସ୍ତୁତ ହୋଇ ଘରୁ ଯାଇଥାଉ ।

ସରକାରଂକ ସହ ଆଲୋଚନା ହେଲାବେଳେ ରାଧାନାଥ ରଥ ଆମ୍ଭ ମାନଙ୍କୁ କହିଲେ ଯେ ସରକାର ଦରମା ନ ବଢାଇ ମହଙ୍ଗା ଭତ୍ତା ଟ୍ରେଣ୍ଡ ଶିକ୍ଷକ ମାନଙ୍କୁ ୮୧୬ ଏବଂ ଅନ୍‌ଟ୍ରେଣ୍ଡ ଶିକ୍ଷକ ମାନଙ୍କୁ ୮୧୨ କରି ଦେବାକୁ ରାଜି ହେଉ ଅଛନ୍ତି । ସେତେବେଳେ ଏଜୁକେସନ କୋର୍ଡରେ ପ୍ରାଥମିକ ଶିକ୍ଷକ ମାନଂକର ସର୍ବୋଚ୍ଚ ଦରମା ଥାଏ ଟ୧୮ । ଶ୍ରୀଯୁକ୍ତ ରଥଂକ ମତରେ ମୂଳ ଦରମା ଯାହା କୋର୍ଡରେ ଟ୧୮ ଅଛି ତାର ପରିବର୍ତ୍ତନ ଆବଶ୍ୟକ ।

ବହୁ କଷ୍ଟରେ ସେତେବେଳର ଶିକ୍ଷାସଚିବ ସାମୁଏଲ ଦାସ ଆମର ଏହି ନୂତନ ପରିବର୍ତ୍ତନ ଦାବୀକୁ ସ୍ୱୀକାର କରି ନେଇଥିଲେ ।

ଆମ ପ୍ରତିନିଧି ଦଳରେ ସେତେବେଳେ ପୁରୀ ପ୍ରାକ୍‌ଟିସିଙ୍ଗ ସ୍କୁଲର ପ୍ରଧାନ ଶିକ୍ଷକ ଭଗବାନ ମିଶ୍ର ଥାଆନ୍ତି । ସେ ମୋତେ ବିଶେଷ ଆଗ୍ରହ ସହିତ ପୁରୀ ନେଲେ । ତାଂକ ସହିତ ବହୁ ବିଷୟ ନେଇ ମୋର ମନର ଭାବ ସବୁ ମେଳ ହୋଇ ଯାଇଥିଲା । ପୁରୀକୁ ଯିବା ପରେ ସେ ମୋତେ ଦୋଳମଣ୍ଡପ ସାହିରେ ଗୋଟିଏ ବସା ଠିକ୍ କରି ରଖାଇ ଦେଲେ ଏବଂ ପଣ୍ଡାବାବୁ ହୋଟେ-ଲରେ ତାଂକ ତରଫରୁ ଖାଇବା ବ୍ୟବସ୍ଥା କରି ଦେଲେ । ତାଂକର ଆଉ ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ଥାଏ ଯେ ମୁ ତାଂକ ୫ମ ଶ୍ରେଣୀ ପିଲାଙ୍କୁ ଟସର ଚାଷ ସମ୍ବନ୍ଧରେ ଗୋଟିଏ ଲେସନ ଏବଂ ବିଡ଼ି ଶିଳ୍ପର ମୁଖ୍ୟ ଉପାଦାନ କେନ୍ଦୁପତ୍ରର ଉତ୍ପତ୍ତି, ସଂଗ୍ରହ, ସଂରକ୍ଷଣ ନେଇ ଏକ ଲେସନ ଦେବି ।

ତାଂକର ସେହି ପ୍ରସ୍ତାବ ଅନୁସାରେ ମୁଁ ୧୩ । ୧ । ୪୭ଇ. ଦିନ ପୁରୀ ପ୍ରାକଟିସିଙ୍ଗ ସ୍କୁଲରେ ୫ମ ଶ୍ରେଣୀରେ ଉପରୋକ୍ତ ୬ଟି ବିଷୟରେ ଶିକ୍ଷାଦାନ କାର୍ଯ୍ୟ କରିଥିଲି । ସେତେବେଳେ ଉକ୍ତ ଶ୍ରେଣୀରେ ଭୁବନେଶ୍ୱର ମିଶ୍ର ବୋଲି ଜଣେ ଛାତ୍ର ପଢୁଥାଏ । ତାର ପିତା ଜଗନ୍ନାଥ ମିଶ୍ର ବରଗଡରେ S D. O. ଥାନ୍ତି । ରବୁଚନ୍ଦ୍ର ଗୁହ ନାମରେ ଆଉ ଜଣେ ଛାତ୍ର ମଧ୍ୟ ପଢୁଥାଏ । ତାର ପିତା ମନୀନ୍ଦ୍ର ନାଥ ଗୁହ ସେତେବେଳେ ସମ୍ବଲପୁରରେ ଏଡସନାଲ ଡ: ଟି: ଥାନ୍ତି ।

ମୁଁ ପଢାଉଥିବା ସମୟରେ ବିଦ୍ୟାଳୟର ସମସ୍ତ ଶିକ୍ଷକ ଶ୍ରେଣୀ ଗୃହରେ ବସି ରହି ମୋର ଅଧ୍ୟାପନା କୌଶଳ ସମୀକ୍ଷା କରୁଥାନ୍ତି । ଅଧ୍ୟାପନା ସରିଗଲା । ହେ. ପ. ଭଗବାନ ବାବୁ ତଥା ତାଂକର ସହକର୍ମୀଗଣ ମୋର ଶିକ୍ଷାଦାନ ପ୍ରଣାଳୀକୁ ବିଶେଷ ତାରିଫ୍ କଲେ । ତାପରେ ଅନ୍ୟାନ୍ୟ ଶିକ୍ଷକଗଣ ମୋତେ ତାଂକ ଶ୍ରେଣୀ ମାନଂକରେ ଗୋଟିଏ ଲେଖା ଲେସନ ପଢାଇବାକୁ ଅନୁରୋଧ କଲେ । ଫଳରେ ମୁଁ ତାହା କରିଥିଲି ।

ସେଦିନ ସନ୍ଧ୍ୟାରେ ମୁଁ ସମୁଦ୍ର କୂଳକୁ ବୁଲି ଯାଇଥାଏ । ସେଠାରୁ ଫେରି ମୋର ବସାରେ ଯେମିତି ପହଞ୍ଚିଲି ଦେଖିଲି ଯେ ଦଳେ ପିଲା ଆସି ମୋ ବସାରେ ମୋତେ ଅପେକ୍ଷା କରିଛନ୍ତି । ମୋତେ ଦେଖି ସେମାନେ ଅତି ବିନୟର ସହିତ ଟ୨୭-୮୭ପ. (ସତାଇଶ ଟଙ୍କା ସତାଅଶୀ ପଇସା) ଦେଲେ ଏବଂ କହିଲେ ଯେ ଆଜ୍ଞା ଆମେ ଆମ ଭିତରେ ଏହା ରୁଦା କରି ଆଣିଛୁ । ଦୟାକରି ରଖନ୍ତୁ । ମୁଁ ତାହା ଦେଖି ବିସ୍ମିତ ହୋଇଗଲି । ସେମାନଂକ ଗୁରୁଭକ୍ତି ଯେ ଏପରି ଆକାର ଶେଷରେ ଧାରଣ କରିବ ଏହା ଥିଲା ମୋର କଳ୍ପନାତୀତ । ଉକ୍ତ ଟଂକା ମୁଁ ଗ୍ରହଣ କରିବାକୁ ରାଜି ହେଲିନାହିଁ । ସେମାନେ ବି ତାହା ଫେରଇ ନେବାକୁ ମାନିଲେ ନାହିଁ । ପରିଶେଷରେ ସେମାନଙ୍କୁ ମୁଁ ଗୋଟିଏ ମନିଅର୍ଡର ଫର୍ମ ଆଣିବାକୁ କହି ଉକ୍ତ ଟଂକା ମନିଅର୍ଡର ଯୋଗେ ପିଲାଂକ ମଧ୍ୟରୁ ଜଣକ ନାମରେ କଟକ ଅନାଥାଶ୍ରମ ମେନେଜରଂକ ନିକଟକୁ ପଠାଇ ଦେଲି ।

ତା ୧୪ । ୧ । ୪୭ ମକର ସଂକ୍ରାନ୍ତି । ସନ୍ଧ୍ୟା ସମୟ ପୁରୀ ସମୁଦ୍ର ବେଳାଭୂମିରେ ବସି ଅନନ୍ତ ସମୁଦ୍ରର ବିଶାଳ ବାରିରାଶିର ଉତ୍‌ଥାନ ପତନ ଦୃଶ୍ୟ ନିରୀକ୍ଷଣ କରୁଅଛି ଏହି ସମୟରେ ଜନୈକା ବଂଗୀୟ ଯୁବତୀ ଆସି ମୋ ସନ୍ନିଧିରେ ବସିପଡ଼ ମୋ ସହିତ ବିଭିନ୍ନ ଦିଗରୁ ଆଳାପ ଆଲୋଚନା କରିବସିଲେ । ସେତେବେଳେ ନୂଆଖାଲି ଜିଲ୍ଲାରେ ନରସଂହାର ଲୀଳା ଚାଲିଥାଏ । ଯୁବତୀଟି ଉକ୍ତ ବିଭତ୍ସ ଲୀଳାର ଶରବ୍ୟା ହୋଇ ପତି, ପୁତ୍ର, ଧନ, ଦଉଲତ ହରାଇ ବୃଦ୍ଧ

ପିତାଙ୍କୁ ଧରି ପୁରୀ ପଳାଇ ଆସିଥାନ୍ତି ଏକ ଆଶ୍ରୟ ପ୍ରାର୍ଥିନୀ ରୂପେ । ସେ ଖୋଜୁ-ଥାନ୍ତି ସହାୟ । ଦୈବାତ୍ ସେ ଆସି ମୋ ଉପରେ ତାଙ୍କର କଟାକ୍ଷପାତ କରି କ୍ରମେ ବୈବାହିକ ସମ୍ବନ୍ଧ ଯୋଡ଼ ଦେବାକୁ ପ୍ରୟାସିନୀ ହୋଇ ପଡଲେ । ତାଙ୍କର ଏହି ଅପ୍ରତ୍ୟାଶିତ ଭାବନା ତଥା ମାୟାଜାଲ ବିସ୍ତାର କରିବାର ପଟୁତାରେ ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । ତାଙ୍କର ମାୟାଜାଲରୁ ମୁକୁଳିବାକୁ ଯାଇ ଶେଷରେ ମୋତେ ପଳାୟନ ପନ୍ଥା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ପୁରୀରେ ଆଉ ୨/୩ ଦିନ ରହିବା ମୋର ଯୋଜନା ଥିଲେ ମଧ୍ୟ ମୁଁ ସେ ସମସ୍ତ କାର୍ଯ୍ୟକ୍ରମକୁ ବାତିଲ କରିଦେଇ ହଠାତ୍ ସେଦିନ ରାତି ଗାଡ଼ିରେ ପୁରୀ ତ୍ୟାଗ କରିଥିଲି । ପରେ ଉକ୍ତ ଘଟଣାକୁ ନେଇ ମୁଁ ଏକ ଉପନ୍ୟାସ ଲେଖିଥିଲି । ଯାହା ୧୯୬୩ ଖ୍ରୀ:ରେ ପ୍ରକାଶ ଲାଭ କରିଥିଲା । ଘଟଣାଟିର ବିଷୟବସ୍ତୁ ନେଇ ପୁସ୍ତକଟିର ନାମ ସେଥିପାଇଁ ରଖା ଯାଇଥିଲା 'ପ୍ରେମର ପ୍ରତିଦାନ' ।

# ହୀରାକୁଦ ବନ୍ଧର ବିକଳ୍ପ ଯୋଜନା ଘେନି ବିଶ୍ୱନାଥ ଦାଶଙ୍କ ସହ ଆଲୋଚନା

୧୯୪୬ ଖ୍ରୀ: ଜୁନ ମାସ ୮ ଓ ୯ ତାରିଖ ଗଞ୍ଜାମ ଜିଲ୍ଲାର ରଞ୍ଜା ନାମକ ଗ୍ରାମରେ ଫେଡେରେସନର ବାର୍ଷିକ ସମ୍ମିଳନୀ ବସିବାର ଥାଏ । ଉକ୍ତ ସମ୍ମିଳନୀରେ ଯୋଗଦାନ କରିବାକୁ ବରଗଡରୁ ରାମଚନ୍ଦ୍ର ମିଶ୍ର ଓ ମୁଁ ଏପରି ଦୁଇଜଣ ପ୍ରତିନିଧି ନିର୍ବାଚିତ ହୋଇଥିଲୁ । ସମ୍ମିଳନୀରେ ଯୋଗଦେବା ଉଦ୍ଦେଶ୍ୟରେ ମୁଁ ଯଥା ସମୟରେ ବରଗଡରେ ଆସି ପହଞ୍ଚିଲି । ରଞ୍ଜା ସମ୍ମିଳନୀରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ, ଓଡିଶା ସରକାରଙ୍କ ପରାମର୍ଶଦାତା ରୂପେ ରହିଥିବା ବିଶ୍ୱନାଥ ଦାଶ ପ୍ରମୁଖ ଉକ୍ତ ସମ୍ମିଳନୀରେ ଅଂଶ ଗ୍ରହଣ କରିବା ପାଇଁ ଆଗରୁ ଛପା କାର୍ଯ୍ୟକ୍ରମ ପ୍ରସ୍ତୁତ କରି ରଖା ଯାଇଥାଏ ଏବଂ ତାହା ଆମ୍ଭ ନିକଟିରେ ମଧ୍ୟ ପହଞ୍ଚି ସାରିଥିଲା । ତାକୁ ବରଗଡର କେତେଜଣ ଗଣ୍ୟମାନ୍ୟ ବ୍ୟକ୍ତି ଜାଣିଥାଆନ୍ତି । ସେତେବେଳେ ହୀରାକୁଦ ବନ୍ଧ ବନ୍ଦ ଆନ୍ଦୋଳନ ସମ୍ବଲପୁରରେ ଜୋରସୋରରେ ଚାଲିଥାଏ । ଡକ୍ଟର ଜନାର୍ଦ୍ଦନ ପୂଜାରୀ ଆଦି ସେଥିପାଇଁ ଜେଲଦଣ୍ଡ ଭୋଗୁଥାନ୍ତି । ଓଡିଶା ସରକାର ବନ୍ଧ ବିରୋଧୀ ଲୋକଙ୍କ ଉପରେ ଦମନଲୀଳା ଚଳାଇଥାନ୍ତି ।

ଏହି ସମସ୍ତ ଘଟଣା ଦେଖି, ଶୁଣି ତଥା ଅନୁଭବ କରି ବରଗଡର

ବିଶିଷ୍ଟ ବ୍ୟକ୍ତି ତଥା ପ୍ରବୀଣ ଓକିଲ ଋଷଭ କର, ବାଲୁଙ୍କେଶ୍ୱର ମିଶ୍ର, ବିଶିକେଶନ ମିଶ୍ର, ପଣ୍ଡିତ ଜଗଦୀଶ ରଥ ଆଦି ମିଳିତ ହୋଇ ମୋତେ ଡାକିଲେ ଏବଂ କହିଲେ ଯେ ତୁମ୍ଭେ ତ ଯାଉଛ ସେଠାରେ ମହତାବ, ବିଶ୍ୱନାଥ ଦାଶ ଆଦିଙ୍କୁ କହିବ ଯେ ମହାନଦୀର ବନ୍ଧ ହେଉ, ଏଥିରେ ଆପତ୍ତି ନାହିଁ କିନ୍ତୁ ତାହା ହୀରା-କୁଦରେ ନ ହୋଇ ଲକ୍ଷ୍ମଣପୁର ନିକଟ ଉତ୍ତମ ବୋଲି ଯେଉଁ ସ୍ଥାନଟି ଅଛି ସେଠାରେ ତାହା କରଯାଉ । ଫଳରେ ହୀରାକୁଦରେ ବନ୍ଧ ହେବାଦ୍ୱାରା ଯେଉଁ ଉର୍ବର ଭୂମି ତଥା ୨୦୦ ଖଣ୍ଡ ଗ୍ରାମ ଜଳମଗ୍ନ ହେବାର କଥା ତାହା ଏତଦ୍ୱାରା ରକ୍ଷା ପାଇଯିବ । ଉତ୍ତମରେ ବନ୍ଧ ହେଲେ ମୋଟେ ୧୮ ଖଣ୍ଡ ଗ୍ରାମ ଯିବ ଏବଂ ୨୩୧୫ ଜଣ ବ୍ୟକ୍ତି କେବଳ ବାସଚ୍ୟୁତ ହେବେ ।

ଫଳରେ ଓଡ଼ିଶା ସରକାର କ୍ଷତିପୂରଣ ବାବଦରେ ଯେଉଁ ବିପୁଳ ଅର୍ଥ ଖର୍ଚ୍ଚ କରିବେ ତାହା ହେବ ନାହିଁ । ଏହି ପ୍ରସ୍ତାବ ମୁଁ ସେଦିନ ତାଙ୍କଠାରୁ ଶୁଣି ସେଠାକୁ ଯାଇ ବିଶ୍ୱନାଥ ଦାଶଙ୍କ ଆଗେ ଉପସ୍ଥାପନ କରିଥିଲି । ଶ୍ରୀ ଦାଶ ସେତେବେଳେ ତାଙ୍କ ଗଞ୍ଜାମ ସ୍ଥିତ ବାସଭବନରେ ଥାନ୍ତି । ତାଙ୍କ ନିକଟରେ ମଧୁସୂଦନ ମିଶ୍ର; M. L. A., ନାରାୟଣ ପଣ୍ଡା, M. L. A., ଆକୁଳି ମିଶ୍ର, M. L. A. ଏହି ତିନି ଜଣ ମଧ୍ୟ ବସିଥାନ୍ତି । ପରେ ଡକ୍ଟର ମାୟାଧର ମାନସିଂହ ମଧ୍ୟ ଆସି ସେମାନଙ୍କ ସହ ମିଶିଲେ ।

ସେମାନଙ୍କ ଗହଣରେ ବସି ମୁଁ ତଳେ ଚକଖଡ଼ି ସାହାଯ୍ୟରେ ହୀରାକୁଦ ଜଳ ଭଣ୍ଡାର ଏବଂ ତାହାର କ୍ଷୟକ୍ଷତି, ଲୋକ ବସତି ଆଦିର ଏକ ଚିତ୍ର ଆଂକି ଦେବା ସଙ୍ଗେ ସଙ୍ଗେ ଅନ୍ୟପଟେ ଉତ୍ତମରେ ବନ୍ଧ ହେବାର ଏକ ବିକଳ୍ପ ଯୋଜନାର ଚିତ୍ର ଆଂକି ଉଭୟ ବନ୍ଧର ଚିତ୍ରକୁ ନିବିଷ୍ଟ ସହକାରେ ଦେଖି ବିଚାର କରିବାକୁ ସମସ୍ତଙ୍କୁ ନିବେଦନ କଲି ।

ଉପସ୍ଥିତ ସଭ୍ୟ ବିଶେଷ ଧ୍ୟାନ ଦେଇ ମୁଁ ଆଂକିଥିବା ଚିତ୍ରକୁ ଦେଖିଲେ ଏବଂ ମୋର ଯୁକ୍ତି ଶୁଣି ଏକ ପ୍ରକାର ମୋ କଥାକୁ ସମର୍ଥନ କରି ବସିଲେ । ବିଶ୍ୱନାଥ ଦାଶ ସେତେବେଳେ ଉପରକୁ ଅନାଇ ଭାବୁ ଥାଆନ୍ତି । ମୁଁ ତାଙ୍କର ସେହି ଉପରକୁ ଅନାଇ ରହିଥିବା ଅବସ୍ଥା ନିରୀକ୍ଷଣ କରି ତାଙ୍କୁ କହିଲି ଯେ ଆଜ୍ଞା, ଦୟାକରି ଟିକିଏ ତଳକୁ ଅନାନ୍ତୁ । ପ୍ରତ୍ୟୁତ୍ତରରେ ସେ କହିଲେ ଯେ 'ହଇରେ ପୁଅ, ମୁଁ କଣ ଉପରକୁ ଅନାଇଛି ବୋଲି କଣ ଦେଖୁନାହିଁ କି ? ମୁଁ ପଟ୍ଟ ମୋର କଳ୍ପନା ରାଇଜରେ ଥାଇ ମେପ୍‌କୁ ଅନାଇ ଚିନ୍ତା କରୁଛି । ତଳକୁ ଦେଖିବି ଯାହା ଉପରକୁ ଦେଖିବି ତାହା ହେବ ଯେ' ।

ତଥାପି ତାଙ୍କୁ ମୁଁ ତଳକୁ ଅନାଇବାକୁ ଗୁହାରି କଲି । ସେ ମଧ୍ୟ ମୋର କଥାନୁସାରେ ପରେ ତଳକୁ ଅନାଇ ଚିତ୍ର ଗୁଡ଼ିକ ନିରୀକ୍ଷଣ କରିଥିଲେ ।

ବହୁ ଯୁକ୍ତିତର୍କ ଚାଲିଲା । ଯୁକ୍ତିତର୍କ ବେଳେ M. L A. ତିନିଜଣ ମୋତେ ସମର୍ଥନ କରି କଥାମାନ କହୁଥାନ୍ତି କିନ୍ତୁ ଦାଶ ଆପଣେ ଆଉ ଡଃ ମାନସିଂହ ମୋ କଥା ଖଣ୍ଡନ କରି ଯୁକ୍ତି କରୁଥାନ୍ତି ଯେ ହୀରାକୁଦ ଠାରେ ହିଁ ବନ୍ଧ ହେଲେ ଭଲ ହେବ । ଆଲୋଚନା ସକାଳ ଓଳି ୮ଟାରୁ ୧୨ଟା ଯାଏ ଚାଲିଥିଲା । ସେ ଦିନ ବିଶ୍ୱନାଥ ଦାଶଙ୍କ ବସାରେ ସ୍ୱତନ୍ତ୍ର ନିମନ୍ତ୍ରଣ କ୍ରମେ ସ୍ୱତନ୍ତ୍ର ରେଷେଇରେ ମୁଁ ତାଙ୍କ ଗହଣରେ ମଧ୍ୟାହ୍ନ ଭୋଜନ କରିଥିଲି ।

ମଧ୍ୟାହ୍ନ ଭୋଜନ ପରେ ପୁଣି ଆଲୋଚନା ଚାଲିଲା । ଏଥର ଆଲୋଚନା କିନ୍ତୁ ସକାଳ ଓଳି ଆଲୋଚନାରୁ ଟିକିଏ ଭିନ୍ନଗତି ଧରିଥିଲା । ବିଶ୍ୱନାଥ ଦାଶଙ୍କ ସମେତ ସମସ୍ତ ସଭ୍ୟ ମୋ ମତ ଉପରେ ସହମତ ଜ୍ଞାପନ କରିଦେଲେ । ଶ୍ରୀଯୁକ୍ତ ଦାଶ ତାପରେ କହିଲେ ଯେ କଥାଟି ଯଦି ଟିକିଏ ଆଗରୁ ମୋତେ କେହି କହି ଥାଆନ୍ତେ ତେବେ ଆମେ ଏହା କରି ନ ଥାନ୍ତୁ । କାରଣ ମିଷ୍ଟର ସେଭେଜ୍ ଏବେ ଆସି ବନ୍ଧ ସ୍ଥାନ ନିରୀକ୍ଷଣ କରି ଚାଲି ଯାଇଛନ୍ତି । ତାଙ୍କ ଆସିବା ଏବଂ ଯିବା ସକାଶେ ଆମର କେତେ ଖର୍ଚ୍ଚ ହୋଇଛି ଜାଣ କହି ସେ ତାଙ୍କ ଡାହାଣ ହାତ ପାପୁଲିର ଅଙ୍ଗୁଳି ଗୁଡ଼ିକୁ ମୋ ଆଡ଼କୁ ଦେଖାଇ ଦେଇ ଓଠଚିପି ବସିଥାଇ କହିଲେ ଜଣ ବୁଝିଲ ? ହଁ, ପାଞ୍ଚଲକ୍ଷ ଟଙ୍କା ଖର୍ଚ୍ଚ ହେଲାତ ! ତାହା ଜାଣିଛିଁ । ମୁଁ କହିଲି । ଆଉ ଥରେ ପୁଣି ଯଦି ଡକାଯାଏ ତେବେ କେତେ ଖର୍ଚ୍ଚ ହେବ । ସେ କହିଲେ, ହୀରାକୁଦ ଠାରେ ବନ୍ଧ ହେଲେ ସେଥିରେ କ୍ଷୟକ୍ଷତି ପାଇଁ ଯାହା ଦିଆ ହେବ ମିଷ୍ଟର ସେଭେଜଙ୍କୁ ଆଉ ଥରେ ଡାକି ଆଣି ତାଙ୍କ ମତ ନେବାରେ ଯାହା ଖର୍ଚ୍ଚ ହେବ ତାହା ଅକିଞ୍ଚିତ୍‌କର ବୋଲି ତ ମୁଁ ମନେକରେ ।

ଏତକ କହି ମୁଁ ଚୁପ ରହିଲି । ସେ ବି ଚୁପ ରହିଥିଲେ । ତାଙ୍କଠୁ ଉଠି ଆସିଲା ବେଳକୁ ମୋତେ ଦେଖି ପୁଣି କହିଲେ ଯେ ପୁଅ, ତୁମ କଥା ମୁଁ ରଖିଲି ନାହିଁ ବୋଲି ଦୁଃଖ କରିବ ନାହିଁ' । ମୁଁ କହିଲି ଆଜ୍ଞା, ଏହି ମତ ମୋ ନିଜସ୍ୱ ନୁହେଁ । ବରଗଡ଼ର ବିଶିଷ୍ଟ ବ୍ୟକ୍ତି ଗଣଂକର ମତ ବୋଲି କହି ମୁଁ ସେମାନଂକର ନାମ ତାଂକ ଆଗେ ବ୍ୟକ୍ତ କରି ଦେଇ ଚାଲି ଆସିଥିଲି ।

# ଗଞ୍ଜାମ ଜିଲ୍ଲାର ଗଞ୍ଜା ସମ୍ମିଳନୀ

ଗଞ୍ଜାମ ଜିଲ୍ଲାଟି ମାନ୍ଦ୍ରାଜ ପ୍ରେସିଡେନ୍‌ସିରୁ ଆସି ଓଡ଼ିଶାରେ ମିଶି ଥିବାରୁ ଶାସନ ସଂସ୍କାର ନେଇ ଶିକ୍ଷା ବିଭାଗରେ ଯେତିକି ସଂସ୍କାର ଆବଶ୍ୟକ ଥିଲା ତାହା ଦେଶ କାଳ ପାତ୍ର ବିବେଚନାରେ ଦ୍ରୁତତର ହୋଇପାରୁ ନ ଥାଏ । ବିଶେଷ କରି ପ୍ରାଥମିକ ଶିକ୍ଷା ଅନୁଷ୍ଠାନ ଗୁଡ଼ିକ ମେନେଜରୀ ଶିକ୍ଷା ସଂସ୍ଥାରେ ପରିଣତ ହୋଇ ଥିବାରୁ ପ୍ରାଥମିକ ଶିକ୍ଷକଗଣ କେତେକ କ୍ଷେତ୍ରରେ ଅସୁବିଧା ଭୋଗ କରୁଥାନ୍ତି । ତାଂକର ଚାକିରୀର ସ୍ଥାୟୀତ୍ୱ ନେଇ ଶିକ୍ଷକ ମାନଂକ ମନରେ ଗଭୀର ଅସନ୍ତୋଷ ଭାବ ରହିଥାଏ ।

ମେନେଜରୀ ସଂସ୍ଥା ଅର୍ଥ ଜଣେ ଜଣେ ଧନୀବ୍ୟକ୍ତି ପ୍ରାଥମିକ ଶିକ୍ଷାକୁ ଶିକ୍ଷା ବ୍ୟବସାୟ ରୂପେ ଚଳାଇ ଆସୁଥାନ୍ତି । ଧରଯାଉ ଗୋଟିଏ ଗାଁରେ ଜଣେ ଧନୀବ୍ୟକ୍ତି ମନେକଲେ ଯେ ଏଠାରେ ଏକ ସ୍କୁଲ୍ କଲେ ଶିକ୍ଷା ବିଜିନେସ ଚାଲି-ପାରେ । ସେହି କ୍ଷେତ୍ରରେ ସେ ନିଜେ ହାତରୁ ଖର୍ଚ୍ଚ କରି ଗୋଟିଏ ସ୍କୁଲଘର ତିଆରି କରି ଦେଇ ତିହିଁରେ ଜଣେ; ୨ ଜଣ ଶିକ୍ଷକ ନିଯୁକ୍ତ କରିଦେଇ ତାଂକ ଦରମା ସେ ସେମାନଙ୍କୁ ନିଜ ମନଇଚ୍ଛା ଦେଉଥାନ୍ତି । ଶିକ୍ଷାଗ୍ରାଣ୍ଟ କିନ୍ତୁ ବର୍ଷକୁ ଯାହା ମିଳେ ତାକୁ ସେ ଆଣିବେ ଏବଂ ଏପଟେ ପିଲାଙ୍କୁ ପ୍ରତି ମାସରେ ଫିଜ ନିଜ ମରଜି ହିସାବରେ ଧାର୍ଯ୍ୟ କରି ଅସୁଲ କରିବେ ।

ଏହି ପ୍ରକାର ପ୍ରଥା ସେତେବେଳେ ଚଳୁଥିଲା । ଫେଡେରେସନ ଗଠନ ହେବାପରେ ଶିକ୍ଷକମାନେ ତାପରେ ଗୋଟିଏ ବିଧିବଦ୍ଧ ପ୍ରଣାଳୀରେ ନିଜକୁ ସାମିଲ କରାଇ ନେବେ । ସେମାନଂକ ବେତନ, ଚାକିରୀ ଆଦିର ସ୍ଥିରତା ଆଦି ଓଡ଼ିଶାର ବ୍ୟବସ୍ଥିତ ଜିଲ୍ଲା ମାନଂକ ପରି ହେବ । ଏହି ଆଶା ପୋଷଣ କରି ସେମାନେ ସେହି ବର୍ଷ ଗଞ୍ଜାରେ ଫେଡେରେସନର ବୈଠକ ବସିବା ସକାଶେ ସ୍ଥିର କରି ବୈଠକ ଆହ୍ୱାନ କରିଥାନ୍ତି ।

ସମ୍ମିଳନୀରେ ସଭାପତି ରୂପେ ଡକ୍ଟର ମାୟାଧର ମାନସିଂହ ଆସୀନ ହେବା ପାଇଁ ସ୍ଥିର ହୋଇ ଥିବାରୁ ସେ ତାଙ୍କ ଭାଷଣଟିକୁ ମୁଦ୍ରଣ କରି ଆଣିଥାନ୍ତି । ଅତୀତରେ ସେ ଗଡ଼ଜାତ ମାନଂକରେ ଶିକ୍ଷକତା କରୁଥିଲେ । ପରେ ବିଲାତ ଗଲେ ଏବଂ ଡକ୍ଟର ଉପାଧି ଘେନି ଭାରତକୁ ଆସିବା ପରେ ଓଡ଼ିଶା ସରକାର ତାଙ୍କୁ ଜନଶିକ୍ଷା ଅଫିସର ରୂପେ ସେତେବେଳେ ନିଯୁକ୍ତି କରିଥାନ୍ତି ।

ସମ୍ମିଳନୀରେ ବିଭିନ୍ନ ପ୍ରସ୍ତାବ ଗୁଡ଼କ ଯେତେବେଳେ ଉପସ୍ଥାପନ କରଗଲା କେତେ ଗୁଡଏ ପ୍ରସ୍ତାବ ଗୃହୀତ ହୋଇଗଲେ ତାହା ତାଙ୍କ ସଭପତି-ତ୍ୱରେ ହୋଇଛି ବୋଲି ଧରହେବ ଏବଂ ପ୍ରସ୍ତାବ ଗୁଡକ ଯଦି ସରକାରଙ୍କୁ ଆକ୍ଷେପ କଲା ଭଳି ହୁଏ ତେବେ ସେଥିପାଇଁ ସେ ହୁଏତ ନୂଆ ପାଇଥିବା ସରକାରୀ ଋକିରୀ ଉପରେ ଆଞ୍ଚ ଆସିଯିବ ଏହି ଭୟରେ ପ୍ରସ୍ତାବ ଗୁଡ଼କ ପାସ ହେବା ପର୍ଯ୍ୟନ୍ତ ସଭପତି ଆସନରେ ସେ ବସିବାକୁ ନିଜର ଦୁର୍ବଳତା ପ୍ରକାଶ କଲେ । ତାଙ୍କର ଏ ପ୍ରକାର ଗତିବିଧି ନେଇ କର୍ମକର୍ତ୍ତାଗଣଙ୍କ ମଧ୍ୟରେ ଏକ ହଟ-ଗୋଳ ମଧ୍ୟ ଦେଖା ଦେଇଥିଲା । ପରେ ଶ୍ରୀଯୁକ୍ତ ରାଧାନାଥ ରଥ ଉକ୍ତ କାର୍ଯ୍ୟ ଚଳାଇ ନେଇଥିଲେ । ଡକ୍ଟର ମାନସିଂହ କେବଳ ତାଙ୍କର ଭାଷଣଟି ଯାହା ସଭ ଶେଷ ହେବାବେଳେ ପଢ଼ ଦେଇଥିଲେ ।

ବିଶ୍ୱନାଥ ଦାଶ ତାଙ୍କ ଭାଷଣରେ କହିଲେ ଯେ ସଙ୍ଘ ଗଠନ ଦ୍ୱାର ପ୍ରକୃତ ଶିକ୍ଷାର ଗୁଣାତ୍ମକ ମାନ ନିମ୍ନ ସ୍ତରକୁ ଯିବ ପଛକେ ଉନ୍ନତି ପନ୍ଥା ଧରିବ ନାହିଁ । ଇତ୍ୟାଦି କହିଥିଲେ ।

ସମ୍ମିଳନୀର ଶେଷ ପର୍ଯ୍ୟାୟରେ ବିଭିନ୍ନ ଜିଲ୍ଲାରେ ପ୍ରଚଳିତ ଥିବା ବିଭିନ୍ନ ପ୍ରକାର ସ୍କୁଲ ବ୍ୟବସ୍ଥା ନେଇ ବିଭିନ୍ନ ଦୃଷ୍ଟି ଭଙ୍ଗୀରୁ ଶିକ୍ଷକଗଣ ଆଲୋଚନା କରିଥିଲେ ।

ସମ୍ବଲପୁର ଜିଲ୍ଲାରେ ସେତେବେଳେ ଚଳୁଥିବା ଡ. ବୋର୍ଡ ପରିଚ୍ଚଳ-ନାରେ ୨ ପ୍ରକାର ପ୍ରାଥମିକ ଶିକ୍ଷାର ବିଷୟ ମୁ କହିବାକୁ ଯାଇ ସାହାଯ୍ୟ ପ୍ରାପ୍ତ ନି. ପ୍ରା. ସ୍କୁଲ ଏବଂ ମେନେଜ୍ଡ ପ୍ରାଥମିକ ସ୍କୁଲର ବିଭିନ୍ନତା ପ୍ରତିପାଦନ କରିଥିଲି ।

ସମ୍ମିଳନୀ କାର୍ଯ୍ୟ ସରିଗଲା ପରେ ମୁ କଟକ ଆସିଥିଲି । କଟକରେ ସେତେବେଳେ ମହତାବଙ୍କ ସହିତ ବରପାଲି କେସ ନେଇ ଆଲୋଚନା କରିଥିଲି ।

ଘଟଣା ହେଲା ବରପାଲିରେ ସେହି ବର୍ଷ ନା ତାର ପୂର୍ବ ବର୍ଷ ହାଇସ୍କୁଲ ନୂଆ ହୋଇ ଖୋଲିଥାଏ । ସେତେବେଳେ ବରଗଡର କୌଣସି ଏକ କମ୍ପାନି ବରପାଲିରୁ ଋଉଳ ବୋହି ବରଗଡ ନିଆଅଣା କରୁଥାଏ । ବରପାଲି ହାଇସ୍କୁଲର କେତେ ଜଣ ପିଲା ବରଗଡ ସିନେମା ଦେଖି ଆସିବା ପାଇଁ ଟ୍ରକ୍ ବାଲାକୁ ତାଙ୍କୁ ବସାଇ କରି ନେବାକୁ କହିଲେ । ଟ୍ରକ୍ ବାଲା ନାହିଁ କଲା । ପିଲାଏ ଉତ୍ୟକ୍ତ ହୋଇ ଟ୍ରକ୍ ବାଲାଙ୍କୁ ଢେଳା ପଥର ଫୋପାଡ଼ଲେ । ଟ୍ରକର ସାମନା କାଚ ଆଦି ଭାଙ୍ଗି ଦେଲେ । ଫଳରେ ସେ ଥାନାରେ ରିପୋର୍ଟ କଲା । ଥାନା ବାଲା

ସଂପୃକ୍ତ ପିଲାଙ୍କୁ ଡକାଇ ଆଣି ଥାନାରେ ଅଟକ କରି ରଖିଲେ । ପିଲାଙ୍କ ସପକ୍ଷରେ ଦଳେ ଲୋକ ବରପାଲିରୁ ଚାହାରି ସେହି ପିଲାଙ୍କୁ ଥାନାରୁ ଜୋର କରି ନେଇ ଆସିଲେ । ଗଣ୍ଡଗୋଳ ହେଲା । ପୋଲିସ ବରପାଲିର ଭଦ୍ରଲୋକ ମାନଙ୍କ ନାମରେ କେସ କଲା । ଉକ୍ତ କେସ ଶେଷରେ ଗୁରୁତର ଆକାର ଧାରଣକଲା । ସମ୍ବଲପୁରର ତତ୍କାଳୀନ ଡ. ସି. ମିଷ୍ଟର ସ୍ମାନ ସାହେବ ଅଭିଯୁକ୍ତ ୭୦ ଜଣ ବ୍ୟକ୍ତିଙ୍କୁ ଯେପରି କଠିନ ଦଣ୍ଡ ମିଳିବ ସେଥିପାଇଁ ଲେଖା ପଢ଼ା କରି ଦେଇ ଥାଆନ୍ତି । ଉକ୍ତ କେସ ନେଇ ବରପାଲିର ବିଶିଷ୍ଟ ବ୍ୟକ୍ତି ଗଣ ବିଶେଷ ଚିନ୍ତିତ ଥାନ୍ତି ।

ବରପାଲି ଜନ ସାଧାରଣଙ୍କ ସହିତ ମୋର ନିବିଡ଼ ସମ୍ପର୍କ ଆଗରୁ ରହି ଆସିଥାଏ । ମୋର କଟକ ଯାତ୍ରା କଥା ଶୁଣି ଏ କଥା ମହତାବଙ୍କୁ କହିବା ପାଇଁ ମୋତେ ବିଶେଷ ଅନୁରୋଧ କରିଥାନ୍ତି । ଗଞ୍ଜା ସମ୍ମିଳନୀରୁ ମୁଁ ଫେରି କଟକରେ ଦିନାକେତେ କେବଳ ଏଥିପାଇଁ ରହିଗଲି ।

ଦିନେ ସୁବିଧା ସୁଯୋଗ ଦେଖି ତତ୍କାଳୀନ ଓଡ଼ଶାର ପ୍ରଧାନ ମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଶ୍ରୀଯୁକ୍ତ ମହତାବଙ୍କ ନିକଟକୁ ଗଲି ଏବଂ ବରପାଲି ଜନ ସାଧାରଣଙ୍କ ଅନୁରୋଧ ତାଙ୍କୁ ଜଣାଇଲି । ମୁଖ୍ୟମନ୍ତ୍ରୀ ସେତେବେଳେ ମୋତେ କହିଲେ ଯେ କେସଟି ଉଠାଇ ଆଣିବା ଏତେ ସହଜ ନୁହେ । ବରପାଲି ବାସୀଙ୍କ ପାଇଁ ମୁ ସହା-ନୁଭୂତିଶୀଳ ଏହା ତାଙ୍କୁ ଜଣାଇ ଦେବେ । ହଠାତ ଯଦି କେସଟି ଉଠାଇ ଅଣାଯାଏ ତେବେ ଶାସକ ଗୋଷ୍ଠୀ ସବୁ କାମରେ ଉଦାସୀନ ହୋଇଯିବେ । ତେବେ ଗୋଟିଏ କଥା କେବଳ ମୋ ଆଖିକୁ ଦିଶୁଛି ।

ଇଂରେଜ ସରକାର ଭରତ ଛାଡ ଚାଲି ଯିବାର ସମ୍ଭାବନା ଅତି ଆସନ୍ନ । ଯଦି ତାହା ଘଟିବ ତେବେ ମୋର ଅନୁମାନ ଆଗାମୀ ୨।୩ ମାସ ମଧ୍ୟରେ କିମ୍ବା ତା ପୂର୍ବରୁ ମଧ୍ୟ ଏହା ଘଟି ଯାଇପାରେ । ଯଦି ଇଂରେଜ ଚାଲିଯାଏ ତେବେ ଭରତ ସ୍ୱାଧୀନତା ପାଇବା ଦିବସଟି ହେବ ସେଥିପାଇଁ ଏକ ଉତ୍କୃଷ୍ଟ ସମୟ । ସେହି ସମୟରେ ମୁ ବରପାଲି କେସ ଉଠାଇ ଆଣିବି । ଏହା ଆପଣ ସେମାନଙ୍କୁ କହି ମାସେ ଦୁଇମାସ କୌଣସିମତେ କେସଟିକୁ ଗଡାଇ ନେବାକୁ ସେମାନଙ୍କୁ କହିବେ ।

ଶ୍ରୀଯୁକ୍ତ ମହତାବ ପରିଣାମରେ ତାଙ୍କ କଥା ରକ୍ଷା କରିଥିଲେ । ଯୋଗକୁ ୧୫ । ୮ । ୪୭ ଇଂରେଜ ସରକାର ଭରତ ଛାଡ ଚାଲିଗଲେ । ଭରତ ସ୍ୱାଧୀନ ହୋଇଗଲା । ସେହି ଅବସରରେ ବରପାଲି କେସ ସରକାରଙ୍କ ତରଫରୁ ଉଠାଇ ଅଣାଗଲା । ୭୦ ଜଣ ଅଭିଯୁକ୍ତ ବ୍ୟକ୍ତି ଖଲାସ ହୋଇ ଯାଇଥିଲେ ।

# ରେମଣ୍ଡା ହାଇସ୍କୁଲ ପ୍ରତିଷ୍ଠା

ରେମଣ୍ଡା ସ୍ଥିତ ବଡକଟା ଏକ ପୁରାତନ ତଥା ୯୬ ଏକର ପରିମିତ ଏକ ବୃହତ୍ ପୁଷ୍କରିଣୀ। ଶତାଧିକ ବର୍ଷ ଧରି ତହିଁର ପଙ୍କୋଦ୍ଧାର ହୋଇ ନ ଥାଏ। ସରକାରଙ୍କ ତରଫରୁ ୧୯୫୪ ସାଲରେ ତିନି ହଜାର ଟଙ୍କା ମଞ୍ଜୁର ହୋଇ ଥିବାରୁ ଗାଁ ଲୋକେ ତାର ପଂକୋଦ୍ଧାର ସେହି ବର୍ଷ ଆଂଶିକ ଭାବରେ କରିଥିଲେ।

ବର୍ଷା ଋତୁ ଆସି ଯିବାରୁ ପଂକୋଦ୍ଧାର କାମ ପୂର୍ଣ୍ଣାଙ୍ଗ ପ୍ରାପ୍ତି ଘଟି ନ ଥିଲା। ଇତ୍ୟବସରରେ ସ୍ଥାନୀୟ କଂଗ୍ରେସ କର୍ମୀ ମଙ୍ଗଳୁ ପଧାନ ଜେଲରୁ ଖଲାସ ହୋଇ ଆସି ଦେଖିଲେ ଯେ ପୁଷ୍କରିଣୀ କାମ ଅସମ୍ପୂର୍ଣ୍ଣ ହୋଇ ପଡ଼ି ରହିଛି। ତେଣୁ ସେ ପୁନରାୟ ୧୯୫୫ ସାଲରେ ତହିଁର ପଂକୋଦ୍ଧାର କାମ କରିବାକୁ ମନସ୍ଥ କରି ଗ୍ରାମବାସୀଙ୍କୁ ନିଜର ଅଭିପ୍ରାୟ ଜଣାଇଲେ। ଗାଁର ଦଳେ ଲୋକ ତହିଁରେ ବାଧା ଦେଲେ ତଥାପି ସେ ସମସ୍ତ ବାଧା ବିଘ୍ନ ପ୍ରତି ଭ୍ରୂକ୍ଷେପ ନ କରି ପୁଷ୍କରିଣୀର ଉନ୍ନତି ସାଧନରେ ଲାଗି ପଡଲେ ଏବଂ ପରିଣାମରେ ସେ ସେଥିରେ କୃତକାର୍ଯ୍ୟ ହୋଇଥିଲେ। ତାଂକର ଏହି କାର୍ଯ୍ୟରେ ଯେଉଁମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ସେମାନଂକ ମଧ୍ୟରେ ମୁଁ ମଧ୍ୟ ଜଣେ ଥିଲି। ନାନା ବାଧା ବିଘ୍ନ ସତ୍ତ୍ୱେ ପରିଶେଷରେ ଉକ୍ତ କାର୍ଯ୍ୟ ସମାହିତ ହୋଇଗଲା। ମଙ୍ଗଳୁ ପଧାନଙ୍କୁ ସେଥିପାଇଁ ଲୋକେ ବିଶେଷ ଧନ୍ୟବାଦ ଦେଇଥିଲେ।

ମଙ୍ଗଳୁ ବାବୁ ଉପରୋକ୍ତ କାର୍ଯ୍ୟରେ ସଫଳତା ହାସଲ କରି ଥିବାରୁ ସେ ବି ଅନୁଭବ କଲେ ଯେ ନିଷ୍ଠାର ସହିତ କୌଣସି ସତ୍‌କାର୍ଯ୍ୟ କଲେ ତହିଁରେ ଜନ ସହଯୋଗ ମିଳେ ଏବଂ ପରିଣାମରେ ମନରେ ସନ୍ତୋଷ ଭାବ ଜାତ ହୁଏ।

ଏହି କାର୍ଯ୍ୟ କରି ସାରିବା ପରେ ସେ ରେଶମ, ପଧାନପାଲି ଆଦି ଗ୍ରାମ ଗୁଡ଼ିକରେଥିବା ଜଳାଶୟ ଆଦିର ସଂସ୍କାର କରିବାପାଇଁ ମନ ବଳାଇଥିଲେ। ଇତ୍ୟ-ବସରରେ ଦିନେ ବିଭିନ୍ନ ପ୍ରକାର କଥାବାର୍ତ୍ତା ହେବା ସୁବିଧାରେ ସ୍ଥାନୀୟ ଜନୈକ ଶିକ୍ଷକ ମୁଟ୍‌ରୁ ନାୟକ ଏବଂ ମୁଁ ଦୁହେଁଯାକ ମଙ୍ଗଳୁ ବାବୁଙ୍କୁ ଏକ ପ୍ରସ୍ତାବ ଦେଲୁ ଯେ ରେମଣ୍ଡାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରାଯାଉ। ସେ ତାହା ଶୁଣି ପ୍ରଥମେ ରାଜି ହେଲେ ନାହିଁ। ପରେ ସେ ଏଥିରେ ସହମତ ହୋଇ କ୍ରମେ ସେଦିଗରେ ଲାଗି ପଡଲେ। ୧୯୬୨ ସାଲ ଜୁଲାଇ ମାସରେ ପ୍ରଥମେ ୧୨ ଜଣ ପିଲାଙ୍କୁ ନେଇ ୮ମ ଶ୍ରେଣୀ ଖୋଲା ଯାଇଥିଲା। ତାପରେ ୯ମ, ୧୦ମ ଏବଂ କ୍ରମେ ୧୧ଶ ଶ୍ରେଣୀ

ମାନ ଖୋଲିଥିଲା । ୧୯୬୧ ସାଲରେ ଫେବୃୟାରୀ ମାସ ୧୯ ତାରିଖରେ ସମ୍ବଲପୁର ଯାଇ ମେଟ୍ରିକ୍ୟୁଲେସନ ପରୀକ୍ଷା ଦେଇଥିଲେ । ସେଥର ମୁଁ ମଧ୍ୟ ମେଟ୍ରିକ୍ୟୁଲେସନ ପରୀକ୍ଷା ଦେଇଥିଲି । ତା ଆଗରୁ ବିଭାଗୀୟ ଅନୁମତିକ୍ରମେ ମୁଁ ମିଃଇଃ; ୮ମ, ୯ମ, ତଥା ୧୦ମ ଶ୍ରେଣୀ ପ୍ରାଇଭେଟ ଭାବେ ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇଥାଏ ।

ସ୍କୁଲ ପ୍ରତିଷ୍ଠା ନିମିତ୍ତ ଅନ୍ୟାନ୍ୟମାନଂକ ସହିତ ମୁଁ ମଧ୍ୟ ଜଣେ ସକ୍ରିୟ ସଭ୍ୟଥିଲି । କ୍ରମେ ହାଇସ୍କୁଲର ଏଶିଷ୍ଟେଣ୍ଟ ସେକ୍ରେଟେରୀ, ତାପରେ ଜଏଣ୍ଟ ସେକ୍ରେଟେରୀ ରୂପେ କେତେ ବର୍ଷ କାର୍ଯ୍ୟ କରିଥିଲି । ପରିଶେଷରେ ସ୍କୁଲରେ ଶିକ୍ଷକ ରୂପେ ମଧ୍ୟ କାର୍ଯ୍ୟ କରିଥିଲି । ସ୍କୁଲର ପୂର୍ଣ୍ଣାଙ୍ଗ ଗଠନ ନିମିତ୍ତ ନାନାବିଧ ବାଧାବିଘ୍ନର ସମ୍ମୁଖୀନ ହେବାକୁ ଆମ୍ଭମାନଙ୍କୁ ପଡୁଥିଲା । ଅର୍ଥାଭାବ, ଶିକ୍ଷକ ସମସ୍ୟା, ଛାତ୍ର ବୃଦ୍ଧିକରଣ, ସ୍କୁଲଘର ତିଆରି, ହଷ୍ଟେଲ ନିର୍ମାଣ ଆଦି କାମରେ ଅନ୍ୟାନ୍ୟ ସହଯୋଗୀମାନଂକ ସଙ୍ଗ ରହି ମୁଁ ନିଜର ଶକ୍ତି ସାମର୍ଥ୍ୟ ଏପରି ଭାବରେ ବିନିଯୋଗ କରି ଦେଇଥିଲି ଯେ ତାହା ଭାବି ଏବେ ମଧ୍ୟ ମୁଁ ବିସ୍ମିତ ହୋଇପଡେ ।

ରେମଣ୍ଡାରେ ଏହି ସମୟ ମଧ୍ୟରେ ଏକ ଚିକିତ୍ସା କେନ୍ଦ୍ର ସ୍ଥାପନ ପାଇଁ ମଧ୍ୟ ଆମ୍ଭେମାନେ ଉଦ୍ୟମ କରିଥିଲୁ । ହେଥି ସକାଶେ ଏକ ମାନହାନି ମୋକଦ୍ଦମା ମଧ୍ୟ ସ୍ଥାନୀୟ ୪ଜଣ ଭଦ୍ରବ୍ୟକ୍ତି ନୀଳକଣ୍ଠ ମେହେର, ହନୁ ପଧାନ, ମୁଟରୁ ନାୟକ ଏବଂ ମୋ ନାମରେ ସମ୍ବଲପୁର ସବଜଜ୍ କୋର୍ଟରେ କରା ଯାଇଥିଲା । ପରିଶେଷରେ ଉକ୍ତ ମୋକଦ୍ଦମା ବରଗଡ ମୁନସିଫ୍ କୋର୍ଟକୁ ପରିବର୍ତ୍ତିତ ହୋଇ ଆସିଥିଲା । ବହୁ ବାଦ-ବିସମ୍ବାଦ ଘଟିଯିବା ପରେ ତାହା ରଜିନାମା ହୋଇଯାଇ ଦଫାରଫା ହୋଇଗଲା ।

ମାନହାନି କେସର ପରିସମାପ୍ତି ପରେ ଗ୍ରାମୀୟ ସମସ୍ତ ଗୋଳମାଳିଆ ପରିସ୍ଥିତିର ଅବସାନ ଘଟିଥିଲା ଏବଂ ମୁଁ ବ୍ୟକ୍ତିଗତ ଭାବେ ୧୯୫୪ ସାଲରୁ ସଂଶ୍ଳିଷ୍ଟ ଥିବା ଜନହିତକର ଅନୁଷ୍ଠାନ ମାନଂକରୁ ସମ୍ପର୍କ ତୁଟାଇ ଦେଇଥିଲି ।

୧୫ । ୩ । ୫୫ ଇଃର ଏକ ଘଟଣା । ସେତେବେଳେ ନୂଆ କରି ଗ୍ରାମ ଗୋଷ୍ଠୀ ଉନ୍ନୟନ ଯୋଜନା ଦେଶରେ ଚାଲୁଥାଏ । ପ୍ରତି ଗ୍ରାମ ପଞ୍ଚାୟତ ମାନଙ୍କୁ ଯିବାପାଇଁ ସଡକ ତିଆରି ଯୋଜନା ସରକାର କରିଥାନ୍ତି । ଗ୍ରାମାଞ୍ଚଳର ଉନ୍ନତି ନିମିତ୍ତ ପ୍ରଚୁର ଅର୍ଥ ସରକାର ଖର୍ଚ୍ଚ କରୁଥାନ୍ତି । ଗ୍ରାମସେବକମାନଂକ ମାଧ୍ୟମରେ ଲୋକଂକ ଅଭାବ ଅସୁବିଧା ବୁଝିବା, କୃଷିର ଉନ୍ନତି ପାଇଁ ଲୋକଙ୍କୁ ସାର ଯୋଗାଇବା ଆଦି କାମମାନ ଚାଲିଥାଏ । ରେମଣ୍ଡାରେ ଉକ୍ତ ଦିନ ଏକ ବଢ଼ ଧରଣର

ସଭ ଗ୍ରାମଗୋଷ୍ଠୀ ପକ୍ଷରୁ କରିବାକୁ ବରଗଡରୁ ସୋସିଏଲ ଅଫିସର ରଘୁବାବୁ ଏବଂ କୃଷି ଅଫିସର ଅହମ୍ମଦ ବାବୁ ରେମଣ୍ଡା ଯାଇ କରଉଥାନ୍ତି । ପ୍ରାୟ ୧୫ ହଜାର ଲୋକଙ୍କ ଗହଣରେ ସଭଟି ହେଉଥାଏ । ଶ୍ରୀ ଜଗତ୍‌ବନ୍ଧୁ ମହାପାତ୍ର ତତ୍କାଳୀନ ଡେଭଲପ୍‌ମେଣ୍ଟ ଅଫିସର ଯାଇ ସଭକୁ ଉଦ୍‌ଘାଟନ କରିଥାନ୍ତି । ସେହି ସଭଟିର ଆୟୋଜକ ଭବେ ମୋତେ ହିଁ ମୁଖ୍ୟଅଂଶ ଗ୍ରହଣ କରିବାକୁ ପଡ଼ଥିଲା । ଭେଡେନ ଥାନାରୁ ଅନେକ ନାଟଦଳ ମଧ୍ୟ ଆସିଥାନ୍ତି । ମୁଁ ସେତେବେଳେ ରେମଣ୍ଡା ବାଳିକା ସ୍କୁଲର ଥାଏ ପ୍ରଧାନ ଶିକ୍ଷକ । ଆମ ସ୍କୁଲ ପକ୍ଷରୁ ଏକ ଅଧଘଣ୍ଟିକିଆ ଏକାଂକିକା ନାଟକର ପ୍ରଦର୍ଶନ କରା ଯାଇଥିଲା । ଏକାଂକିକାଟିର ନାମ ସାବିତ୍ରୀ ସତ୍ୟବାନ । ନାଟିକାଟି ସେହି ବିରାଟ ସଭରେ ପ୍ରଦର୍ଶିତ ହୋଇ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହୋଇ ପୁରସ୍କୃତ ହୋଇଥିଲା ।

ଉକ୍ତ ନାଟିକାରେ ମୋର ୯ ବର୍ଷ ବୟସର ଏକ ଶିଶୁ କୁମାରୀ ଜ୍ଞାନଦା ସାବିତ୍ରୀ ରୂପରେ ଅବତୀର୍ଣ୍ଣା ହୋଇ ଯେଉଁ ଅଭିନୟ କରିଥିଲା ତାହା ଦେଖି ସମସ୍ତେ ମୁଗ୍‌ଧ ହୋଇ ଯାଇଥିଲେ । ସେଥିପାଇଁ ସେ ବିଶେଷ ପୁରସ୍କୃତା ମଧ୍ୟ ହୋଇଥିଲା । ମାତ୍ର ଘଟଣାର ୧୦ ମାସ ପରେ ତାର ମୃତ୍ୟୁ ହୋଇ ଯିବାରୁ ତାର ମୃତ୍ୟୁରେ ଗ୍ରାମଗୋଷ୍ଠୀ ଯୋଜନା ପକ୍ଷରୁ ୧୯୫୬ ସାଲ ଶିବରାତ୍ରୀ ମେଳାରେ ମାଇକ ସାହାଯ୍ୟରେ ଦୁଃଖ ପ୍ରକାଶ କରି ଯେଉଁ ଘୋଷଣା ପ୍ରକାଶ ପାଇଥିଲା ତାହାର ଭଷା ଥିଲା ଅତୀବ ଦୁଃଖାବହ ତଥା କରୁଣ ।

୧୯୫୫ ସାଲରେ ସ୍ଥାନୀୟ ବାଳିକା ସ୍କୁଲ ଗୃହ ନିର୍ମାଣ ପାଇଁ ମୁଁ ବିଶେଷ ଉଦ୍ୟମ କରିଥିଲି । ବରଗଡକୁ ଆସି ଦିନେ ଏଥିପାଇଁ ଏକ ଦରଖାସ୍ତ S. D. O. ଙ୍କ ଠାରେ ଦେଲି ଏବଂ ତତ୍କାଳୀନ S. D. O. ଙ୍କ ଅଫିସରେ କାର୍ଯ୍ୟ କରୁଥିବା ମୋର ଜନୈକ ଛାତ୍ର ଶ୍ରୀ ହରିହର ହଟାଇଙ୍କ ବିଶେଷ ସହାୟତାରେ ସେଥିପାଇଁ ତିନିହଜାର ଟଙ୍କା ମଞ୍ଜୁର ହୋଇଗଲା । ଉକ୍ତ ଟଙ୍କାରେ ରେମଣ୍ଡା ବାଳିକା ସ୍କୁଲ ଗୃହଟି ନିର୍ମିତ ହୋଇଥିଲା ୧୯୫୬ ସାଲରେ ।

ଉକ୍ତ ସ୍କୁଲ ଗୃହ ନିର୍ମାଣ ପାଇଁ ଇଟାଭାଟି ପୋଡାଇବାଠାରୁ ଆରମ୍ଭ କରି ଅନ୍ୟାନ୍ୟ ସମସ୍ତ କାର୍ଯ୍ୟରେ ମୋତେ ହିଁ ମୁଖ୍ୟଅଂଶ ଗ୍ରହଣ କରିବାକୁ ହୋଇଥିଲା ।

୧୯୪୩ ଖ୍ରୀ:ରୁ ୧୯୫୯ ଖ୍ରୀ: ଅକ୍ଟୋବର ୨୨ ତାରିଖ ପର୍ଯ୍ୟନ୍ତ ଦୀର୍ଘ ୧୭ ବର୍ଷକାଳ ମୁଁ ରେମଣ୍ଡାରେ ରହି ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ବହୁପ୍ରକାର ଗଠନମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରି ରଖିଥିଲି । ସେଥିରେ ନାନା ବାଧାବିଘ୍ନ, ମାନ, ଅପମାନ, ନିନ୍ଦା, ସ୍ତୁତି ଆଦି ଯେ କେତେ ଘଟିଛି ତହିଁର ଟିକି-

ନିଖି ବିବରଣ ପ୍ରଦାନ କଲେ ଏକ ବିରାଟ ଗ୍ରନ୍ଥ ହେବ । ବହୁ କଥା ବାହାରି ପଡ଼ିବ । କାହାରି କିଛି ତ ଲାଭ ହେବନାହିଁ ବରଂ ସେଥିରେ ଅନେକେ ଅନୁଶୋଚିତ ହେବେ । ଶାସ୍ତ୍ର କହେ "ଗତଂ ନ ଶୋଚ୍ୟମି କୃତଂ ନ ମନ୍ୟେ", ରୀତିରେ ଜାଣି ଶୁଣି ଉକ୍ତ ଅଧ୍ୟାୟରେ ପୂର୍ଣ୍ଣଚ୍ଛେଦ ଦେଉଛି ।

## ମଫସଲ ଜୀବନରୁ ସହରୀ ଜୀବନ

୧୯୪୯ ଖ୍ରୀ: ଅକ୍ଟୋବର ମାସ ୧୪ ତାରିଖ । ବରଗଡ ପଞ୍ଚାୟତ କଲେଜ ପାଇଁ ଚାନ୍ଦା ମାଗିବାକୁ ଆମ ଗାଁକୁ ତତ୍କାଳୀନ ବରଗଡ ଏସ୍.ଡି.ଓ. ରାଧା ମୋହନ ମହାନ୍ତି, କୃତାର୍ଥ ଆଚାର୍ଯ୍ୟ, ଭରତଚନ୍ଦ୍ର ହୋତା, ଭେଡେନ ବି. ଡି. ଓ. ମନମୋହନ ମହାପାତ୍ର ବାବୁ, ତହସିଲଦାର ସେନଗୁପ୍ତ ବାବୁ ଆସିଲେ ।

ଦୈବକ୍ରମେ ସେମାନେ ଆସି ରେମଣ୍ଡା ବାଳିକା ସ୍କୁଲରେ ରହିଲେ । ମୁଁ ସେତେବେଳେ ରେମଣ୍ଡା ବାଳିକା ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥାଏ । ରାଧାମୋହନ ବାବୁ ସର୍ବ ପ୍ରଥମେ ସ୍କୁଲରେ ମୋତେ ଦେଖି ପକାଇ କଣ ସେ ଭାବିଲେ କେ ଜାଣି ତାପରେ ତହସିଲଦାର ସେନଗୁପ୍ତ ବାବୁଙ୍କୁ ଲକ୍ଷ କରି କହିଲେ ଯେ ସେନଗୁପ୍ତ ବାବୁ, ମୁଁ ପାଇଗଲି । କଣ ପାଇଗଲେ ଟଂକା, ସୁନା ଆଉ କିଛି ? ସେନଗୁପ୍ତ ବାବୁ କହିଲେ । ହେ,- ଟଂକା ସୁନା କଥା କଣ କହୁଛ ହେ ତା'ଠୁ ବଡ଼ଆ ଆଉ କିଛି । ଏଇ ଯେଉଁ ଶିକ୍ଷକଙ୍କୁ ଦେଖୁଛ ନା ୟାଙ୍କୁ ! ପାଇଗଲି । ୟାଙ୍କୁ ଦେଖିବା ମାତ୍ରେ ମୋର ରୋମାଞ୍ଚ ହୋଇଗଲା । ୟାଂକ ମୁହଁ ଦେଖି ମୁଁ ଜାଣିଗଲି ଯେ ୟାଙ୍କ ଯୋଗୁଁ ମୋ ମନ କାମନା ପୂର୍ଣ୍ଣହେବ । ମୋ ଡାହାଣ ଆଖି ଡେଇଁଛି । ୟାଙ୍କୁ ନେବା.......... ମନେ ରଖିଥାଅ ।

× × × × × ×

ସେ ଦିନ ଉପର ଓଳି S. D. O. ରାଧାମୋହନ ବାବୁ ମୋତେ ଡାକି କହିଲେ ଆପଣଙ୍କୁ ମୁଁ ବରଗଡ ନେବା ପାଇଁ ଚାହୁଁଛି । ଆପଣ ରାଜି ପଡଲେ ମୁଁ ନିଜକୁ ଭାଗ୍ୟବାନ ମନେ କରିବି ।

"କଥା ହେଲା ମୋ ପୁଅ ମା ଛେଉଣ୍ଡ । ସେଥିପାଇଁ ସେ ବଡ ଦୁଷ୍ଟ ପାଲଟି ଗଲାଣି । ତା ପାଇଁ ମୁଁ ବିଭିନ୍ନ ସ୍ଥାନରୁ ୧୪ ଜଣ ଶିକ୍ଷକଙ୍କୁ ଆଣିଲିଣି । କେହି ତାକୁ ପାରୁ ନାହାନ୍ତି । ମୋର ଦୃଢ଼ ବିଶ୍ୱାସ ଆପଣ ତାକୁ ପଢାଇ ପାରିବେ । ଆପଣ ସ୍ୱୀକୃତି ଦେଲେ ମୁଁ ସମ୍ବଲପୁର ଯାଇ ଆପଣଙ୍କୁ ବରଗଡ ଟ୍ରାନ୍ସଫର କରାଇ ଆଣିବି ।"

ରାଧାମୋହନ ବାବୁଙ୍କ କଥା ଶୁଣି ମୁଁ ରାଜି ପଡଗଲି । ସେ ମୋତେ ୮ ଦିନ ପରେ ଆପଣ ବରଗଡ ଯିବେ ଏଥିପାଇଁ ପ୍ରସ୍ତୁତ ହୋଇଥାନ୍ତୁ କହି ସେ ଦିନ ଉପର ଓଳି ଦଳ ବଳ ସହିତ ବରଗଡ ଫେରି ଆସିଥିଲେ ।

ଘଟଣାର ଠିକ୍ ୭ ଦିନ ପରେ ଅକ୍ଟୋବର ୨୨ ତାରିଖ ଦିନ ଦ୍ୱିପ୍ରହର ସମୟରେ ବରଗଡରୁ ନାରାୟଣ ଦେବତା, ଶିକ୍ଷକ ଖଜୁରିଚିକ୍ରା ବରଗଡ ଡେ.ଇ.ଙ୍କ ଠାରୁ ଏକ ନିଯୁକ୍ତି ପତ୍ର ଧରି ମୋ ନିକଟରେ ପହଞ୍ଚି ମୋତେ ସେହି ଦିନ ବର-ଗଡ ଆସିବାକୁ କହିଲେ ଏବଂ ମୁଁ ମଧ୍ୟ ସେ ଦିନ ତାଙ୍କ ସହ ବରଗଡ ଚାଲି ଆସି ତା ଆରଦିନ ୨୩ ତାରିଖ ଖଜୁରିଚିକ୍ରା ସ୍କୁଲରେ ଶିକ୍ଷକ ରୂପେ ଯୋଗଦାନ କରିଥିଲି ।

ଉପରୋକ୍ତ ଘଟଣା ମୋତେ ବରଗଡ ଆଣିଥିଲା । ରାଧାମୋହନ ବାବୁ ମୋତେ ଯେଉଁ ଉଦ୍ଦେଶ୍ୟରେ ବରଗଡ ଆଣିଥିଲେ ତାହା ସଫଳ ହୋଇଥିଲା । ତାଙ୍କର ସେ ଦିନର ଭବିଷ୍ୟତ ବାଣୀ ଅକ୍ଷରେ ଅକ୍ଷରେ କାର୍ଯ୍ୟରେ ପରିଣତ ହୋଇ ଥିଲା ଏବଂ ସେ ମୋତେ ସେଥିପାଇଁ ବିଶେଷ ଶ୍ରଦ୍ଧା ମଧ୍ୟ କରିବାରେ ଲାଗିଲେ । ସେ ଏବେ ଅବସର ନେଇ ଭୁବନେଶ୍ୱରରେ ଅବସ୍ଥାନ କରୁ ଅଛନ୍ତି । ତାଙ୍କ ନିକ-ଟକୁ ଭୁବନେଶ୍ୱର ଗଲେ ମୁଁ ଯାଏଁ । ଉକ୍ତ ପରିବାରରେ ମୋର ସମ୍ମାନ ଏ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଭାବେ ରହି ଆସିଛି ।

ପୁଅ ହିସାବରେ ସେହି ପିଲାଟି ବଡ । ହୃଷ୍ଟପୁଷ୍ଟ ତାଗଡା ଶରୀର । ଦୁଷ୍ଟ ହିସାବରେ ତାକୁ ସମସ୍ତେ ଜାଣି ସାରିଥାନ୍ତି । ବରଗଡକୁ ଆସି ତାର କଥା ଶୁଣି ମୁଁ ବି ପ୍ରଥମେ ସ୍ତମ୍ଭୀଭୂତ ହୋଇଗଲି । ସେତେବେଳେ ଚିନ୍ତା କଲି "ଯଦି ବାଜୀକର ରଜ୍ଜୁରେ ପୟର ଦେଲେ ନ ପାରିବ ଚାଲି, ତାଳି ମାରି ଲୋକେ ହସି ଦେବେ ତେଣେ ବାଦ୍ୟକାର ଦେବ ଗାଳି ।" ମୋର ସୌଭାଗ୍ୟ ପିଲାଟି ଆଠ ଦିନ ଭିତରେ ରାସ୍ତାକୁ ଆସିଗଲା । ପରିଣାମରେ ସେ କ୍ଲାସରେ ଦୁଇ ବର୍ଷ ଯାକ ପ୍ରଥମ ନମ୍ବରରେ ପାସ କରୁଥିଲା । ତାରି ପରୀକ୍ଷା ଖାତା ୩ ଗୋଟି ସ୍କୁଲର ଶିକ୍ଷକମାନେ ଥରେ ସରିଗଲେ ଆଉଥରେ କରି ଅତି ନିବିଷ୍ଟ ଭାବେ ପଢ଼ି ମୂଲ୍ୟାଙ୍କନ କରୁ ଥିଲେ । ବିଶେଷ କରି ତତ୍କାଳୀନ ସ୍କୁଲ ଡେପୁଟୀ ଇନ୍‌ସପେକ୍ଟର ଲୋକନାଥ ପଟ୍ଟନାୟକ ଥାନ୍ତି S. D O. ଙ୍କର ଅତି ଆପଣାର ଲୋକ । ସେଥିପାଇଁ ସେ ସବୁ କଥା ସହଜରେ କରାଇ ପାରୁଥିଲେ ।

ରାଧାମୋହନ ବାବୁ ବରଗଡରେ ଥିବା ପର୍ଯ୍ୟନ୍ତ ଦୁଇବର୍ଷ କାଳ ମୁଁ ଘୋର ଆର୍ଥିକ ଦୁଃସ୍ଥିତିରେ ପଡ଼ି ଯାଇଥିଲି । ତାଙ୍କ ଘରେ ଦୁଇବେଳା ପାଠ

ପଢ଼ାଇଲେ ସୁଦ୍ଧା ସେ ମୋତେ ମାସିକ କୋଡ଼ିଏ ଟଙ୍କା ମାତ୍ର ଦେଉଥାନ୍ତି ।

ମୁଁ ରେମଣ୍ଡାରୁ ବରଗଡ଼ ଆସିଲା ବେଳେ ଯାହା ସଞ୍ଚୟ କରି ଆଣିଥିଲି ଏହି ଦୁଇ ବର୍ଷ ମଧ୍ୟରେ ସେହି ସଞ୍ଚିତ ଅର୍ଥ ସବୁ ନିଃଶେଷ ହୋଇଗଲା । ସେ ଚାଲିଯିବା ପରେ ମୋର ଅର୍ଥାଗମ ପନ୍ଥା କ୍ରମଶଃ ବୃଦ୍ଧି ଲାଭ କଲା । ବରଗଡ଼କୁ ଆସିବା ପୂର୍ବରୁ ମୁଁ କବିରାଜୀ ବିଦ୍ୟାରେ ଦକ୍ଷ ଥିଲି । କର୍ମ କର୍ମାଣୀ ବିଦ୍ୟା ମଧ୍ୟ ମୋର ମୁଖାଗ୍ରତ ଥିଲା । ରାଧାମୋହନ ବାବୁଙ୍କ ଘରେ ତାହା ପ୍ରଥମେ ଆରମ୍ଭ ହୋଇଥିଲା । ତାଙ୍କ ସହ ତାଙ୍କର ଦ୍ୱିତୀୟା ପତ୍ନୀର ବିବାହ କ୍ରିୟା ମୋ ଦ୍ୱାରା ସମ୍ପନ୍ନ ହୋଇଥିଲା ।

ବରଗଡ଼କୁ ଆସି ମୁଁ ଜ୍ୟୋତିଷ ବିଦ୍ୟା ମଧ୍ୟ ଶିଖିଥିଲି । ଶିକ୍ଷକତାକୁ କେନ୍ଦ୍ର କରି ନାନାବିଧ ପନ୍ଥାର ଆଶ୍ରୟ ମୋତେ ନେବାକୁ ପଡ଼ୁଥିଲେ ସୁଦ୍ଧା ସ୍କୁଲ କାର୍ଯ୍ୟରେ କେବେ ମଧ୍ୟ ମୁଁ କୌଣସି ପ୍ରକାର ଅବହେଳା କରି ନ ଥିଲି । କର୍ତ୍ତବ୍ୟରେ ନିଷ୍ଠାପରତା ଲାଗି ୧୯୬୨ ଖ୍ରୀ:ରେ ମୋତେ ରାଷ୍ଟ୍ରପତି ପଦକ ତଥା ଜଣେ କୃତୀ ଶିକ୍ଷକ ରୂପେ ୧୯୬୪ ଖ୍ରୀ:ରେ ରାଜ୍ୟପାଳ ପୁରସ୍କାର ମିଳିଥିଲା ।

ଶିକ୍ଷା ବିଭାଗରେ ନିରବଚ୍ଛିନ୍ନ ଭାବେ ଦୀର୍ଘ ୪୩ ବର୍ଷ କାଳ ନିଷ୍ଠାପର ଭାବେ କାର୍ଯ୍ୟ କରି ଶେଷରେ ୬୦ ବର୍ଷ ବୟସରେ ଅର୍ଥାତ୍ ୧୯୭୫ ସାଲ ମୟୀ ମାସ ୨୨ ତାରିଖରେ ମୁଁ ଶିକ୍ଷା ବିଭାଗରୁ ଅବସର ଗ୍ରହଣ କରି ଏବେ ସରକାରଙ୍କ ଠାରୁ ପେନସେନ ପାଉଅଛି ।

## ପାରିବାରିକ ପରିସ୍ଥିତି

୧୯୩୯ ସାଲ ଜାନୁୟାରୀ ୬୩ ତାରିଖ ଠାରୁ ମୁଁ ପ୍ରକୃତ ପରିବାର ବନ୍ଧନରେ ବାନ୍ଧ ହୋଇ ରହି ଆସିଅଛି । ଦୀର୍ଘ ୫୦ ବର୍ଷ ଉପରେ ହେଲା ଆମର ଦାମ୍ପତ୍ୟ ଜୀବନରେ କେବେ କୌଣସି ପ୍ରକାର ଅଶାନ୍ତ ଉପୁଜି ନାହିଁ । ସେ ଅର୍ଥାତ୍ ମୋର ପତ୍ନୀ ଭଗବତୀ ଦେବୀ ତାଂକର ଜୀବନ କାଳ ମଧ୍ୟରେ ସର୍ବ ମୋଟ ୭ ଗୋଟି ପୁତ୍ର କନ୍ୟା ଜନ୍ମ କରିଥିଲେ ।

ମୋର ଜ୍ୟେଷ୍ଠ ପୁତ୍ର ସଂଗ୍ରାମ କେଶରୀ ଦାଶଂକ ଜନ୍ମ ୧୯୪୨ ସାଲ ମୟୀ ମାସରେ ହୋଇଥିଲା । ସେ ଜଣେ ତାଲିମ ପ୍ରାପ୍ତ ଶିକ୍ଷକ ରୂପେ ବରଗଡ଼ର ଏକ ଶିକ୍ଷାନୁଷ୍ଠାନରେ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରୁଅଛି । ତାର ୨ ଗୋଟି



ଶ୍ରୀ ସଂଗ୍ରାମ କେଶରୀ ଦାଶ



ଶ୍ରୀ ସଂବିଦ କୁମାବ ଦାଶ



ଶ୍ରୀ ସନ୍ଦୀପ କୁମାର ଦାଶ



ଡାଃ ବିକ୍ରମ କେଶରୀ ଦାଶ



ତୁଷାର ରଞ୍ଜନ ଦାଶ
ନୀହାର ରଞ୍ଜନ ଦାଶ
କୁମାରୀ ନୀହାରିକା ଦାଶ (ମହି)



ଅଧ୍ୟାପକ ଶ୍ରୀ ଚନ୍ଦ୍ରମଣି ଦାଶ
ବରପାଲି



ଶ୍ରୀମତୀ ପ୍ରଜ୍ଞାବାଳା ଦାଶ
ବରପାଲି



କୁମାରୀ ପ୍ରଚେତା



କୁମାରୀ ଅର୍ଚ୍ଚିତା

ପୁତ୍ର ସନ୍ତାନ । ଗୋଟିକର ନାମ ସଂବିଦ କୁମାର ଓ ଅପରଟିର ନାମ ପ୍ରଦୀପ କୁମାର ଅଟେ ।

ଦ୍ୱିତୀୟ ପୁତ୍ର ଡାକ୍ତର ବିକ୍ରମ କେଶରୀ ଦାଶ, ଏମ୍ ଡ଼., ଏବେ କୁଚିଣ୍ଡା ଗଭର୍ଣ୍ଣମେଣ୍ଟ ହସପିଟାଲରେ ମେଡ଼ସିନ ସ୍ପେସିଏଲିଷ୍ଟ ରୂପେ ରହି କାର୍ଯ୍ୟ କରୁଅଛି । ତାହାର ଜନ୍ମ ୧୯୪୪ ସାଲ ନଭେମ୍ବର ୨୮ ତାରିଖ । ତାହାର ୩ ଗୋଟି ପୁତ୍ର କନ୍ୟା ଅଛନ୍ତି । କନ୍ୟାଟି ବଡ଼ । ପୁତ୍ର ଦୁଇଟି ଯମଜ ସନ୍ତାନ । ସେମାନଙ୍କ ନାମ ଯଥାକ୍ରମେ ନୀହାରିକା, ନୀହାର ରଞ୍ଜନ ଓ ତୁଷାର ରଞ୍ଜନ ଅଟେ ।

ଉପରୋକ୍ତ ପୁତ୍ର ଦୁଇଜଣଙ୍କ ଜନ୍ମ ପରେ ୧୯୪୬ ଖ୍ରୀ:ରେ ମୋର ଏକ କନ୍ୟା ସନ୍ତାନ ଜନ୍ମଗ୍ରହଣ କରିଥିଲା । ତାହାର ନାମ ଜ୍ଞାନଦା କୁମାରୀ ଦିଆ ଯାଇ ଥିଲା । ସେ ତାହାର ଦଶବର୍ଷ ବୟସରେ ଟାଇଫଏଡ଼ ଜ୍ୱରରେ ପଡ଼ି ୧୯୫୬ ଖ୍ରୀ: ମାଘ ମାସରେ ଇହଲୀଳା ସାଙ୍ଗ କଲା ।

ତାପରେ ସୁନନ୍ଦା ନାମରେ ମୋର ଆଉ ଏକ କନ୍ୟା ଜାତ ହୋଇ ଜନ୍ମର ଆଠ ମାସ ପରେ ସେ ମଧ୍ୟ ଭବଧାମ ତ୍ୟାଗ କରି ଚାଲିଗଲା ।

ବର୍ତ୍ତମାନ ଥିବା ମୋର କନ୍ୟା ତ୍ରୟଙ୍କ ମଧ୍ୟରୁ ବଡ଼ କନ୍ୟା ଶୈଳବାଳା, ମଧ୍ୟମାକନ୍ୟା କନକଲତା, ଉଭୟେ ଶିକ୍ଷୟିତ୍ରୀ ଭାବେ ବରଗଡ଼ରେ କାର୍ଯ୍ୟ କରନ୍ତି । ତୃତୀୟା କନ୍ୟା କୁମାରୀ ପ୍ରଜ୍ଞାବାଳାର ବିବାହ ୧୯୮୪ ସାଲରେ ବରପାଲି ନିବାସୀ ଶ୍ରୀ ଫକିର ମୋହନ ଦାଶ ଙ୍କ ଜ୍ୟେଷ୍ଠ ପୁତ୍ର ଚନ୍ଦ୍ରମଣି ଦାଶଙ୍କ ସହିତ ହୋଇଅଛି । ଜାମାତା ବରପାଲି କଲେଜରେ ଅର୍ଥନୀତି ବିଭାଗରେ ଅଧ୍ୟାପକ ରୂପେ କାମ କରୁଅଛନ୍ତି । ଉକ୍ତ ଦୁହିତାର ଗର୍ଭରୁ ଦୁଇଗୋଟି କନ୍ୟା ସନ୍ତାନ ଜନ୍ମଲାଭ କରି ଅଛନ୍ତି । ସେମାନଙ୍କ ନାମ ଯଥାକ୍ରମେ କୁମାରୀ ପ୍ରଚେତା ଓ କୁମାରୀ ଅର୍ଚ୍ଚିତା ଅଟେ ।

ଅନ୍ଧକବି ଭୀମ ଭୋଇଙ୍କ କଥିତାନୁଯାୟୀ "ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ" ପରି ମୋ ଜୀବନ ପଥ ଅଶେଷ କଣ୍ଟକାକୀର୍ଣ୍ଣ, ସମସ୍ୟା ବହୁଳ ହେଲେ ମଧ୍ୟ ମୋର ପୁତ୍ର କନ୍ୟାଗଣ ଯେ ଏବେ ଜନସେବା ବ୍ରତରେ ଲାଗି ପଡ଼ିଛନ୍ତି ଏହାହିଁ ହେଉଛି ମୋ ନିମିତ୍ତ ସାନ୍ତ୍ୱନାର ଏକ ଖୋରାକ ।

ମୋର ଶ୍ୱଶୁର ବିମଳେଶ୍ୱର ମିଶ୍ର ଜଣେ ଶିକ୍ଷକ ଥିଲେ । ତାଙ୍କର ଅତିଥି

ପରୟଣ ମନୋଭବ ଅନନ୍ୟ ଦୁର୍ଲଭ ଅଟେ । ସେ ଜଣେ ସାହିତ୍ୟିକ ଓ ବିଳାସୀ ବ୍ୟକ୍ତି ଥିଲେ । ତାଙ୍କ ଦ୍ୱାରା ଲିଖିତ କେତେ ଖଣ୍ଡ କବିତା ପୁସ୍ତକ ପାଣ୍ଡୁଲିପି ଆକାରରେ ଅଛି ।

ସେ ତାଙ୍କର ଦ୍ୱିତୀୟା କନ୍ୟାକୁ (ମୋର ପତ୍ନୀ) ଆମ ଘରକୁ ପଠାଇଲା ବେଳେ ଆଶା ଅନୁରୂପ ଯୌତୁକ ଦେଇ ପାରି ନ ଥିବାରୁ ତାଙ୍କ ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ଅନୁଶୋଚନା କରୁଥାନ୍ତି ।

ନିଜ ଦୁହିତାକୁ ବିଦାୟ ଦେବାବେଳେ ସେ କହିଥିଲେ ତାକୁ ଯେ ଦେଖ୍ ତୋତେ ମୁ ଯାହା ଦେବାକୁ ଋହୁଁଥିଲି ତାହା ଦେଇ ପାରିଲି ନାହିଁ । ତୋର ସ୍ୱାମୀ ଘରକୁ ଯାଉଛୁ; ସେଠାରେ ପହଞ୍ଚି ତୁ ତୋର ସ୍ୱାମୀ ନିକଟରେ କୌଣସି ମୂଲ୍ୟ-ବାନ ଶାଢୀ ବା ଅଳଙ୍କାର ପାଇଁ କେବେ ମଧ୍ୟ କତାଳ କରିବୁ ନାହିଁ ।

ପିତାଙ୍କର ସେହି ଉକ୍ତିକୁ ସେ ବରବର ପାଳନ କରି ଆସି ଅଛନ୍ତି । ଆମ ଘରକୁ ଆସିବାର ତାଙ୍କର ଆଜିକି ପଚ୍ଚଶ ବର୍ଷ ଉପରେ ହୋଇଗଲା ପଛକେ ତଥାପି ସେ କେବେ ମଧ୍ୟ ମୋ ଆଗରେ କୌଣସି ଦାବୀ ତାଙ୍କ ନିଜ ସକାଶେ ଉପସ୍ଥାପନ କରି ନାହାନ୍ତି ।

ବିଶେଷତଃ ନିଜ ପୁତ୍ର କନ୍ୟାଗଣଙ୍କର ଖାଦ୍ୟପେୟାଦିର ଯତ୍ନ ନେବାରେ ସେ କେବେ ମଧ୍ୟ କୌଣସି ପ୍ରକାର ତ୍ରୁଟିବିଚ୍ୟୁତି ଘଟାଇ ଥିବାର ମନେ ହୁଏନା । ଆମ ଘରକୁ ଆସିବାର ଦୀର୍ଘ ବର୍ଷ ବିତି ଯାଇଥିଲେ ମଧ୍ୟ ପାରିବାରିକ ପରିଜନ ତଥା ପଡା ପଡୋଶୀ କୌଣସି ବ୍ୟକ୍ତି ଅଥବା ସ୍ତ୍ରୀଲୋକଙ୍କ ଠାରେ ସେ କୌଣସି ପ୍ରକାର କଳହ ବା ଉଚ୍ଚବାଚ ହୋଇ ଥିବାର ଜଣା ପଡନାହିଁ ।

ମୋ କର୍ତ୍ତୃକ ଘଟି ଯାଇଥିବା ବହୁପ୍ରକାର ତ୍ରୁଟୀ ବିଚ୍ୟୁତିକୁ ସେ ସ୍ୱକୀୟା ଉଦାର ଗୁଣରେ ଅମ୍ଳାନ ବଦନରେ ସହ୍ୟ କରିନେବା ସଙ୍ଗେ ସଙ୍ଗେ ମୋତେ ବହୁ କ୍ଷେତ୍ରରେ କ୍ଷମା ପ୍ରଦାନ କରିବା ଘଟଣା ଏବେ ମଧ୍ୟ ମୋ ନିକଟରେ ସେ ଗୁଡ଼କ ଅପାଶୋର ହୋଇ ରହି ଆସିଅଛି ।

ମୋର ପୁତ୍ର କନ୍ୟାଗଣ ଆବାଲ୍ୟରୁ ମୋର କଠୋର ଶାସନରେ ବଢ଼ି ଆସି ଅଛନ୍ତି । ତେଣୁ ଯୁଗଧର୍ମାନୁଯାୟୀ ଯେଉଁ ପ୍ରକାର ଉଚ୍ଛୃଙ୍ଖଳତା, ସ୍ୱୈରଋର, ଦାମ୍ଭିକତା ଅଥବା ଔଦ୍ଧତ୍ୟ ପଶିଆ ପରିବାର ପରିସର ମଧ୍ୟରେ କିମ୍ବା ବାହାରେ ପ୍ରକାଶ ପାଏ ତାହା ତାଙ୍କଠି ନାହିଁ । ମୋର ପୁତ୍ରଦ୍ୱୟ ଯୁବକ ଉଚ୍ଚଶିକ୍ଷିତ । ଉପା-ର୍ଜ୍ଜନକ୍ଷମ । ପାରିବାରିକ ପରମ୍ପର କ୍ରମେ ସେମାନେ ନିଶ କିମ୍ବା ଆଧୁନିକ ପ୍ରଚଳିତ ଝୁମ୍ପୁରିବାଳ ମୁଣ୍ଡରେ ରଖି ନାହାନ୍ତି । କୌଣସି ନିଶାଦ୍ରବ୍ୟ ବ୍ୟବହାର କରିବା ତ

ଦୂରର କଥା ଏପରିକି ଗୌଖୀନ ଭବେ ମଧ୍ୟ କେହି ବିଡ଼ ବା ସିଗାରେଟ୍ ଟାଏ ମଧ୍ୟ ବ୍ୟବହାର କରନ୍ତ ନାହିଁ । ସେମାନଙ୍କର ସେହି ପ୍ରକାର ସ୍ୱଭବ ଦେଖି ମୁ ଗର୍ବ ଅନୁଭବ କରେ ।

## ଅନୁଚିନ୍ତା

କବିବର ଚିନ୍ତାମଣି ମହାନ୍ତ ତାଙ୍କର ବିଶ୍ୱଚିତ୍ର ପୁସ୍ତକରେ ଏକ ଅନାଥ ବାଳକ ସମ୍ପର୍କରେ ତାର ବାଲ୍ୟକାଳ ବିବରଣ ବର୍ଣ୍ଣନା କରିବାକୁ ଯାଇ ଏକ ସ୍ଥାନରେ ଲେଖିଛନ୍ତ

ବାଲ୍ୟ ବିବରଣୀ ଖାତାରେ ମୋହର
ରହିଗଲା ସାଦା ପତ୍ର
ପଢ଼ ରହିଗଲା ସେହିପରି ଅଣ—
ଉଦ୍ ଯାପିତ କ୍ରୀଡ଼ାସତ୍ର ।

ଉଲ୍ଲିଖିତ ଉକ୍ତିର ମାର୍ମ୍ମାନ୍ତକ ବେଦନା ସହିତ ମୋର ଶୈଶବା-ବସ୍ଥା ଯେ ତୁଳନୀୟ ଏହା ଅକ୍ଷରେ ଅକ୍ଷରେ ସତ୍ୟ ।

ପିତୃ ମାତୃହୀନ ଏକ ବର୍ଷକିଆ ଶିଶୁ ମାତୃସ୍ତନ୍ୟ ତଥା ତଦନୁରୂପ ଖାଦ୍ୟର ଅଭବରୁ କ୍ଷୁଧା ଏବଂ ରୋଗ ସହ ଅହରହ ସଂଗ୍ରାମ କରି ଆସିବା କଥା ଆଜିକାଲିକାର ଯୁଗରେ ଅସମ୍ଭବ ବୋଧ ହେଉଛି ସତ କିନ୍ତୁ ତତ୍କାଳୀନ ଅବସ୍ଥାରେ ତାହା ଥିଲା ଅତ୍ୟନ୍ତ ବିଡମ୍ବନାପ୍ରଦ । କାରଣ ସେହି ସମୟରେ ଶିଶୁ ଖାଦ୍ୟ ଆଦି ବଜାରରେ ଆଦୌ ମିଳୁ ନ ଥିଲା କିମ୍ବା ତାର ପ୍ରଚଳନ ମଧ୍ୟ ନ ଥିଲା ।

ମାତୃହରା ହେବାର ପ୍ରାୟ ୩ ବର୍ଷ ପର୍ଯ୍ୟନ୍ତ ଆମ ପରିବାର ତଥା ପଡ଼ା ପଡ଼ୋଶୀର କୌଣସି ବ୍ୟକ୍ତି ଆଶା କରି ନ ଥିଲେ ଯେ ଏହି ଶିଶୁଟି ବଞ୍ଚିପିବ ବୋଲି ।

ତଥାପି ମୁ ବଞ୍ଚିଲି । ବଞ୍ଚି ରହି ନ ଥିଲେ ଏତେ ଦୁଃଖ କଷ୍ଟର ବା କିଏ ସମ୍ମୁଖୀନ ହୋଇଥାନ୍ତା । ଥର ଥର କରି ମୃତ୍ୟୁ ମୋତେ ତାର କରାଳ ଗ୍ରାସରେ ନିପତିତ କରିବାକୁ ଉଦ୍ୟମ କରିଛି ଏବଂ ମୁ କୌଣସି ମତେ ସେଥିରୁ ଉବୁରି ଯାଇଛି ।

ଧନ୍ୟ ସେହି ମୋର ପିତାମହୀ କୌଶଲ୍ୟା ଦେବୀ । ଢ଼ଣେ ଆଶା-

ବାଦିନୀ ରୂପେ ସେ ମୋର ପଛରେ ରହି ଯେଉଁ ଶ୍ରମ, ପରିଚର୍ଯ୍ୟା କରିଛନ୍ତ ତାହା ତାଙ୍କ ମୁଖରୁ ମୁ ବହୁବାର ଶୁଣି ବିସ୍ମିତ ହୋଇଛି ।

ମୋତେ ଛଅ ବର୍ଷ ବୟସ ହେବାବେଳେ ମୋ ସମ୍ବନ୍ଧରେ ମୋର ପିତାମହୀ ଅନ୍ୟ ମାନଙ୍କ ପାଖରେ ଯାହା ସବୁ କଥା କହୁଥିଲେ ସେହି ସମସ୍ତ କଥା ମୁ ଏବେ ବି ମନେ ରଖିଛି ।

ମୋର ପିତୃବ୍ୟ ତାଂକ ନିଜ ସ୍ୱାର୍ଥ ଦୃଷ୍ଟିରୁ ଆମ ଏକାନ୍ନବର୍ତ୍ତୀ ପରିବାରରୁ ପୃଥକ୍ ହୋଇ ରହିବା ପରେ ଆମେ ଯେତେ ସବୁ ରହିଲୁ ସେଥିରେ ମୋର ବଡ ମାଆଙ୍କ ଉପରେ ପରିବାରର ଦେଖାଶୁଣା ଭାର ପଡଲା । ସେ ମୋତେ ଆନ୍ତରିକ ଭଲ ପାଉ ନ ଥିଲେ । ଲୋକ ଦେଖାଣିଆ ଭାବେ ପୁଣି ମୋର ବଡବାପା ଆଦିଙ୍କୁ ପ୍ରତାରଣା କରିବା ଅଳରେ ଯାହା କିଛି ବ୍ୟବହାର ମୋତେ ଦେଖାଇ ଥାନ୍ତି ତାହା ଥିଲା ତାଂକର କୃତ୍ରୀମ ମନୋଭାବର ଏକ ଛଲ୍‌ବାଜୀ ।

ସେ ତ ମୋର ବଡ ଭାଇଙ୍କୁ ପୁଅ କରି ରଖି ଥାଆନ୍ତି । ଖାଇବା ଆଦି ଦେବାରେ ସେ ଆମ ଦି ଭାଇଂକ ମଧ୍ୟରେ ପାତର ଅନ୍ତର ଭାବ ଦେଖାଉ ଥିଲେ ତାହା ମୁ ସ୍ପଷ୍ଟ ଜାଣି ପାରୁ ଥାଏ ।

ଘରେ ଥାଇ ମଧ୍ୟ ଖାଇବା ବିଷୟରେ ମୋର ସ୍ୱାଧୀନତା ନ ଥାଏ । ମୋର ପିତାମହୀ ସବୁ ଜାଣି ପାରୁଥାନ୍ତି କିନ୍ତୁ କିଛି କରିବା ଅବସ୍ଥାରେ ତାଂକର ସାହସ ନ ଥାଏ । ଘରେ ଯାହା କିଛି ଅଳି, ଅର୍ଦ୍ଦଳି, ଦାବୀ, ଉପଦାବୀ ସବୁ କିଛି ମୋର ବଡ ଭାଇଂକର ଥାଏ । ମୁ ନିରୀହ ଭାବେ ରହିଥାଏ ।

ମୋର ବଡ ମାଆ ଯାହାଙ୍କୁ ମୁ ମାଆ ବୋଲି ଡାକୁଥାଏଁ ମୋର ସାମାନ୍ୟ ତ୍ରୁଟୀ ବିଚ୍ୟୁତିକୁ ସେ ସହ୍ୟ କରି ପାରୁ ନ ଥିଲେ । ସାମାନ୍ୟ କଥାରେ ମଧ୍ୟ ସେ ମୋତେ ଦେଖି କହୁଥାନ୍ତି 'ଏ ପିଲାକୁ ଦେଖିଲେ ମୋର ହାଡ ଜଳି ପୋଡ ଯାଏ' । ତାଂକ ମୁହଁରୁ ତାଂକର ଏହି ଉକ୍ତି ମୁ ଶତାଧିକ ଥର ଶୁଣିଅଛି । ସେଥିପାଇଁ ବାଲ୍ୟ କାଳରୁ ମୋର ସ୍ୱାସ୍ଥ୍ୟରେ କେବେ ଉନ୍ନତି ଘଟୁ ନ ଥାଏ ।

୧୯୩୧ ସାଲରେ ମୁ ମୋର ସ୍ୱାସ୍ଥ୍ୟର ତତ୍ତ୍ୱ ନେଲି । କ୍ରମେ ମୋର ସ୍ୱାସ୍ଥ୍ୟରେ ଆଶାତୀତ ଉନ୍ନତି ଦେଖା ଦେଇ ଥିଲା । ମୋର ପିତୃବ୍ୟ ଏବଂ ଖୁଡ଼ ମଧ୍ୟ ମୋତେ ଆଦୌ ଭଲପାଉ ନ ଥିଲେ । ପିତାମହୀଂକ ବ୍ୟତୀତ ପରିବାରରେ ମୋର ହୋଇ କେହି ଥିଲେ ବୋଲି ମୋର ମନେ ହୁଏନା ।

ଜନ୍ମର କେତେକ ମାସ ପରେ ତ ମୋର ପିତା ମାତା ଗଲେ । ତାଂକ ପରେ ପରିବାର ମଧ୍ୟରୁ ଯିଏ ମୋତେ ବିଶେଷ ସ୍ନେହ ଚକ୍ଷୁରେ ଦେଖୁଥିଲେ

ସେ ବି ମୋର ବଡ ବାପା ନରହରି ଦାଶ ତାଂକର ବି ମୃତ୍ୟୁ ୧୯୨୭ ସାଲରେ ହୋଇ ଗଲା । ପିତାମହଙ୍କ ମୃତ୍ୟୁ ମୋର କୈଶୋର ଅବସ୍ଥାରେ ଘଟିଥିଲା । ସର୍ବ ଶେଷରେ ମୁ ଓ ମୋର ପିତାମହୀ ଯାହା ନିଜ ହିସାବରେ ପରିବାରରେ ଥାଉଁ ।

## ଦୁଃସ୍ଥିତି କାଳ

ମୋର ୧ମା ସ୍ତ୍ରୀ କଥା ଆଗରୁ ଲେଖି ସାରିଛି । ୨ୟା ପତ୍ନୀ ଆସିବା ପରେ ସନ୍ତାନ ସନ୍ତତି ଜନ୍ମ ହେବାରେ ଲାଗିଲେ । ଦ୍ୱିତୀୟ ମହାସମର ଚାଲି ଥିବାରୁ ଜିନିସପତ୍ରର ଅଭାବ, ତା ସାଙ୍ଗକୁ ଆକାଶଛୁଆଁ ଦରଦାମ ବୃଦ୍ଧି ହେତୁ ପରିବାରରେ ଅନାଟନ ଦେଖାଦେଲା । ଏହି ପରିସ୍ଥିତିରେ ପଡ଼ ମୋତେ ବଡ କଷ୍ଟକର ଜୀବନ ଯାପନ କରିବାକୁ ପଡ଼ିଲା ।

ପୁଷ୍ଟିକର ଖାଦ୍ୟର ଅଭାବ ଯୋଗୁଁ ମୋତେ ଶ୍ୱାସରୋଗ ଆକ୍ରମଣ କଲା । ସାତବର୍ଷ ପର୍ଯ୍ୟନ୍ତ ମୁ ଏହି ଦାରୁଣ ରୋଗର ଶିକାର ହୋଇ ପଡ଼ିଲି । ଅର୍ଥାଭାବ ଯୋଗୁଁ ଉପଯୁକ୍ତ ଚିକିତ୍ସା କରି ପାରୁ ନ ଥାଏ । ମୋତେ କବିରାଜୀ ବିଦ୍ୟା ଭଲ ଭାବରେ ଜଣାଥାଏ । ଦିନ ଦିନ ଧରି ରୋଗର ଯନ୍ତ୍ରଣା ହେତୁ ମୁ ଯେତେବେଳେ ରାତିରେ ଆଉ ଶୋଇ ପାରିଲି ନାହିଁ ସେତେବେଳେ ଭାବିନେଲି ଯେ ମୋର ମୃତ୍ୟୁ ଏଥର ସୁନିଶ୍ଚିତ । ଏଲୋପାଥିକ ଚିକିତ୍ସା କରିବାର କୌଣସି ସୁବିଧା ନ ଥାଏ ।

ବହୁ ଚିନ୍ତା ପରେ ମୁ ସ୍ଥିର କଲି ଯେ ରୋଗର ପ୍ରଶମନ ପାଇଁ ଅମୃତ ପ୍ରାଶ ଘୃତ ତିଆରି କରିବି । ଅଳ୍ପ ଭାଗ ମାପରେ ଔଷଧଟି ତିଆରି କଲେ ସେତେବେଳେ ନ୍ୟୂନତଃ ଦେଢଶହ ଟଙ୍କା ଖର୍ଚ୍ଚ ହେବ । ବହୁ କଷ୍ଟରେ ଶହେ କୋଡ଼ିଏ ଯାଏ ଟଙ୍କା ଯୋଗାଡ ହେଲା । ଅବଶିଷ୍ଟ ତିରିଶ ଟଙ୍କା ପାଇଁ ମୋତେ ଚିନ୍ତା କରିବାକୁ ପଡ଼ିଲା । ତିରିଶଗୋଟି ଟଙ୍କା ଧାର ସୂତ୍ରରେ ଦେବାପାଇଁ ମୋର ଜନୈକ ଘନିଷ୍ଠ ଆତ୍ମୀୟସ୍ୱଜନଂକ ପାଖକୁ ପତ୍ରଦେଲି । ଭଦ୍ରଲୋକ ସେତେବେଳେ ଅନ୍ୟତ୍ର ଅବସ୍ଥାନ କରୁଥାନ୍ତି । ଅବସ୍ଥାପନ୍ନ । ସେ ମୋର ଚିଠି ପାଇ ନୀରବ ରହିଲେ । ସେହି ସମୟ ଥିଲା ମୋ ପକ୍ଷେ ଅତି ସଂକଟାପନ୍ନ । ଅବସ୍ଥାଚକ୍ରରେ ପଡ଼ ପୁନରାୟ ତାଂକ ପାଖକୁ ଚିଠିଟାଏ ଦେଲି । ଏଥର ଚିଠିର ଶୀର୍ଷକ ଦେଲି "ଆଉ ଅଛି କେତେ ରାତିରେ ଭରତ" । ମୁ ସେତେବେଳେ ସ୍ପଷ୍ଟ ଜାଣି ପାରୁଥାଏ

ଯେ ମୋର ଜୀବନ ଦୀପ କ୍ରମଶଃ ଲିଭି ଲିଭି ଆସୁଛି । ଚିଠି ପାଇ ଉଦ୍ରଲୋକ ସେଥର ବି ନିଷ୍ଠୁର ଭବେ ଚୁପ ରହିଗଲେ ।

ଅନନ୍ୟୋପାୟ ହୋଇ ତାପରେ ଘରେ ଥିବା କେତେଖଣ୍ଡ ବାସନ ବିକ୍ରୟ କରିଦେଇ ଉକ୍ତ ଟଂକା ଯୋଗାଡ କଲି । ଔଷଧ ତିଆରି ହେବାକୁ ପୂର୍ଣ୍ଣ-ମାସଟାଏ ଲାଗିଗଲା । ତାକୁ ଖାଇ ମୁ ପୂର୍ଣ୍ଣରୂପେ ଆରୋଗ୍ୟ ଲାଭ କଲି । ତଦବଧି ମୋତେ ଆଉ ଶ୍ୱାସରୋଗ କେବେ ମଧ୍ୟ ଆକ୍ରମଣ କରିନାହିଁ ।

ଆଉଥରେ ମୁ ସମ୍ପୂର୍ଣ୍ଣ ମୃତ୍ୟୁମୁଖରୁ ବର୍ଞ୍ଚି ଯାଇଥିଲି । ମୁ ସଂକ୍ରୀଡା ଗ୍ରାମରେ ଶିକ୍ଷକତା କରୁଥିବା ବେଳେ ଉକ୍ତ ଘଟଣାଟି ଘଟିଥିଲା । ସେତେବେଳେ ମୁ ଜଣେ ବୈଦ୍ୟଙ୍କ ଘରେ ବସାକରି ରହିଥାଏଁ । ସକାଳୁ ଗାଧୋଇ ଗ୍ଧ, ଜଳଖିଆ ଖାଇ ମୁ ସ୍କୁଲକୁ ବାହାରିଲି । ଶୀତଦିନ । ମୋତେ ଅଳ୍ପ ଅଳ୍ପ କାଶ ହେଉଥାଏ । କବିରାଜେ କାଶରୋଗ ପାଇଁ ଏକ ନୂଆ ଔଷଧ ତିଆରି କରିଥାନ୍ତି । ଔଷଧର ଗୁଣ ପରୀକ୍ଷା ପାଇଁ ସେ ପ୍ରଥମେ ମୋ ଦେହରେ ତାକୁ ପରୀକ୍ଷା କରିବାକୁ ଯାଇ ସେହି ଔଷଧରୁ ୬ଟି ବଟିକା ମୂଳାମର୍ଞ୍ଜି ପରି ମୋତେ ଖାଇବାକୁ ଦେଲେ । ମୁ ମନା କରୁଥିଲି । ମୋର କାଶ ପାଇଁ ଔଷଧ ଖାଇବା ଦରକାର ପଡେନା । ମୁ ଔଷଧ ଖାଇବି ନାହିଁ । ମୋତେ ସେ ବାଧ୍ୟ କରି ଖୁଆଇଲେ । ଖାଇଦେଲି । ସ୍କୁଲକୁ ବି ଚାଲିଗଲି । ସ୍କୁଲରେ ପହଞ୍ଚି ପ୍ରାୟ ଅଧଘଣ୍ଟାଏ ସମୟ ଯାଇଛି ତାପରେ ମୁ ଦେଖିଲି ମୋର ଆଖିକି ସବୁ ଜିନିଷ ଝାପ୍ସା ଝାପ୍ସା ପରି ଦେଖା ଯାଉଛି । ମୁଣ୍ଡ ବୁଲାଇ ହେଉଛି । ତାପରେ ମୁ ଉପସ୍ଥିତ ଶିକ୍ଷକଗଣଙ୍କୁ ସବୁକଥା କହିଲି । ମୋର ଅବସ୍ଥା ଦେଖି ଶିକ୍ଷକ ଓ ଛାତ୍ର ଛାତ୍ରୀଗଣ ରୁଷ୍ଟ ହୋଇଗଲେ । ଅନନ୍ତରାମ ବିଶୀ ନାମରେ ଜଣେ ଶିକ୍ଷକ ତାଂକ ଘରକୁ ଯାଇ କଣ ଗୋଟେ ଔଷଧ ଆଣି ମୋତେ ଖୁଆଇ ଦେଲେ । ଫଳରେ ମୁ ଯାହା ଖାଇଥିଲି ସବୁତକ ବାନ୍ତି ହୋଇ-ଗଲା ତଥାପି ମୋତେ ସବୁଆଡ ଅନ୍ଧାର ଦିଶୁଥାଏ । ବସାକୁ କୌଣସିମତେ ଆସି ଖଟରେ ଶୋଇ ପଡିଲି । କବିରାଜ ଘରେ ଥାଆନ୍ତି । ତାଂକ ଆଗେ ସବୁ କଥା ଇତସ୍ତତ କରି କହିଦେଲି । ତାପରେ ମୋର ଚେତା ବୁଡିଗଲା । ଦୀର୍ଘ ୨୪ ଘଣ୍ଟା ପରେ ମୋର ଚେତା ତା ଆର ଦିନ ସକାଳୁ ଫେରିଥିଲା ।

ଇତ୍ୟବସରରେ ସେହି କବିରାଜ ଏବଂ ତାଂକର ପିତା ମୁ ମରିଗଲେ ଚଞ୍ଚଳ ମୋର ମୃତ ଶରୀରକୁ କିପରି ପୋଡାଇ ଦେବେ ତାରି ବ୍ୟବସ୍ଥାରେ କାଠ ଆଦି ଯୋଗାଡ କରିବାରେ ଲାଗି ପଡ଼ଥାନ୍ତି । କାରଣ କେସ୍ଟି ଯେପରି ପୋଲିସ କାନକୁ ନ ଯିବ ସେଥିପାଇଁ ପିତା ପୁତ୍ର ଦିହେ ଯାକ ତହିର ପ୍ରତିକାର କରିଦେବା

ଅଭିପ୍ରାୟରେ ବିଶେଷ ଆଶଙ୍କିତ ହୋଇ ତାହା କରୁଥାନ୍ତି । ଏହି କଥା ପରେ ସେମାନେ ମୋତେ କହିଲେ । ନଚେତ୍ ତାହା ଜାଣିବା ମୋ ପକ୍ଷେ ସମ୍ଭବ ନ ଥିଲା ।

କବିରାଜ ମୋର ଚେତା କିପରି ଫେରିବ ତାରି ଚିନ୍ତାରେ ଥାଇ ତାଙ୍କର ଉଦ୍ୟମ ଚଳାଇ ଥିଲେ ବୋଲି ପରେ ଶୁଣିଲି । ମୋର ଚେତନା ଫେରିବାରେ ତାଙ୍କରି ଚେଷ୍ଟା କାର୍ଯ୍ୟକାରୀ ହୋଇଥିଲା ନା ତାହା ସ୍ୱାଭାବିକ ଢଙ୍ଗରେ ଘଟିଥିଲା ତାହା କୁହାଯାଇ ପାରେନା ।

ମୁଁ ସୁସ୍ଥ ହେଲି । ଦିନାକେତେ ଗଡ଼ିଗଲା । ଦିନେ ମୁଁ ତାଙ୍କର ସେହି ଔଷଧରୁ ଗୋଟା କେତେ ଔଷଧ ବଟିକା କବିରାଜଙ୍କ ଠାରୁ ମାଗିଆଣି ତାକୁ ଭାତ ସହିତ ମିଶାଇ କୁକୁଡ଼ା ଆଉ କୁଆ ମାନଙ୍କୁ ଖାଇବାକୁ ଦେଇଥିଲି । କବିରାଜ ମଧ୍ୟ ଏଥିପାଇଁ ମୋତେ ସହଯୋଗ କରୁଥାନ୍ତି । ଦେଖିଲୁ ଅଳ୍ପ ସମୟ ମଧ୍ୟରେ ୩ ଗୋଟି କୁଆ ଓ ଗୋଟିଏ କୁକୁଡ଼ା ଉକ୍ତ ଔଷଧ ମିଶା ଭାତ ଖାଇ କିଲବିଲି କିଲବିଲି କରି ମରି ଯାଇଥିଲେ ।

ମୁଁ ଯେ ସେ ଦିନ ବାନ୍ତ କରି ଦେଇଥିଲି ତାହାହିଁ ମୋତେ ମୃତ୍ୟୁ ମୁଖରୁ ବଞ୍ଚାଇ ଦେଇଥିଲା । ସେଥିପାଇଁ ଅନନ୍ତ ରାମ ବିଶି, ଶିକ୍ଷକଙ୍କ ନିକଟରେ ମୁଁ କୃତଜ୍ଞ । ସେ ମରିଗଲେଣି ସତ । କିନ୍ତୁ ସ୍ମୃତି ରହିଛି । ତା ଯିବ କୁଆଡେ । କବି-ରାଜ ତାପରେ ସେହି ସମସ୍ତ ଔଷଧ ଆଣି ମୁଁ ରୋଷେଇ କରୁଥିବା ଚୁଲିରେ ପକାଇ ଦେଇ ପୋଡ଼ି ଦେଇଥିଲେ ।

ଆଉ ଏକ ଘଟଣା । ମୁଁ ସେତେବେଳେ ବରଗଡ଼ ଟ୍ରେନିଂ ସ୍କୁଲରେ ତାଲିମ ପାଉଥାଏଁ । ବରଗଡ଼ର ପଶ୍ଚିମ ପଟେ ଏକ ବଡ଼ ନଦୀ 'ଜିରା' ବହି ଯାଇଅଛି । ଗାଡ଼ ମୋଟର, ମଣିଷ ଯିବା ଆସିବା କରିବା ପାଇଁ ଉକ୍ତ ନଈରେ ୧୯୨୪ ଖ୍ରୀ:ରୁ ଏକ ଲୌହ ନିର୍ମିତ ସେତୁ ନିର୍ମାଣ କରା ଯାଇଅଛି । ଉକ୍ତ ସେତୁର ଖୁଣ୍ଟ ଗୁଡ଼ିକ କେବଳ ଲୁହାରେ ନର୍ମିତ । ନଈଟା ଓସାରିଆ । ବର୍ଷା ଦିନ । ସେହି ବର୍ଷ ନଈ ବଢ଼ି ପ୍ରବଳ ଭାବେ ହୋଇଥିଲା । ୨।୩ ଦିନ ଧରି ବଢ଼ି ପାଣି ନଈରେ ରହି ଯାଇ ଥିଲା । ଆମେ ଦଳେ ଗୁରୁ ଛାତ୍ର ନଈବଢ଼ି ଦେଖିଯିବା ପାଇଁ ଛୁଟି ମାଗି ଦେଖିଗଲୁ ।

ଆମେ ଯିବା ବେଳକୁ ବହୁ ଲୋକ ପୋଲ ଉପରେ ଠିଆ ହୋଇ ନଈ-ବଢ଼ି ଦୃଶ୍ୟ ଦେଖୁ ଥାଆନ୍ତି । ବଢ଼ି ପାଣି ପୋଲ ଉପରକୁ ହାତେ ଉଚ୍ଚ ଛାଡ଼ିଥାଏ । ମୁଁ ଭେଡେନ ଥାନାର ବରଗାଁ ସ୍କୁଲରେ ଶିକ୍ଷକ ଥିବାବେଳେ ସେହି ଗାଁର ଅତି ନିକଟରେ ବହି ଯାଉଥିବା ଏହି ଜିରା ନଈରେ ନଈବଢ଼ି ବେଳେ ପହଁରା କାମ ଶିଖିଥାଏ । ଏଥର ବଢ଼ି ହେବା ଦେଖି ପହଁରିବାକୁ ମୋର ଇଚ୍ଛା ହେଲା । ନଈର

ବଢ଼ ପାଣି ଦେଖି ଆଉ ସମ୍ଭରଣ କରି ନ ପାରି ପୋଲର ଏ ପଟରୁ ଆରମ୍ଭି ୧୪ ନମ୍ବର ଫାଙ୍କରେ ପୋଲ ଉପରୁ ଡେଇଁ ପଡ଼ ପୋଲର ଆରପଟେ ବାହାରି ପଡ଼ିଲି ।

ବେଳୁ ବେଳ ନଈ ବଢ଼ିବାରେ ଲାଗିଥାଏ । କିଛି ଦୂର ସ୍ରୋତର ଅନୁ-କୂଳ ପଥେ ମୁଁ ଯାଉଛି ଉପର ପଟୁ ହାତେ ଉଚ୍ଚରେ ମୋର ପଛପଟୁ ବଢ଼ ପାଣି ମାଡ଼ ଆସି ମୋତେ ସ୍ରୋତର ଏକ ଭଉଁରୀରେ ପକାଇ ଦେଲା । ମୁଁ ପାଣିରେ ବୁଡ଼ ଗଲି । କେତେକ ସମୟ ପରେ ମୁଁ ମୁଣ୍ଡ ଟେକି ପାଣି ଉପରେ ଭସିବାକୁ ଲାଗିଲି । ସେତେବେଳକୁ ମୋର ଶକ୍ତି ହ୍ରାସ ପାଇ ଯାଇଥାଏ । କୌଶଳ କ୍ରମେ କୌଣସି ମତେ ପୋଲ ଠାରୁ ପ୍ରାୟ ୧ ମାଇଲ ଦୂରେ ଥିବା ଏକ ପଠାରେ ଯାଇ ଲାଗିଲି । ମୋର ସାଙ୍ଗ ଟୁରୁ ଛାତ୍ର ମାନେ କିନ୍ତୁ ମୋତେ ଦେଖି ଦେଖି ନଈ କୂଳେ କୂଳେ ଯାଉଥାନ୍ତି । ସବା ଶେଷରେ ମୁଁ ସେମାନଙ୍କ ସହିତ ମିଶିଥିଲି । ମୋର ଶକ୍ତି କ୍ଷୀଣ ହୋଇ ଯାଇଥାଏ । କିଛି ସମୟ ବିଶ୍ରାମ କରି ଏବଂ କିଛି ଲଘୁ ଖାଦ୍ୟ ମୁଢ଼ି ଖାଇବା ପରେ ଆମେ ହଷ୍ଟେଲକୁ ସେ ଦିନ ଫେରି ଆସିଥିଲୁ ।

କାହାକୁ କିଛି ନ କହି ରେଳର ମାଆ ଗୁଣ ଘୁମରି କାଇଲା ପରି ଚୁପଚାପ୍ ରହିଗଲୁ । କାରଣ ନଈବଢ଼ି ଦୃଶ୍ୟ ଦେଖି ଯିବାକୁ ଆମ୍ଭ ମାନଙ୍କୁ ଅନୁମତି ମିଳି ଥିଲା— ନଈ ପହଁରି ପାଇଁ ନୁହେଁ ।

ଭଲୁ ହାବୁଡ଼େ ପଡ଼ିଥିବା କଥା ଆଗରୁ ଲେଖି ସାରିଛି । ଘୋଷରେ ଥିବା ବେଳେ ଭଲୁ କିମ୍ବା ଚିତାବାଘ ପ୍ରତି ମୋର ମୋଟେ ଭୟ ନ ଥିଲା । ସେ ଥର ଯାହା ଘଟିଗଲା ତାହା ଥିଲା ସମ୍ପୂର୍ଣ୍ଣ ଆକସ୍ମିକ ଏବଂ ମୁଁ ବି ଅପ୍ରସ୍ତୁତ ଥିଲି ।

ଆଗରୁ କହିଛି ମୁଁ ବାଘ ଶିକାରକୁ ଜମିଦାରଙ୍କ ସହିତ ଅନେକ ଥର ଯାଇଛି । ବାଘ କହିଲେ କେବଳ ମହାବଳ ବାଘକୁ ହିଁ ବୁଝାଯିବ ।

ଥରକର କଥା । ଘୋଷ ସ୍କୁଲରୁ ଛୁଟି ପାଇ ସକାଳ ଓଳି ୧୧ ଟାରେ ମୁଁ ମୋ ବସାରେ ଖେଳେଇ କରୁଛି; ଘୋଷ ଜମିଦାର ସାଇକେଲରେ ବନ୍ଧୁକ ଧରି ଆସି ମୋ ବସାର ଦ୍ୱାର ଦେଶରେ ଠିଆ ହୋଇ ସାଇକେଲ ଘଣ୍ଟି ବାରମ୍ବାର ବଜାଇଲେ । ଘଣ୍ଟି ଶବ୍ଦ ଶୁଣି ମୁଁ ଜାଣିଗଲି ତାହା ଜମିଦାର ବଜାଉଛନ୍ତି । ରନ୍ଧା ଛାଡ଼ି ଦେଇ କବାଟ ଫିଟାଇ ଦେଖେ ତ ସ୍ୱୟଂ ଜମିଦାର ଆସି ଦ୍ୱାର ମୁହଁରେ ଠିଆ ହୋଇ ମୋତେ ଡାକୁ ଅଛନ୍ତି ।

ମୋତେ ଦେଖି ସେ ହଠାତ୍ କହିଲେ ଶୀଘ୍ର ଆସ ବାଘ ମାରିଯିବା । ମୁଁ କହିଲି କେତେ ଦୂର ? ସେ କହିଲେ— ତିଳାଇମାଳ । ତିଳେଇମାଳର

ଚୌକୀଦାରକୁ ବାଘ ଆକ୍ରମଣ କରି ତାର ଅନ୍ତବୁଜୁଳା (ପୁଟା) ବାହାର କରି ଦେଇଛି । ଏହା ଶୁଣି ମୁ ଧାଙ୍ଗେ ଧାଙ୍ଗେ ବାହାରି ପଡ଼ିଲି । ତାଂକର ସାଇକେଲ ପଛପଟେ ବସି ନିର୍ଦ୍ଦିଷ୍ଟ ସ୍ଥଳରେ ପହଞ୍ଚି ଗଲୁ । ଆମେ ଯାଇ ଦେଖିଲୁ ଗୁଡାଏ ଲୋକ ଶବ ଚାରିପଟେ ଜମା ହୋଇଥାନ୍ତି ।

ଜମିଦାର ଲୋକମାନଙ୍କୁ ଦେଖି କହିଲେ ଗାଁର ଯେତେ ଲୋକ ଅଛ ଠେଙ୍ଗା ବାଡ଼ ଧରି ଆସ ହାକା କରିଯିବା ।

ଆମେ ଏହି ଗଛ ଉପରେ ପ୍ରସ୍ତୁତ ହୋଇ ରହିଛୁଁ କହି ଗୋଟିଏ ଛୋଟ ଗଛ ଉପରେ ସେ ଚଢ଼ିଗଲେ । ମୋତେ ଉକ୍ତ ଗଛଠାରୁ ୧୦/୧୫ ହାତ ଦୂରରେ ଥିବା ଆଉ ଏକ ଛୋଟ ମହୁଲ ଗଛରେ ଚଢ଼ି ଯିବାକୁ ନିର୍ଦ୍ଦେଶ ଦେଲେ ।

୩୦/୪୦ ଜଣ ଲୋକ ହୋ, ହା, ଧାର୍, ଧୂର୍ କରି ଠେଙ୍ଗା ବାଡ଼ ସାହାଯ୍ୟରେ ବଣର ବୁଦା ମାନଂକରେ ବାଡଆ ବାଡେଇ କରି ହାକା କାମରେ ଲାଗିଗଲେ ।

ସେମାନଂକ ହୋ ହଲ୍ଲା ଶବ୍ଦ ଶୁଣି ବାଘ ଥରେ ବାହାରି ପଡ଼ି ଦ୍ରୁତ ଗତିରେ ଆଉ ଗୋଟିଏ ପଟେ ପଳାଇ ଗଲା । ଜମିଦାର ବାଘକୁ ଦେଖିଲେ । ରେଞ୍ଜରେ ନ ଥିବାରୁ ଗୁଳି କଲେ ନାହିଁ । ପ୍ରାୟ ଅଧଘଣ୍ଟା ସମୟ ବିତିଗଲା । ଇତ୍ୟବସରରେ ବାଘ ପୁଣିଥରେ ଜଙ୍ଗଲ ଭିତରୁ ବାହାରି ପଡ଼ି ଆସି ଆସି ମୁ ବସିଥିବା ଗଛତଳେ ଠିଆ ହୋଇ ଉପରକୁ ଅନାଇଲା ।

ଜଙ୍ଗଲରେ ମହାବଳ ବାଘ ମୁ କେବେ ଦେଖି ନ ଥିଲି । ବାଘ ଦେଖିବା ହେଲା ମୋର ସେହିଥର ପ୍ରଥମ । ପୁଣି ବାଘ ମୁ ବସିଥିବା ଗଛତଳେ ଥିବା ଦେଖି ମୋର ରକ୍ତ ପାଣି ହୋଇଗଲା । ଦେହରୁ ଗମ୍ ଗମ୍ ଝାଳ ବାହାରି ପଡ଼ିଲା । ମୁ ମୋର ପିନ୍ଧିଥିବା ଲୁଗାରେ ପରିସ୍ରା କରି ପକାଇଲି । ଦେହ ବରଡା ପତ୍ର ପରି ଥରିଲା । ମୁ ଧରିଥିବା ବନ୍ଧୁକଟି ହାତ ଥରୁଥିବା ଯୋଗୁଁ ଗୁଳି ଫୁଟିଗଲା ।

ଗୁଳିର ଶବ୍ଦ ଶୁଣି ବାଘ ବଣ ଭିତରକୁ ପଳାଇ ଗଲା । ଜମିଦାର ଗଛରୁ ଓହ୍ଲାଇ ପଡ଼ି ମୋ ନିକଟକୁ ଆସି କହିଲେ ଗୁଳି ବାଜିଲା କି ? ମୁ ଗଛରୁ ଓହ୍ଲାଇ ପଡ଼ି ମୋର ଦୟନୀୟ ଅବସ୍ଥା ତାଂକ ଆଗେ ବ୍ୟକ୍ତ କଲି । ମୋର ଅବସ୍ଥା ଦେଖି ସେ ମୋତେ ସାନ୍ତ୍ୱନା ଦେଲେ ; ତାଂକ ପାଖେ ପାଖେ ରହିବାକୁ କହିଲେ । ଲୋକେ ତ ସେ ପଟେ ତାଂକର କାମ କରୁଥାନ୍ତି । ଫଳରେ ବାଘ ଏଥର ପୁଣି ବାହାରି ପଡ଼ିଲା । ପ୍ରାୟ ୩୦/୪୦ ହାତ ଦୂରରୁ ଧୀର ଚାଲିରେ ସେ ଆସୁଥିବାର ଆମେ ଉଭୟେ ଦେଖି ପାରିଲୁ । ବାଘକୁ ଦେଖି ମୁ ପାଖ ଗଛକୁ ଉଠିଗଲି ।

ଜମିଦାର କିନ୍ତୁ ବାଘକୁ ଦେଖି ତଳେ ଠିଆହୋଇ ରହିଥାନ୍ତି । ମିନିଟେ କି ୨ ମିନିଟ ଏପରି ଯାଇଛି ଜମିଦାର ବାଘକୁ ଦେଖି ହଲ୍‌ଟ କହି ଦେଇ ସାଙ୍ଗେ ସାଙ୍ଗେ ଗୁଳି ଚଳାଇଁ ଦେଲେ । ଗୁଳି ଚଳାଇ ଦେବା ସଙ୍ଗେ ସଙ୍ଗେ ସେ ଠିଆ ହୋଇଥିବା ସ୍ଥାନରୁ ଡାହାଣ ପଟେ ୧୨/୧୪ ହାତ ଦୂରକୁ ଯାଇ ଠିଆ ହୋଇ ରହିଲେ । ନିର୍ନିମେଷ ନୟନରେ ବାଘକୁ କିନ୍ତୁ ଅନାଇ ରହିଥାନ୍ତି । ମୁଁ ଗଛ ଉପରେ ଥାଇ ଏସବୁ ଦୃଶ୍ୟ ଦେଖୁଥାଏ । ପ୍ରାଣ ଆତଙ୍କରେ ସିହିରି ଉଠୁଥାଏ ।

ଗୁଳି ଯାଇ ବାଘ ଦେହରେ ମୁଣ୍ଡ ପାଖକୁ ଲଗି କାନମୁଣ୍ଡାରେ ବସିଲା । ବାଘ ଗୁଳି ଖାଇ ତାପରେ ଏକା କୁଦାକେ ଡ଼ଆଁ ମାରି ଜମିଦାର ଆଗେ ଯେଉଁଠି ଥାଇ ଗୁଳି କରିଥିଲେ ସେହିଠାରେ ଆସି ପଡ଼ିଲା । ବାଘ ପଡ଼ି ଯିବାର ଦେଖି ଜମିଦାର ସଙ୍ଗେ ସଙ୍ଗେ ଆଉ ୨ଟି ଗୁଳି ପର ପର ଚଳାଇ ଦେଲେ । ବାଘଟି ମରିଗଲା ।

ବାଘ ମରିଯିବା ଜାଣି ତାପରେ ମୁଁ ଗଛ ଉପରୁ ଓହ୍ଲାଇ ଆସିଥିଲି । ବାଘର ନିଶ, ଓଠର ମାଂସ ସଂଗ୍ରହ କରିବାରେ ଲଗି ପଡ଼ିଥିଲି । ଏହିପରି ଭବେ ସେଥର ବାଘ ଶିକାରକୁ ଯାଇ ମୋର ଜୀବନ ବିପନ୍ନ ହୋଇ ପଡ଼ିଥିଲା ।

ଆଉ ଏକ ଦିନକର ବିଷୟ । ରେମଣ୍ଡା ହାଇସ୍କୁଲ ହେବାର ଚାରି ବର୍ଷ ହୋଇ ସାରିଥାଏ । ମୁଁ ସେତେବେଳେ ହାଇସ୍କୁଲର ଜଏଣ୍ଟ ସେକ୍ରେଟେରୀ ଥାଏ । ସ୍କୁଲ ପ୍ରତିଷ୍ଠା ପାଇଁ ଆମ୍ଭମାନଙ୍କୁ ସବୁବେଳେ ନାନା ବିପଦ ପଥ ଦେଇ ଗତି କରିବାକୁ ପଡୁଥାଏ । ସ୍କୁଲର ବିରୋଧରେ ଦଳେ ଲୋକ ଥାନ୍ତି । ଥରେ ବିରୋଧୀ ଦଳର ଜଣେ ତଥାକଥିତ ଶିକ୍ଷିତ ବ୍ୟକ୍ତି ରାତି ଅଧବେଳେ ଉତ୍ୟକ୍ତ ହୋଇ କହି ପକାଇଲେ କାଲି ଦିନ ୧୧ ଟାରେ ଅମୁକ ବ୍ୟକ୍ତିକୁ ଗ୍ରାମର ଅମୁକ ସ୍ଥାନରେ ହତ୍ୟା କରଯିବ ।

ଘୋଷଣାଟି ଆମ ଘର ପାଖରେ କରିଥିଲେ । ଦୈବାତ୍ ମୁଁ ସେତେ-ବେଳେ ଚେଇଁ ରହିଥାଏଁ । ଶୁଣିଲି । ସକାଳ ପାହିଲା । ଠିକ୍ ନିର୍ଦ୍ଦିଷ୍ଟ ସ୍ଥଳରେ ନିରୂପିତ ସ୍ଥାନରେ ଆମେ ବି ଦଳେ ଲୋକ ଯାଇ ଉପସ୍ଥିତ ହୋଇଗଲୁ । ମୁଁ ସେତେବେଳେ ସେହି ବ୍ୟକ୍ତି କହିଥିବା କଥାକୁ ସେ ସ୍ଥଳେ ବ୍ୟକ୍ତ କରି ତାଙ୍କୁ ଆହ୍ୱାନ କରିଥିଲି । କିନ୍ତୁ ଭଦ୍ରବ୍ୟକ୍ତି ଉତ୍ୟକ୍ତ ହୋଇ କହିଗଲେ ସିନା ଆହବ ସ୍ଥଳକୁ ଆଉ ଆସିଲେ ନାହିଁ ।

ସେ ଦିନ ମୁଁ ଏପରି ପ୍ରସ୍ତୁତ ହୋଇ ଯାଇଥିଲି ଠିକ୍ ରାଜପୁତ୍ ବୀରମାନେ ଯୁଦ୍ଧ କ୍ଷେତ୍ରକୁ ଗଲାପରି ମୋତେ ଜଣା ପଡ଼ୁଥିଲା ଟିକିଏ ବି କୁତ୍ରୀମତା ଭବ ନେଇ

ମୁ ଘରୁ ଯାଇ ନ ଥାଏଁ । ଉପସ୍ଥିତ ହୋଇଥିଲେ ଘଟଣା କି ଆକାର ଧାରଣ କରିଥାନ୍ତା ଏବେ ତାହା କହି କିଛି ଲାଭ ନାହିଁ ।

ଆଉ ଏକ ଘଟଣା । ୧୯୪୯ ସାଲ ଜୁଲାଇ ଅଗଷ୍ଟ ମାସ କଥା । ମୁ ସେତେବେଳେ ବରଗଡରେ ୪୬ ଦିନିଆ ଏକ ଟ୍ରେନିଂ ପାଉଥାଏ । ସେତେବେଳେ ରେମଣ୍ଡାରେ ହଇଜା ଲାଗିଥାଏ ପୁଣି ବରଗଡରେ ମଧ୍ୟ ହଇଜା ଲାଗିଥାଏ ।

ମୁ ଶନିବାର ସନ୍ଧ୍ୟାରେ ରେମଣ୍ଡା ଚାଲି ଆସୁଥାଏ । ରବିବାର ଦିନଟି ଗାଁରେ ରହି ପୁଣି ସୋମବାର ବରଗଡରେ ପହଞ୍ଚି ଯାଉଥାଏ । ରେମଣ୍ଡାରେ ଯେଉଁ ଦୁଃସ୍ଥ ରୋଗୀମାନେ ମରି ଯାଉଥାନ୍ତି ତାଙ୍କୁ ବୋହିବାକାମ ଆମେ କେତେ-ଜଣ ୨।୩ ଥର କରିଥିଲୁ । ସ୍କୁଲ ସେକ୍ରେଟେରୀ ମନ୍‌ବୋଧ ସାହୁ, ଜଏଣ୍ଟ ସେକ୍ରେ-ଟେରୀ ରୂପେ ମୁ, ସଭପତି ମଙ୍ଗଳୁ ପଧାନ ଏବଂ ପରମେଶ୍ୱର ସରଫ ନାମକ ଜଣେ କଂଗ୍ରେସ କର୍ମୀ ।

ଏପଟେ ବରଗଡରେ ମଧ୍ୟ ଆମେ ରହୁଥିବା ହଷ୍ଟେଲରେ ଆମରି ଭିତରୁ ୨ ଜଣ କଲେଜରେ ପଢ଼ ମରି ଯାଇଥାନ୍ତି । ସେମାନଙ୍କର ଶବ ସତ୍କାର କରିବାକୁ ବି ମୁ ଯାଇଥିଲି । ଏପରି ପରିସ୍ଥିତିରେ ମୁ ବରଗଡରେ ଥାଏଁ । ଦିନେ ସକାଳୁ ଝାଡା ଗଲି । ନିର୍ମଳ ଧଳା ପାଣି । ବାର ବାର ଝାଡା ହେଉଥାଏ । କ୍ରମେ ଦୁର୍ବଳତା ଅନୁଭବ କଲି । ହସପିଟାଲକୁ ଯିବାକୁ ବଳ ପାଉ ନ ଥାଏ । ସେତେ-ବେଳେ ଆଜିକାଲି ପରି ବରଗଡରେ ରିକ୍‌ସାର ପ୍ରଚଳନ ନ ଥାଏ । ଆମ୍ଭେ ମାନେ ବରଗଡ ଟର୍ଡ ହାଇସ୍କୁଲରେ ଟ୍ରେନିଂ ପାଉଥାଉଁ । ହଷ୍ଟେଲରୁ ସ୍କୁଲକୁ ଗଲି । ଅର୍ଗାନାଇଜର ବିଶ୍ୱନାଥ ଦାସଙ୍କୁ କହିଲି । ସେ ମୋତେ କିଛି ସାହାଯ୍ୟ କଲେ ନାହିଁ । ଓଲଟି ସେ ମୋର ଅବସ୍ଥା ଦେଖି ଡରିଗଲେ । କାରଣ ଆଗରୁ ଆମ ଭିତରୁ ୨ ଜଣ ଶିକ୍ଷକ ହଇଜାରେ ମରି ଯାଇ ସାରିଥାନ୍ତି । ମୋ ସଙ୍ଗେ ହସପିଟାଲ ଯାଏ ଯିବାକୁ ସବୁ ଶିକ୍ଷକଙ୍କୁ ଅନୁରୋଧ କଲି । କେହି ସାହସ କଲେ ନାହିଁ । ନବୀନ କିଶୋର ପରିଡା ନାମକ ଜନୈକ ଛାତ୍ର ଶେଷରେ ବାହାରି ମୋ ସଙ୍ଗେ ହସପିଟାଲ ଯାଏ ଗଲେ । ତାଙ୍କ ଘର ପାଣିମୋରା । ହସପିଟାଲରେ ପହଞ୍ଚି ଡାକ୍ତରଙ୍କୁ ମୋ କଥା କହିଲି । ମୋ କଥା ଟିକିଏ ଚଞ୍ଚଳ ବୁଝିବାକୁ ତାଙ୍କୁ ନିବେ-ଦନ କଲି । ମୋ କଥା ଶୁଣି ସେ ଚିହିଙ୍କି ଉଠିଲେ ।

[redacted] । ମୁ ସ୍ପଷ୍ଟ ଜାଣି ପାରୁଥିଲି ଆଉ କିଛି ସମୟ ଗଲେ ମୋର ମଧ୍ୟ ମୃତ୍ୟୁ ଅନିବାର୍ଯ୍ୟ ହୋଇ ପଡ଼ବ ।

ଡାକ୍ତରଙ୍କ ଠାରୁ ବିରକ୍ତି ସୂଚକ କଥା ଶୁଣି ତାପରେ ଗଲି କମ୍ପାଉଣ୍ଡର ଯଦୁମଣି ତ୍ରିପାଠୀଙ୍କ ନିକଟକୁ । ତାଙ୍କୁ ସମସ୍ତ କଥା କହିଲି । ସେତେବେଳେ ମୁ ସୁନାମୁଦିଟାଏ ପିନ୍ଧଥାଏଁ । ତାକୁ ଫିଟାଇ କରି ମୁଦିଟି ତାଙ୍କୁ ଦେଲି । ତା ସହିତ ମୋ ପାଖେ ଥିବା ଟ ୪ ବି ତାଙ୍କୁ ଦେଇ ବିନିମୟରେ ମୋତେ ଅର୍ଫିମ ଟିଙ୍କଚର ଔଷଧ ପାନେ ଦେବାକୁ କହିଲି ।

ମୋର ବିକଳ ଭବ ଦେଖି ସେ କଣ ବିଚ୍ଛିଲେ କେଜାଣି ତାପରେ ଔଷଧ ପାନେ ଗୋଟିଏ ସରୁ ଲମ୍ବା ନଳୀରେ ପ୍ରାୟ ଏକ ତୋଳା ଯାଏ ହେବ ବାହାର କରି ମୋର ପାଟିରେ ଅଜାଡ଼ ଦେଲେ । ଟଙ୍କା ଏବଂ ସୁନା ମୁଦି ନେଲେ ନାହିଁ । ମୁ କହିଲି ଏଥିକୁ ନ ନେଲେ ମୁ ଭବିବି କୌଣସି ଔଷଧ ପାନେ ଦେଇ ଦେଇ ମୋତେ ଠକି ଦେଲେ ।

ପ୍ରତ୍ୟୁତ୍ତରରେ ସେ କହିଲେ ମୁ ଠକି ନାହିଁ । ଯାଅ ଖୁବ୍ ଶୋଇବ । ରୋଗ ଛାଡଗଲା ବୋଲି ମନେ କର । ଆରମ ହେଲେ ତ ଗଲା । କିନ୍ତୁ ଡାକ୍ତରଙ୍କୁ କହିବ ନାହିଁ ।

ତାଙ୍କ କଥା ଶୁଣି ମୁ ଖୁସି ହେଲି । ହସପିଟାଲରେ ପଡଥିବା ବେଞ୍ଚରେ ପ୍ରାୟ ଘଣ୍ଟାଏ ଯାଏ ବସି ରହିଲି । ମୁର୍ହୁ ମୁର୍ହୁଃ ଯେଉଁ ଝାଡା ହେଉଥିଲା ତାହା ବନ୍ଦ ହୋଇଗଲା ।

ଦୀର୍ଘ ସମୟ ଧରି ମୋତେ ଝାଡା ନ ହେବାରୁ ମୁ ସ୍ୱସ୍ତିର ନିଃଶ୍ୱାସ ବିମାଇଲି । ନବୀନ ବାବୁ ମୋ ସଙ୍ଗେ ବସିଥାଆନ୍ତି । ପ୍ରାୟ ଘଣ୍ଟାକ ପରେ ଡାକ୍ତର ବାବୁ ମୋତେ ଡକାଇ ପଠାଇଲେ । ତା ପୂର୍ବରୁ ସେ କହିଥାନ୍ତି ବାରଣ୍ଡାରେ ବସି ଥାଅ ମୁ ପରେ ଡାକିବି ।

ମୁ ତାଙ୍କ ଡାକରା ପାଇ ଗଲି ।

ପଚ୍ଛରିଲେ ସେ ମୋତେ-କଣ ହେଉଛି ?

ମୋର ଚର୍ମବେଦନା ହେଉଛି । ଉତ୍ତର ଦେଲି ।

ମୋତେ ବିଦ୍ରୁପ କରୁଛ ?

ମଣିଷ ମାନଙ୍କୁ ବିଦ୍ରୁପ କରଯାଏ । ଆପଣ ତ ମଣିଷ ନୁହନ୍ତି ।

ତେବେ କଣ ମୁ ପଶୁ ? ସେ କହିଲେ ।

ଇତ୍ୟାଦି ବହୁ ଉଚ୍ଚବାଚ ହୋଇ ସେଦିନ ଫେରି ଆସିଥିଲି । ହଷ୍ଟେଲରେ ପହଞ୍ଚି ସଙ୍ଗେ ସଙ୍ଗେ ଶୋଇ ପଡଥିଲି । ଆଠଘଣ୍ଟା ଶୋଇଥିଲା ପରେ ଯେତେବେଳେ ଉଠିଲି ଜାଣିଲି ହଇଜା ଛାଡ଼ ଯାଇଛି ।

ଯଦୁମଣି ତ୍ରିପାଠୀଙ୍କୁ ତା ଆରଦିନ ଶୁକ୍ରବାର ବରଗଡ ହାଟପାଳି, ହାଟରେ ଭେଟି ବହୁ ଜିନିଷ କିଣିକରି ତାଂକ ସଙ୍ଗେ ଆସିଥିବା ଭରିଆ ହାତେ ଦେଇଥିଲି । ଏଥର ସେ ଜିନିଷ ନେବାକୁ ମୋତେ ମନା କରି ନ ଥିଲେ । କରି-ଥିଲେ ବି ମୁଁ ମାନି ନ ଥାନ୍ତି । ସେ ଅବସର ନେବାପରେ ମଧ୍ୟ ମୋ ସହିତ ସଦ୍‌ଭାବ ରଖି ଚଳିଥିଲେ ଏବଂ ମୁଁ ମଧ୍ୟ ତାଙ୍କୁ ମୋର ଜୀବନଦାତା ବୋଲି ସମ୍ମାନ ପ୍ରଦର୍ଶନ କରି ଆସୁଥିଲି ।

ଏହିପରି ଛୋଟ ବଡ ବହୁ ବିପଦଜନକ ପରିସ୍ଥିତିରେ ପଡ଼ି ମୋର ଜୀବନ ସଙ୍କଟାପନ୍ନ ହୋଇ ପଡଥିଲେ ମଧ୍ୟ ପ୍ରତ୍ୟେକ ଥର ମୁଁ ଅଳ୍ପକେ ଅଳ୍ପକେ ବର୍ତ୍ତି ଯାଇଥିଲି ।

× × × × ×

ମଣିଷ ମାତ୍ରକେ ସ୍ୱାର୍ଥର ଦାସ । କିନ୍ତୁ ସ୍ୱାର୍ଥପରତାର ଗୋଟିଏ ସୀମା ଅଛି । ଏହି ସଂସାରରେ ଆମ୍ଭମାନଙ୍କ ମଧ୍ୟରେ ଏପରି କେତେକ ବ୍ୟକ୍ତି ଅଛନ୍ତି ସେମାନଙ୍କ ନିକଟରେ ଯେତେ ପ୍ରକାର ସେବାଭାବ, ତ୍ୟାଗ ଆଦି ଦେଖାଇଲେ ମଧ୍ୟ କେତେକ ମୁହୂର୍ତ୍ତ ହୁଏତ ସେମାନଙ୍କ ମନ ପରିବର୍ତ୍ତିତ ହୋଇ ଯାଇପାରେ ସତ କିନ୍ତୁ ସେହି ମୁହୂର୍ତ୍ତ ଚାଲିଗଲେ ସେମାନେ ନିଜର ସ୍ୱାଭାବିକ ସ୍ଥିତିକୁ ପୁନଃ ପ୍ରତ୍ୟାବର୍ତ୍ତନ କରି ଆସିଥାନ୍ତି ।

ମୋର ସୌଭାଗ୍ୟ ହେଉ ଅଥବା ଦୁର୍ଭାଗ୍ୟ ହେଉ ଏପରି କେତେକ ଆତ୍ମୀୟସ୍ୱଜନ, ବନ୍ଧୁ, ବାନ୍ଧବ ମୋର ଜୁଟି ଯାଇଥିଲେ ଯେଉଁମାନଙ୍କର ମୌଳିକ ମନୋବୃତ୍ତି ହିଁ କେବଳ ଜଘନ୍ୟ ସ୍ୱାର୍ଥପରତାରେ ପରିପୂର୍ଣ୍ଣ ।

ବ୍ୟକ୍ତିଗତ ଜୀବନରେ ମୁଁ ଦେଖି ଆସିଛି ଯେ, ଯେକୌଣସି ଭେଜାଲ ବନ୍ଧୁ ମୋ ନିକଟରେ ତିଷ୍ଠି ରହିପାରି ନାହାନ୍ତି । ଅତି ଆପଣାର ବ୍ୟକ୍ତିମାନେ ପ୍ରଥମେ ପ୍ରଥମେ ନାନା ପ୍ରକାର ସମ୍ମୋହକ କଥାମାନ ବଖାନ କରି ମୋଠାରେ ବନ୍ଧୁତା ରକ୍ଷା କରିବାକୁ ଯାଇ ପରିଣାମରେ ସେମାନଙ୍କର କପଟତା ମୋ ନିକ-ଟରେ ଧରାପଡ଼ ଯାଇଛି । ଆଶ୍ଚର୍ଯ୍ୟକଥା ସେମାନେ ଯେତେ ଉଚ୍ଚ ସ୍ଥାନୀୟ ବ୍ୟକ୍ତି ହୁଅନ୍ତୁ ନା କାହିଁକି ସେମାନଙ୍କ ଗଲତି ଜାଣିପାରି ମୁଁ ସେମାନଙ୍କଠାରୁ ଦୂରେଇ ଯିବାକୁ ଆଦୌ ପଶ୍ଚାଦ୍‌ପଦ ହୋଇନାହିଁ । କାହାକୁ କାହାକୁ ମୁହଁରେ ମୁହଁରେ କହିଦେଇ ସମ୍ପର୍କ ତୁଟାଇ ଦେଇଛି ତ ଆଉ କାହାକୁ ସ୍ଥାନ ତ୍ୟାଗେନ ଦୁର୍ଜ୍ଜନ ନୀତିରେ ସେମାନଙ୍କ ନିକଟରୁ ମୁଁ ଦୂରେଇ ରହିବାକୁ ଚେଷ୍ଟା କରି ଆସିଅଛି । ଏହି ଘଟଣାମାନ ମୋ ଜୀବନରେ ନିତ୍ୟ ସହଚର ରୂପେ ଦେଖା ଦେଇ ଆସିଛି ।

ଏବେ ମଧ୍ୟ ମୁ ସେଥିରୁ ବଞ୍ଚିତ ନୁହେଁ । ପିଲାଟି ଦିନରୁ ସଂସ୍କାର ପ୍ରୟାସୀ । ପରମ୍ପରାକ୍ରମେ ଚଳି ଆସିଥିବା କେତେକ କୁସଂସ୍କାର ବିରୁଦ୍ଧରେ ମୁ ସ୍ୱର ଉତ୍ତୋଳନ କରି ବହୁବାର ଅପଦସ୍ଥ ହୋଇଛି । ତଥାପି ମୁ ମୋର ସେହି ପ୍ରୟାସରୁ କ୍ଷାନ୍ତ ହୋଇନାହିଁ ।

ଏ ପ୍ରସଙ୍ଗରେ ମୋର ଜନୈକ ମିତ୍ର (ମାହାପ୍ରସାଦ) ଙ୍କର କଥା ମନେପଡେ । ତାଙ୍କର ନାମ ସହିତ ମୋର ନାମର ସାମଞ୍ଜସ୍ୟ ହେତୁ ଆମ୍ଭେ ପରସ୍ପର ମାହାପ୍ରସାଦ୍ ବୋଲି ଡକାଡକି ହେଉଁ । ସେ ଜଣେ ନାମକରା ବଂଶର ସନ୍ତାନ । ପିତୃ ଅର୍ଜିତ ଜମି ଆଦି ବେଶ ଥିଲା । କଥାବାର୍ତ୍ତା ଆଦିରେ ଅତି ନିରୀହ, ସରଳ ବ୍ୟକ୍ତି । କିନ୍ତୁ ଜୁଆଖେଳ ପ୍ରତି ତାଙ୍କର ଆଗ୍ରହ ଥାଏ ଅତ୍ୟଧିକ । ସେଥିପାଇଁ ସେ ପ୍ରତିବର୍ଷ ତାଂକ ଖଣ୍ଡିଏ ଲେଖା ଜମି ବିକ୍ରୀ କରି ଦେଉଥାନ୍ତି । ଅବସ୍ଥା କ୍ରମେ ନ୍ୟୂନରୁ ନ୍ୟୂନତର ହେବାକୁ ଲାଗିଲା । ତଥାପି ସେ ତାହା ଛାଡ ପାରୁ ନ ଥାନ୍ତି ।

ତାଂକ କଥା ଭାବି ଦିନେ ମୋର ମନ ତାଂକ ପ୍ରତି ବିଦ୍ରୋହୀ ହୋଇ ପଡଲା । ମୁ ସେଦିନ ସ୍ଥିର କଲି ଆଜି ୟାଙ୍କ ପିଛାରେ ଲାଗି ହୁଏତ ଚିରଦିନ ପାଇଁ ତାଙ୍କୁ ଦ୍ୟୂତକ୍ରୀଡାରୁ ନିବୃତ୍ତ କରାଇ ଦେବି ନଚେତ୍ ଚିରଦିନ ପାଇଁ ତାଙ୍କୁ ତାଂକ ଘରଠାରୁ ଅନ୍ତର କରିଦେଇ ତାଙ୍କ ପରିବାରର ସମସ୍ତ ଭାର ନିଜେ ବହନ କରିବି । ସେଥିପାଇଁ ତାଂକ ପଡାରେ ଥିବା ସମସ୍ତ ବ୍ୟକ୍ତିଙ୍କୁ ଡାକି ଆଣି ଗୋଟେ ବଡ ଧରଣର ସଭ କରାଇଲି ।

ଉକ୍ତ ସଭରେ ବହୁ ଲୋକଙ୍କ ସମ୍ମୁଖରେ ତାପରେ ମୁ ତାଙ୍କୁ ତାଙ୍କର ଜୁଆ ଖେଳିବା କଥା କହି ଦିନୁ ଦିନ ସେ କିପରି ସର୍ବସ୍ୱାନ୍ତ ହୋଇ ବସିଲେଣି ଆଦି କଥା ଗୁଡକ କହି ଚିରଦିନ ପାଇଁ ତାକୁ ଛାଡ ଦେବାକୁ ହେବ ବୋଲି କହିଲି । ତାପରେ ଏହା ମଧ୍ୟ କହିଲି ଯେ ଇୟେ ଜୁଆ ଛାଡଲି ବୋଲି କହିଲେ ମଧ୍ୟ ତହିଁର ପ୍ରାୟଶ୍ଚିତ ସ୍ୱରୂପ ତାଙ୍କୁ ମୁ ୧୦ ଛବୁକ ମାଡ ମଧ୍ୟ ଦେବି କହିଲି ।

ସଭର ସମସ୍ତେ କହିଲେ ଏହି କଥାର ଜବାବ୍ ସେ ଦେବ କିନ୍ତୁ ଜବାବ୍ ଦେବାକୁ ଯାଇ ସେ କହିଲେ "ମୁ ଜୁଆଖେଳ ଛାଡ଼ଦେଇ ପାରିବି ନାହିଁ ।

ମୁ କହିଲି ତେବେ ଏହି ଘରୁ ଚିରଦିନ ପାଇଁ ତୁମେ ଚାଲି ଯାଅ । ଏହିପରି ବହୁ ସମୟ ବିତି ଗଲା । ପରିଶେଷରେ ସେ ରାଜି ହେଲେ । ସଭର ଲୋକେ ଶୁଣି ଖୁସି ହେଲେ ସତ ତାପରେ ମୁ ତାଙ୍କୁ ୧୦ ଛବୁକ ଯେ ମାଡ ଦେବି ଏ କଥା ଶୁଣି ସଭର ଲୋକେ ନୀରବ ରହିଗଲେ । କେହି ବି ଆଶା କରି ନ ଥିଲେ ଯେ ନିଜର ମହାପ୍ରସାଦ ହୋଇ ନିଜ ମହାପ୍ରସାଦକୁ ମାଡ କିପରି ଦେବେ ? କିନ୍ତୁ ମୁ

ତାହା କରିଥିଲି । ୧୦ ଘବୁକ୍ ମାତ୍ର ଯେତେ କଠିନ ହୋଇପାରେ ସେତେ କଠିନ ରୂପେ ସେ ଦିନ ତାଙ୍କୁ ସଭରେ ପିଟିଥିଲି । ତାହା ଦେଖି ଲୋକେ ସ୍ତବ୍ଧ ପାଲଟି ଯାଇଥିଲେ ।

ଆଶ୍ଚର୍ଯ୍ୟର କଥା ସେ ଦିନୁ ସେହି ବ୍ୟକ୍ତି ଆଉ କେବେ ମଧ୍ୟ ଜୁଆଖେଳ ଖେଳି ନ ଥିଲେ । ତାରି ଫଳ ସ୍ୱରୂପ ସେ ଏବେ ଗ୍ରାମରେ ଜଣେ ବିଶିଷ୍ଟ ଧନୀ ବ୍ୟକ୍ତିର ଆସନରେ ଆସୀନ । ୨ ଗୋଟି ଟ୍ରାକ୍ଟର, ଦୋ ମହଲା ପକ୍କା କୋଠା, ବାଡ଼ ବଗିଚ୍ଚ, ଚାଷ ଜମିର ଉନ୍ନତି ଦେଖିଲେ ମୋର ନିଜ ମନ କୁଣ୍ଢେମୋଟ ହୋଇ ଯାଏ । ତାଙ୍କର ଏ ସବୁ ଉନ୍ନତି ଦେଖି ମୁ ନିଜେ ବି ବିଶ୍ୱାସ କରି ପାରେ ନାହି ଯେ ସତରେ କଣ ମୁ ଦିନେ ୟାଂକ ଉପରେ ଏପରି ଚଢାଉ କରିଥିଲି ?

ଏହି ଘଟଣାର ପୂର୍ବରୁ ଗାଁରେ ଜୁଆଖେଳ ଲାଗିଥିବା ଆଡ୍ଡା ସ୍ଥଳକୁ ମୁ ବହୁବାର ଯାଇଛି । ଲୋକଙ୍କୁ ବୁଝାଇଛି । ଖେଳ ଛାଡ ଦେବା ପାଇଁ ମୋ କଥା ଶୁଣିବା ପରିବର୍ତ୍ତେ ସେମାନେ ମୋତେ ଦେଖି ଦେବା ମାତ୍ରେ ଛିନ ଛତର ହୋଇ ପଳାଇ ଯାଉଥିଲେ । ଆମ ପଡାରେ ଜଣେ ଲୋକ ତା ନିଜ ଘରେ ଟଂକା ପାଇ, ଜୁଆ ଖେଳାଉ ଥିଲା । ଦିନକୁ ଅକ୍ଲେଶରେ ସେ ଟ୫, ଟ୧୦ ପାଇ ଯାଉ ଥାଏ । ସେ ଖବର ମୁ ଜାଣି ପାରିଲି । ଦିନେ ସେହି ଲୋକକୁ ଡାକି କରି ବୁଝାଇ ଦେଲି ଯେ ଏ କାମ ନିଜ ଘରେ କରାଇବା ଠିକ୍ ହେଉନାହି । ତାହା ଶୁଣି ସେ ତାର ପ୍ରତ୍ୟୁତ୍ତରରେ ମୋତେ ହାଇକୋର୍ଟ ଦେଖାଇଲା । ଫଳରେ ତା ପରଦିନ ସେ ତାର ଘର ଜୁଆ ଖେଳାଳୀ ମାନଙ୍କୁ ଦେଇଥାଏ । ଲୋକେ ଜମା ହୋଇ ଖେଳରେ ମାତି ଥାଆନ୍ତି । ଏପରି ସମୟରେ ମୁ ସେଠାରେ ପହଞ୍ଚି ଗଲି । ମୋତେ ଦେଖି ଲୋକେ ଯିଏ ଯୁଆଡେ ପାରିଲେ ତରଛ ହୋଇ ପଳାଇ ଗଲେ । ତିନି ଜଣ ଲୋକ ଘର ଛାତ ଉପରକୁ ଉଠି ଯାଇ ଅନ୍ୟ ଲୋକର ଛାତ ଦେଇ ତଳେ ଦୁମ୍ ଦାମ୍ କଚଡା ଖାଇ ପଳାଇଲେ ।

ଘରବାଲାକୁ ତାପରେ କହିଲି ଆଉ ଦିନେ ଏପରି କଲେ ପରିଣାମ ପାଇଁ ମୋତେ ଦୋଷ ଦେବୁ ନାହି ।

ତା ଶୁଣି ସେ କହିଲା ଆଉ ଦିନେ ମଧ୍ୟ ମୁ ଏ କାମ ଏ ଘରେ କରାଇବି ନାହି । ସତକୁ ସତ ତା ଆରଦିନୁ ଆଉ ସେଠାରେ ଜୁଆଖେଳ କେବେ ମଧ୍ୟ ହୋଇ ନ ଥିଲା ।

ଗାଁରେ ଥିବା ସମୟରେ କ୍ଲବ, ପବ୍ଲିକ ଲାଇବ୍ରେରୀ, ପୌଢ଼ଶିକ୍ଷା କେନ୍ଦ୍ର, ସେବା ସମିତି; ଆଦି ଅନୁଷ୍ଠାନ ଗୁଡକ ଖୋଲି ତହିରେ ମୁ ସକ୍ରିୟ ଅଂଶ ଗ୍ରହଣ କରୁଥିଲି । ଦଳେ ପିଲାଙ୍କୁ ନେଇ ଗାଁ ରାସ୍ତା ମରାମତି, ପରିଷ୍କାରଣ,

ପୋଖରୀ ତୁଠ ପରିଷ୍କାରଣ, ଦଳକଢ଼ା ଆଦି କାର୍ଯ୍ୟମାନ ଦୀର୍ଘ ୯।୧୦ ବର୍ଷ ଧରି କରିଥିବାର ମୋର ମନେ ହୁଏ ।

ଘରପୋଡ଼, ଶବ ସଂସ୍କାର ଆଦି କାମରେ ପ୍ରାୟ ମୁଁ ବିଶେଷ ଭବେ ସାହାଯ୍ୟ କରୁଥିଲି । ଗୋଟିଏ ପବ୍ଲିକ ଲାଇବ୍ରେରୀର ମୁଖ୍ୟ ସେବକ ରୂପେ ୧୫ ବର୍ଷ ଯାଏ ରହିଥିଲି । ସରକାରଙ୍କ ଠାରୁ ଗ୍ରାଣ୍ଟ ମଧ୍ୟ ରୀତିମତ ଆସୁଥାଏ । ୪।୫ ହଜାର ପୁସ୍ତକ କିଣା ହୋଇ ଉକ୍ତ ପାଠାଗାରରେ ସଯତ୍ନରେ ରଖା ଯାଇଥିଲା ।

କିନ୍ତୁ ହାୟ, ମୁଁ ସେହି ଗ୍ରାମ ଛାଡ଼ ଯେତେବେଳେ ବରଗଡ ଚାଲି ଆସିଲି ମୋର ଆସିବାର ବର୍ଷେ କି ଦୁଇ ବର୍ଷ ପରେ ସେହି ଲାଇବ୍ରେରୀର ସମସ୍ତ ବହି ଲୋକେ ନେଇ ଯାଇ ଆଉ ଫେରାଇଲେ ନାହିଁ । ତାହା ଦେଖି ମୋ ମନରେ ବିଶେଷ କ୍ଷୋଭ ଜାତ ହେଲା ।

ମୁଁ ବିଭିନ୍ନ ଗ୍ରାମକୁ ଶିକ୍ଷକତା କରିବାକୁ ଯାଇ ସେହି ଗ୍ରାମ ମାନଙ୍କରେ ଗୋଟିଏ ଲେଖାଏ ପାଠାଗାର ସ୍ଥାପନ କରି ଆସିଥିଲି । ମୋର ଆସିବା ପରେ ପରେ ସେ ସବୁ ନଷ୍ଟ ହୋଇ ଯାଇଥିବାର ମୁଁ ଶୁଣିବାକୁ ପାଇଲି ।

ପାଠାଗାର ପ୍ରତି ମୋର ପିଲାଟି ଦିନରୁ ଶ୍ରଦ୍ଧା ରହି ଆସିଅଛି । ଏବେ ବି ମୋର ଏକକ ଚେଷ୍ଟାରେ ଆମ ଘରେ ହିନ୍ଦି, ବଙ୍ଗଳା, ଓଡ଼ିଆ ଓ ଇଂରାଜୀ ଭଷାର ୫।୬ ହଜାର ପୁସ୍ତକ ରହିଅଛି ।

ଆଗରୁ କହିଛି ମୁଁ ଜଣେ ସଂସ୍କାର ପ୍ରୟାସୀ । ମୋର ଜନ୍ମଭୂମି ରେମଣ୍ଡା ଗ୍ରାମ ଏକ ପୁରାତନ ଏବଂ ବୃହତ୍ ଗ୍ରାମ ଅଟେ । ବହୁ ଜାତି ଲୋକଙ୍କର ବାସ-ସ୍ଥଳୀ । ତେଣୁ ବର୍ଷର କେତେକ ମାସକୁ ବାଦ ଦେଲେ ସବୁଦିନ କିଛି ନା କିଛି ସାଂସ୍କୃତିକ କାର୍ଯ୍ୟକ୍ରମ ଗାଁରେ ହୋଇଥାଏ । ପାଲା, ଦାସକାଠିଆ, ଲୀଳା, ଯୁଆଙ୍ଗ, ଗୀତିନାଟ୍ୟ, ନାଟକ ଆଦି ବିଭିନ୍ନ କାର୍ଯ୍ୟକ୍ରମ ଅବହମାନ କାଳରୁ ଚାଲି ଆସିଅଛି ।

ଏହି ପରିପ୍ରେକ୍ଷୀରେ ୧୯୪୪ ସାଲରେ ଫଗୁଣ ମାସରେ ଉଡଗାଁ ଗ୍ରାମର ଏକ ନାଟ ଦଳ ଆମ ଗାଁକୁ ଆସି ନାଟ କରୁଥାନ୍ତି । ସେମାନେ ସେଦିନ ସଂଗୀତ (ଗୋଟିପୁଅ) ନାଟ ପ୍ରାୟ ଘଣ୍ଟେ ଦେଢ଼ ଘଣ୍ଟା କରିଥିଲେ । ଉକ୍ତ ନାଟ କରିବା ପୂର୍ବରୁ ତାଙ୍କ ଗୁରୁ ଇଂରାଜୀ ଭଷାରେ ଏକ ଭଷଣ ଦେଇଥାନ୍ତି ।

ଲୋକେ ତାହା ଶୁଣି ଆସି ମୋତେ ସମ୍ବାଦ ଦେଲେ ଯେ ଗୋଟିଏ ବଢ଼ିଆ ନାଟ ଦଳ ଆସି ନାଟ କରୁ ଅଛନ୍ତି । ସେମାନେ ସଙ୍ଗୀତ ନାଟ ପରେ ଏବେ ସୀତାହେରୀ ନାଟ ପରିବେଷଣ କରୁଅଛନ୍ତି । କଥାଟି ଶୁଣି ମୋ ମନରେ

କୁତୁହଳ ଜାତ ହେଲା । ଏବିଲି କଣ କରିବି ? ଇୟେ ହେଲା ଦିଲ୍ଲୀ କା ଲଡ୍ଡୁ । ଯୋ ଖାଏଗା ପସ୍ତାଏଗା, ନହିଁ ଖାଏ ତୋ ଓ ବି ପସ୍ତାଏଗା । ଇଂରାଜୀରେ ଯେତେବେଳେ ଲେକ୍‌ଚର ଦେଉଛନ୍ତି ନାଟଟି ନିଶ୍ଚୟ ଏକ ରୁଚିସମ୍ପନ୍ନ ହୋଇଥିବ ।

ଯାଏଁ ଘେରଏ ବୁଲିଆସେ କହି ନାଟ ହେଉଥିବା ସ୍ଥଳକୁ ଯାଇ ପହଞ୍ଚିଗଲି । ଦେଖିଲି ବିପୁଳ ସଂଖ୍ୟକ ନାରୀ, ପୁରୁଷ, ବାଳକ, ବାଳିକା ନିର୍ବିଶେଷରେ ନାଟ ଦେଖିବାରେ ଲାଗି ପଡ଼ିଛନ୍ତି । ମୁ ପହଞ୍ଚିବା ସମୟରେ ସୁର୍ପଣଖା ଅସୁରୀ ବାହାରି ବିଭିନ୍ନ ଢଙ୍ଗ ରହସ୍ୟ ସୃଷ୍ଟି କରୁଛି । ଜଣେ ପୁରୁଷ ନାରୀ ଭୂମିକାରେ ଅବତୀର୍ଣ୍ଣା ହୋଇଛି । ସେ ତା ଦେହରେ ୨ଟି ତକିଆ ଆକାର ସ୍ତନ ତାର ବକ୍ଷ ଦେଶରେ ଖଞ୍ଜି ତାକୁ ଦୁଇ ହାତରେ ଛାତି ତଳୁ ପଦାକୁ ଟେକି ଧରି କହୁଥାଏ····

(ଅତି ଅଶ୍ଳୀଳ ଭଙ୍ଗୀ ଓ କଥା) । ବିଶେଷ କରି ସ୍ତ୍ରୀମାନେ ଯେଉଁ ପଟେ ବସିଥାନ୍ତି ତାଂକ ଆଡ଼କୁ ଯାଇ ତାହା ଦେଖାଇ ଅତି ଅଶ୍ଳୀଳ ଭବେ ପ୍ରଦର୍ଶନ କରୁଥାଏ । ଲୋକେ ହସୁଥାନ୍ତି । ସ୍ତ୍ରୀଲୋକ ମାନେ ବି ହସୁଥାନ୍ତି । ଯୁବକ ଯୁବତୀ ମାନଂକର ତାହା ହୋଇଥାଏ ପରସ୍ପର ପ୍ରେମାଳାପର ଏକ ଆହ୍ଲାଦକର ଖୋରାକ୍ ବା ମାଧ୍ୟମ । ବୟସ୍କ ବ୍ୟକ୍ତିଗଣଙ୍କୁ ତାହା ଯୋଗାଇଥାଏ ବିରକ୍ତି ଓ ଘୃଣା ମନୋ-ଭବର ଦ୍ୟୋତନା ।

ତାହା ଦେଖି ମୁ ବିଚଳିତ ହୋଇ ପଡ଼ିଲି । ଭୀଷଣ ଲୋକ ଗହଳି । ଗହଳି ଭେଦ କରି କୌଣସିମତେ ଯାଇ ରଙ୍ଗମଞ୍ଚ ନିକଟରେ ପହଞ୍ଚି ନାଟ ବନ୍ଦ କରିବାକୁ କହି ଅଶ୍ଳୀଳତା ପ୍ରଦର୍ଶନ କରୁଥିବା ଅଭିଯୋଗରେ ନାଟର ଗୁରୁଙ୍କୁ କୈଫିୟତ ତଲବ କରିବାକୁ ଆହ୍ୱାନକଲି । ଖୋଲା ରଙ୍ଗମଞ୍ଚରେ ଗୁରୁ ବସିଥାନ୍ତି । ଏସବୁ ଦେଖି ସେ ଗ୍ରୀନରୁମକୁ ଚାଲିଗଲେ । ତାଙ୍କୁ ତାପରେ ଯେତେ ଡାକିଲି ମୋର ସମ୍ମୁଖକୁ ଆସିବାକୁ ସେ ଆଉ ଆସି ନ ଥିଲେ ।

ତାପରେ ନାଟ ବା ନାଟକର ଉଦ୍ଦେଶ୍ୟ କଣ, ତାରି ଅବଦାନ ଜନ-ସମାଜ ଉପରେ କି ପ୍ରକାର ପ୍ରଭବ ବିସ୍ତାର କରେ, ଅଭିନୟର ଢଙ୍ଗ କିପରି ହେବା ଉଚିତ ଆଦି କଥା ନେଇ ଏକ ଦୀର୍ଘ ଭଷଣ ଦେଇଥିଲି । ନାଟ ତ ସଙ୍ଗେ ସଙ୍ଗେ ବନ୍ଦ ହୋଇ ଯାଇଥିଲା । ତାପରେ ସେଠାରେ ବସିଥିବା ୧୦ । ୧୫ ଜଣ ବ୍ୟକ୍ତି ଆସି ମୋତେ ସାଧୁବାଦ ଜଣାଇ ଥିଲେ । ସେହିଦିନୁ ସେହି ଗ୍ରାମରେ କୁରୁଚି ପୂର୍ଣ୍ଣ କୌଣସି ସାଂସ୍କୃତିକ କାର୍ଯ୍ୟକ୍ରମ ଆଉ କରଯାଇ ନ ଥିଲା ।

# ଦାକ୍ଷିଣାତ୍ୟ ଭ୍ରମଣ

ପାରିବାରିକ ପରିସ୍ଥିତିରେ ପଡ଼ି ଚିକିତ୍ସା ନିମିତ୍ତ ମୋତେ ଭାରତରେ ଥିବା ପ୍ରସିଦ୍ଧ ଚିକିତ୍ସା କେନ୍ଦ୍ର ଭେଲୋରକୁ ୨ ଥର ଯିବାକୁ ପଡ଼ିଥିଲା । ୧୯୭୪ ସାଲ ରେ ଥରେ ୩୩ ଦିନ ଏବଂ ୧୯୭୫ ସାଲରେ ୪୯ ଦିନ ମୋତେ ସେଠାରେ ରହିବାକୁ ହୋଇଥିଲା । ପ୍ରଥମ ଥର ଯାତ୍ରା ପାଇଁ ଟଙ୍କା ହାତରେ ଥିଲା । ଦ୍ୱିତୀୟ ଥର ବେଳେ ଦୁଇ ହଜାର ଟଙ୍କାର ଅଭାବ ଘଟିଲା । ସେତିକି ବେଳେ ମୁଁ ଭାବିଲି କାହାଠିଠାରୁ ଧାର ଆଣିବା ଅପେକ୍ଷା କିଛି ଜମି ବିକ୍ରୀ କରିଦେବି ।

ଜମି ବିକ୍ରୟ ହେବା ଶୁଣି ମୋର ଜନୈକ ଆତ୍ମୀୟ ଜମି କିଣି ନେଇ ଟଙ୍କା ଦେବାକୁ ଆଗେଇ ଆସିଲେ । ଏପରିବେଳେ ମୋର ଅନ୍ୟତମ ବନ୍ଧୁ ସ୍ୱର୍ଗତ ହରିହର ହଟାଇ, ବେମଣ୍ଡା ଏବଂ ବରଗଡ଼ର ଶ୍ରୀଯୁକ୍ତ ରଘୁବୀର ମେହେର ଖବର ଜାଣିପାରି ସ୍ୱତଃପ୍ରବୃତ୍ତ ହୋଇ ମୋ ନିକଟକୁ ଆସି ଜମି ବିକିବାକୁ ମନାକରି ପ୍ରତ୍ୟେକେ ଏକ ହଜାର କରି ଏପରି ଦୁଇ ହଜାର ଟଙ୍କା ଧାର ଦେଇଥିଲେ । ତାହା ତାଙ୍କୁ ମୁଁ ବିନା ସୁଧରେ ୬ ମାସ ପରେ ପରିଶୋଧ କରି ଦେଇଥିଲି । ଉକ୍ତ ବନ୍ଧୁଦ୍ୱୟଙ୍କର ସେ ସ୍ମୃତି ଏବେ ମଧ୍ୟ ମୋର ମନରେ ଅପାଶୋଧ ହୋଇ ରହିଅଛି ।

ସେହି ସମୟରେ ମୁଁ ମାନ୍ଦ୍ରାଜ, ଭେଲୋର, ରତ୍ନଗିରି, ତିରୁପତି, ପଣ୍ଡି-ଚେରୀ, ବେଙ୍ଗଲୋର, କେରଳ ରାଜ୍ୟର କେତେକ ବିଶିଷ୍ଟ ସ୍ଥାନ, ତ୍ରିଭେନ୍ଦ୍ରମ ଆଦି ବିଭିନ୍ନ ସ୍ଥାନ ଭ୍ରମଣ କରିଥିଲି । ଆନ୍ଧ୍ର ରାଜ୍ୟର ମଧ୍ୟ କେତେକ ଦର୍ଶନୀୟ ସ୍ଥାନ ଦେଖିବା ସଙ୍ଗେ ସଙ୍ଗେ ତାମିଲନାଡୁ, ଆନ୍ଧ୍ର, କେରଳ ଆଦିର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ନାନା ବିଷୟ ନେଇ ଆଲୋଚନା କରିବାର ସୁଯୋଗ ମୋତେ ମିଳିଥିଲା ।

ଆନ୍ଧ୍ର ରାଜ୍ୟର ଭାଷା ତେଲଗୁ । ତାମିଲନାଡୁର ଭାଷା ତାମିଲ । କେରଳର ଭାଷା ମାଳୟାଲମ୍ । ତେଲଗୁ ଭାଷା ତାମିଲନାଡୁର ଲୋକେ ବୁଝି ପାରନ୍ତି ନାହିଁ । ସେହିପରି ତାମିଲ ଭାଷା ଆନ୍ଧ୍ର ପ୍ରଦେଶରେ ବୁଝି କିମ୍ବା କହି ପାରନ୍ତି ନାହିଁ । ତାମିଲ ଭାଷା କେରଳ ଲୋକେ ବୁଝି ପାରନ୍ତି କହି ମଧ୍ୟ ପାରନ୍ତି । ତାମିଲ ଆଉ କେରଳବାସୀଙ୍କ ପକ୍ଷେ ପରସ୍ପର ଭାବ ଆଦାନ ପ୍ରଦାନ ସ୍ୱଚ୍ଛନ୍ଦ ଭାବେ ହୋଇଥାଏ ।

ତେଲଗୁ ଭାଷା କେବଳ ଆନ୍ଧ୍ରପ୍ରଦେଶ ପାଇଁ ଉଦ୍ଦିଷ୍ଟ । ଶିକ୍ଷିତ ବ୍ୟକ୍ତି ଇଂରାଜୀ କହିଥାନ୍ତି । ହିନ୍ଦି ଭାଷା ବିରୋଧୀ ଆନ୍ଦୋଳନ ହେତୁ ସେଠାରେ ହିନ୍ଦି

ଭଷାର ପ୍ରଚଳନ ନାହିଁ । ହାଟ ବଜାର କରିବାକୁ ଯାଇ ମୋତେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା ।

ତାମିଲନାଡୁରେ ଥିବାବେଳେ ମୁ ଗୋଟିଏ ଇଂଲିଶ-ତାମିଲ ଏବଂ ଇଂଲିଶ-ମାଳୟାଲମ ଭଷାର ଦୁଇଖଣ୍ଡ ପୁସ୍ତକ କିଣିଥିଲି । ବେଳେ ବେଳେ ହାଟ ଆଦି କଲାବେଳେ ତାକୁ ପାଖରେ ରଖି ମୁ ଶବ୍ଦ ଗୁଡ଼କ ବ୍ୟବହାର କରୁଥାଏ । କେତେକ ହିନ୍ଦି, ଆଉ କେତେକ ଇଂରେଜୀ ବୁଝି ପାରୁ ଥିବାରୁ ମୋରପକ୍ଷେ କିଛି ଅସୁବିଧା ଦେଖା ଦେଇ ନ ଥିଲା ।

ଏଠାର ଲୋକେ ଅତ୍ୟନ୍ତ ପରିଶ୍ରମୀ । ସାଧାରଣ ବ୍ୟକ୍ତି ବିଶେଷ, ଶ୍ରମକୁ ମର୍ଯାଦା ରୂପେ ଗ୍ରହଣ କରି ଥାଆନ୍ତି । ନିଜ କାମ ନିଜେ କରିବାକୁ ଲୋକେ ଖୁବ୍ ଉତ୍ସାହୀ ଏବଂ ତତ୍ପର । ଉଠା ଜଳସେଚନ ଯୋଜନା ସମଗ୍ର ଦାକ୍ଷିଣାତ୍ୟକୁ ବିବିଧ ଶସ୍ୟ ସମ୍ଭାରରେ ପରିପୂର୍ଣ୍ଣ କରି ରଖିଛି ।

ଘରକାମ କରିବା ନିମିତ୍ତ ଏଠା ଲୋକେ ଚାକର ରଖନ୍ତି ନାହିଁ । ଘରର ଯାବତୀୟ କାମ ଗୃହିଣୀ ତଥା ପରିବାର ପରିଜନ ମାନେ ସଂପାଦନ କରି ଥାଆନ୍ତି । ପ୍ରତ୍ୟେକ ପରିବାରରେ ରାତି ୮ଟା ବେଳକୁ ଖିଆପିଆ କାମ ସାରିଦେଇ ଶୋଇ ପଡନ୍ତି । ସକାଳୁ ୪ଟାରୁ ଉଠି ଘରର ପ୍ରତ୍ୟେକ କାମ କରିବାରେ ଲାଗି ପଡନ୍ତି । ହିନ୍ଦୁ ଘର ସ୍ତ୍ରୀ ଲୋକମାନେ ଘର ସମ୍ମୁଖ ଭଗ ଧୋଇ ପରିଷ୍କାର କରି ଦେବା ସଙ୍ଗେ ତା ଉପରେ ଚଟାଣରେ ବିଭିନ୍ନ ପ୍ରକାର ମୁରୁଜ ଲେଖିଦେବା ଏକ ପ୍ରାତ୍ୟାହିକ କାମ ।

ଚୋରି ଡକାୟତି ଖୁବ୍ କମ ବୋଲି ଶୁଣିଲି । ପ୍ରଶାସନିକ କ୍ଷେତ୍ରରେ ବିଭଗୀୟ ମୁଖ୍ୟଙ୍କ ନର୍ଦ୍ଦେଶକୁ ଅଧସ୍ତନ କର୍ମଚାରୀ ନିଷ୍ଠାପର ଭବେ ମାନି ଚଳି ଥାନ୍ତି । ଫଳରେ ଛୋଟ ସଂସ୍ଥାର ମୁଖ୍ୟଙ୍କ ଠାରୁ ଆରମ୍ଭି ବଡ ବଡ ସଂସ୍ଥା ମାନ-ଙ୍କରେ ବିଶୃଙ୍ଖଳା ଦେଖା ଦିଏ ନାହିଁ । ଗ୍ରାମ ପଞ୍ଚାୟତ ଗୁଡ଼କ ପ୍ରତିଷ୍ଠିତ ହେବା ଦିନରୁ ଗ୍ରାମ୍ୟ ବିବାଦ ମାନ ପଞ୍ଚାୟତ କର୍ତ୍ତୃକ ମୀମାଂସିତ ହୋଇଯାଏ । ସେତେ-ବେଳେ ତାମିଲନାଡୁରେ କରୁଣାକର ମୁଖ୍ୟମନ୍ତ୍ରୀ ଥାଆନ୍ତି । ସେ ମୁଖ୍ୟମନ୍ତ୍ରୀ ଥିବା ପର୍ଯ୍ୟନ୍ତ ରାତି ବାରଟାରେ ମଧ୍ୟ ଜଣେ ଯୁବତୀ ସ୍ତ୍ରୀ ନିର୍ଭୟରେ ରାସ୍ତାରେ ଯିବା ଆସିବା କରିପାରେ ବୋଲି ବହୁ ପ୍ରବୀଣ ବ୍ୟକ୍ତି ମତ ବ୍ୟକ୍ତ କରୁଥିବାର ଶୁଣି ବିସ୍ମିତ ହେଲି ।

ମୁ ଭେଲୋରରେ ଥିବାବେଳେ ଦେଖିଲି ସକାଳୁ ଗାଈ ରଖିଥିବା ଗୌଡ ତାର ଗାଈ ଓ ବାଛୁରୀକୁ ଆଣି ପ୍ରତି ଷ୍ଟ୍ରିଟ ମାନଙ୍କରେ ଥିବା ଏକ ଏକ ନିର୍ଦ୍ଦିଷ୍ଟ

ସ୍ଥଳରେ ଗାଈ ବାଛୁରୀଙ୍କୁ ଅଲଗ ଅଲଗ ବାନ୍ଧ ନିକଟରେ ଥିବା ଲଜରେ ରହୁଥିବା ଲୋକ ମାନଙ୍କୁ, ଘର ବାଲାଙ୍କୁ ଡାକି ଆଣି ସେମାନଙ୍କର ସମ୍ମୁଖରେ କ୍ଷୀର ଦୁହିବା ପାତ୍ରକୁ ପ୍ରଥମେ ତଳକୁ କରି ଦେଇ ତା ପରେ ଦୁଧ ଦୁହିବା କାମ ଆରମ୍ଭ କରେ । ଦୁହି ସାରିବା ପରେ ଲିଟର ପ୍ରତି ୯୦ ପଇସା ଦରରେ ତାହା ଲୋକଙ୍କୁ ବିକ୍ରୀ କରି ଦିଏ । ୧୯୭୪ ଖ୍ରୀ:ରେ ଲିଟର ୮୦-୮୦ ପଇସା ଥିଲା । ୧୯୭୫ ଖ୍ରୀ:ରେ ତାହା ୮୦-୯୦ ପଇସାରେ ବିକ୍ରୟ କରୁଥିଲେ ।

ସଂଧ୍ୟା ୫ଟା ଏବଂ ସକାଳ ୬ଟାରେ ଏ ଦୃଶ୍ୟ ଯେ କେହି ଦର୍ଶକ ଯେ କୌଣସି ଷ୍ଟ୍ରିଟରେ ଦେଖି ପାରିବ ।

ଲକ୍ଷାଧିକ ବ୍ୟକ୍ତି ବାସ କରୁଥିବା ଏହି ସହରର ପରିଷ୍କାର ପରିଚ୍ଛନ୍ନତା ଅତ୍ୟନ୍ତ ଆଶ୍ଚର୍ଯ୍ୟ ଜନକ । ସହରର କୌଣସି ଗଳିରେ ବୁଲା କୁକୁରଟିଏ ଦେଖିବାକୁ ମିଳେ ନାହିଁ । ଭୌଗଳିକ ଦୃଷ୍ଟି କୋଣରୁ ଜୁଲାଇ ମାସ ଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ଏଠାରେ ଗ୍ରୀଷ୍ମ କାଳ । ନଭେମ୍ବର ମାସରୁ ବର୍ଷାକାଳ ଆରମ୍ଭ ହୋଇ ଥାଏ । ମୁଁ ଗ୍ରୀଷ୍ମ କାଳରେ କ୍ରମାଗତ ୨ ବର୍ଷ ଯାଏ ସେଠାରେ ଥିଲି । କୃଷ୍ଣା ନଦୀର ଜଳକୁ ଏଠାରେ ଥିବା କୃଷକ ମାନେ ଯେପରି ଉତ୍ତରେ ବ୍ୟବହାର କରି ବାରମାସ ଯେପରି ଶସ୍ୟ ଉତ୍ପାଦନ କରୁ ଅଛନ୍ତି ତାହା ଦେଖିଲେ ବିସ୍ମିତ ହେବାକୁ ପଡେ ।

କୌଣସି ପ୍ରକାର ପ୍ରାକୃତିକ ବିପର୍ଯ୍ୟୟ ହେତୁ ୧୯୭୬ ଖ୍ରୀ:ରେ ଧାନ ଉତ୍ପାଦନ ଦିଗରେ ଆଶାନୁରୂପ ଶସ୍ୟ କୃଷକ ମାନେ ପାଇ ପାରି ନ ଥିଲେ । ସେଥିପାଇଁ ସେହି ବର୍ଷ ଚାଉଳ ଲିଟର ମାପରେ ପାଞ୍ଚ ଟଂକା ଷାଠିଏ ପଇସାରେ ବିକ୍ରୀ ହେଉଥିଲା । ତଥାପି ହୋଟେଲ ମାନଂକରେ ଭାତ ମିଲ୍ ପ୍ରତି ୮୨-୭୫ପ: ଦେବାକୁ ପଡୁଥିଲା ।

ଦାକ୍ଷିଣାତ୍ୟ ଲୋକେ ଭାତ ପ୍ରଚୁର ଖାଆନ୍ତି । ସେଠାରେ ପ୍ଲେଟ ସିଷ୍ଟମ ନାହିଁ । ଲକ୍ଷ ଲକ୍ଷ ଲୋକେ କାଠ କୋଇଲା ଜାଳେଣି ରୂପେ ବ୍ୟବହାର କରନ୍ତି ।

ସରକାର ହିଟର ବ୍ୟବହାର ନିଷିଦ୍ଧ କରିଥିବାରୁ ସାଧାରଣ ଜନତା ହିଟର ବ୍ୟବହାର ଆଦୌ କରନ୍ତି ନାହିଁ । କାଠ କୋଇଲା ଦୋକାନ ସେଥିପାଇଁ ସ୍ଥାନେ ସ୍ଥାନେ ବହୁଳ ସଂଖ୍ୟାରେ ଥିବାର ଦେଖିଲି ।

ଦୁଧ, ଦହି, ଗାଈ ଘିଅ ଏଠାରେ ପ୍ରଚୁର । ୮୦-୨୫ ପଇସାରେ ଅଧ ଲିଟର ଦହି ମିଳେ । ବିଶୁଦ୍ଧ ଗାଈ ଘିଅ ର ଦୋକାନ ମାନଙ୍କରେ ଗ୍ରାହକ ସମ୍ମୁ-

ଖରେ ଲହୁଣୀରୁ ମାରିଦେଇ (ବାହାର କରି) କେଜି ତେର ଟଙ୍କାରେ ସେତେବେଳେ ମିଳୁଥିଲା । ବାଦାମ ତେଲ କେଜି ଟ୧୦-୦୦ ଥାଏ ।

ଲୋକେ ଘିଅ କିମ୍ବା ଘ ସେତେ ପରିମାଣରେ ବ୍ୟବହାର କରୁ ଥିବାର ମନେ ହେଲା ନାହିଁ । ଘ ପରିବର୍ତ୍ତେ କ୍ଷୀର ଲୋକେ ପିଇ ଥାଆନ୍ତି । ଠିକ୍ ଆମ ଏ ଅଡର ଘ ପିଇବା ପରି । ବାଦାମ ତେଲର ବ୍ୟବହାର ସର୍ବତ୍ର । କେରଳରେ ସେହିପରି ନଡ଼ିଆ ତେଲ ଖାଇବା କାମରେ ଲଗାନ୍ତି ।

ଓଡ଼ିଶା ପରି ପାନ ଖିଲ ଏଠାରେ ନାହିଁ । ଦୁଧ କପ୍ ଟ୦-୨୦ ଦେଇ ପିଇବା ଲୋକ ଏଠାରେ ପ୍ରାୟ ୮୦% ଦେଖିବାକୁ ମିଳେ ।

ସାତ୍‌କୋଡ ନାମକ ଏକ ସୁମିଷ୍ଟ ରସବହୁଳ ଫଳ ପ୍ରଚୁର ମିଳେ । ଫଳ ଦୋକାନ ମାନଙ୍କରେ ଫଳରସ ଗ୍ଲାସ ଟ ୦-୪୦ ପଇସା ବିକାଯାଏ । ଫଳରସ କହିଲେ ଅଂଗୁର, ସାନ୍ତରା, ସାତକୋଡ଼ ପ୍ରଧାନ । ବେଦାନା ରସ ଷାଠିଏ ପଇସା କରି ଗ୍ଲାସ ମିଳେ । ସାତକୋଡ ଫଳ ଟଙ୍କାରେ ୮/୯ କରି । ମୁସମ୍ବି ପରି ତାରି ଗୁଣ ।

ଭେଲୋର ଡାକ୍ତରଖାନା ଏଶିଆ ମହାଦେଶରେ ଥିବା ଅନ୍ୟାନ୍ୟ ପ୍ରସିଦ୍ଧ ହସ୍‌ପିଟାଲ ମଧ୍ୟରୁ ଅନ୍ୟତମ । ୮୬୮ଜଣ ଡାକ୍ତର ଏବଂ ୨୨୦୦ ନର୍ସ (ସେବିକା) ଅନବରତ ରୋଗି ମାନଂକର ପରିଚର୍ଯ୍ୟାରେ ଲାଗି ଥିବାର ଦେଖିଲି । ଦିନକୁ ଅତି ବଡ ଧରଣର ଅପରେସନ ୯୬ ଜଣଙ୍କର ଏଠାରେ ହୋଇଥାଏ । ୪ କି.ମି. ପରିମିତ ମଧ୍ୟରେ ଡାକ୍ତରଖାନାଟି ଅବସ୍ଥିତ । ଭେଲୋର ଠାରୁ ୮ କି.ମି. ଦୂରରେ ବାଘାୟାମ୍‌ଠାରେ ମେଣ୍ଟାଲ୍ ହସ୍‌ପିଟାଲ ଏବଂ ୫ ମାଇଲ ଦୂରରେ ଚକ୍ଷୁ ହସ୍‌ପିଟାଲ ରହିଛି । ଚକ୍ଷୁ ରୋପଣ ମଧ୍ୟ ଏଠାରେ ହୁଏ ।

ଇଂରାଜୀ A ଠାରୁ ଆରମ୍ଭ କରି Z ପର୍ଯ୍ୟନ୍ତ ପୁଣି ଆବଶ୍ୟକ ସ୍ଥଳେ 1. 2. 3. ସେକ୍‌ସନ ଥାଇ ରୋଗିମାନଂକର ଓ୍ୱାର୍ଡମାନ ରହିଛି । ଆଶ୍ଚର୍ଯ୍ୟ କଥା ହସପିଟାଲର କୌଣସି ଡାକ୍ତର ବା ନର୍ସ ରୋଗିମାନଂକଠାରୁ ଏକ କପର୍ଦ୍ଦକ ସୁଦ୍ଧା ଆଇନ ବାହାରେ ନିଅନ୍ତି ନାହିଁ ।

ଆମ ଓଡ଼ଶାର ଦୁଇଜଣ ଡାକ୍ତର ସେଠାରେ ଥିବାର ତାଂକ ସାଇନ-ବୋର୍ଡ ଦେଖି ଜାଣି ତାଙ୍କ ସହ ଦେଖାକରି ଥିଲି । ଦୀର୍ଘଦିନ ଧରି ଓଡ଼ିଆ ଭାଷାରେ କାହାରି ସହିତ କଥା ହୋଇ ନ ଥିଲି । ତାଙ୍କ ସହ ଓଡ଼ିଆ ଭାଷାରେ କଥା ହୋଇ ବିଶେଷ ଖୁସି ହୋଇଥିଲି । ତାଙ୍କ ନାମ ଶରତଚନ୍ଦ୍ର ସାମନ୍ତରାୟ । ତାଙ୍କ ପତ୍ନୀ ସ୍ୱପ୍ନା ମଧ୍ୟ ଡାକ୍ତର । ତାଙ୍କ ଘର ପୁରୀ ଜିଲ୍ଲା । ତାଂକର ଶିକ୍ଷାଗୁରୁ ଏବଂ ମୋର

ଶିକ୍ଷା ଗୁରୁ ପତିତପାବନ ପଟ୍ଟନାୟକ ଅଟନ୍ତି । ସେହି ସବୁ କଥା ନେଇ ଆମ ଉଭୟଙ୍କ ମଧ୍ୟରେ ବନ୍ଧୁତା ଜମି ଯାଇଥିଲା ।

ଭିଖାରୀ ସଂଖ୍ୟା ଏଠାରେ ଅଳ୍ପ । ଯେତେ ଅଛନ୍ତି ସେମାନେ ସକାଳେ ୮ଟା ବେଳେ ଭିକ ମାଗି ଆସିଥାନ୍ତି । ସେମାନଙ୍କୁ ଚାଉଳ ବା ପଇସା ଦିଆ ନ ଯାଇ ମୁଠିଏ ଭାତ, ଟିକିଏ ତରକାରୀ; ଖଣ୍ଡିଏ ରୁଟି ଦେଲେ ନେଇଥାଆନ୍ତି ।

ବ୍ରାହ୍ମଣ ତ ଆଦୌ ଭିକ ମାଗନ୍ତି ନାହିଁ । ତାଙ୍କର ସମ୍ମାନ ହିନ୍ଦୁ ସମାଜରେ ଶୀର୍ଷ ସ୍ଥାନରେ ।

ଫୁଲର ଆଦର ଏବଂ ବ୍ୟବହାର ଏ ଆଡେ ଏତେ ବେଶୀ ଯେ ତାହା ନ ଦେଖିଲେ ବିଶ୍ୱାସ କରି ହୁଏ ନାହିଁ । ଫୁଟ୍ ଫୁଟ୍ ମଲ୍ଲୀ ବୋଲି ଏକ ପ୍ରକାର ଫୁଲ ଆମ ଓଡ଼ିଶାର ଯୁଈ ଫୁଲ ପରି ବାସନାଯୁକ୍ତ ମାଳ ମାଳ କରି ହଜାର ହଜାର ସଂଖ୍ୟାରେ ସ୍ତ୍ରୀ ଲୋକ ମାନେ ପ୍ରତ୍ୟହ ନିଜର ଖୋଷାରେ ଲଗାଇ ଥିବାର ସର୍ବତ୍ର ଦେଖାଯାଏ । ହସପିଟାଲର ଲେଡି ଡାକ୍ତର ମାନେ ମଧ୍ୟ ତାହା ଲଗାଇ କର୍ତ୍ତବ୍ୟ ରତ ଥାଆନ୍ତି ।

ଭେଲୋରର ଫୁଲ ହାଟ ଏତେ ପ୍ରକାଣ୍ଡ ଯେ ତାହା ଆମ ବରଗଡ ହାଟ ପରି ଆୟତନରେ ହେବ ।

ଭେଲୋରରୁ କିଛି ଦିନ ପାଇଁ ମୁଁ ପଣ୍ଡିଚେରୀ ଯାଇଥିଲି । ବଙ୍ଗୋପସାଗର କୂଳେ କୂଳେ ତାହା ଅବସ୍ଥିତ । ବିସ୍ତୃତ ସହର । ସହରର ରାସ୍ତା ଗୁଡ଼ିକ ଓସାର ଏବଂ ସିଧାସଳଖ ହୋଇ ବହୁ ଦୂର ଯାଏ ଲମ୍ବି ଯାଇଛି । ଏପରି ପରିଷ୍କୃତ ସହର ଭାରତ ବର୍ଷରେ ବିରଳ ବୋଲି କଲିକତାରୁ ଆସିଥିବା ଜନୈକ ଏଡଭୋକେଟ୍ ଗିରିଷ ଚନ୍ଦ୍ର ଚକ୍ରବର୍ତ୍ତୀ ମୋ ଆଗେ ପ୍ରକାଶ କଲେ ।

ପଣ୍ଡିଚେରୀ ୨ ଭାଗରେ ବିଭକ୍ତ । ଶ୍ରୀମା ଓ ଅରବିନ୍ଦଙ୍କ ଆଶ୍ରମ ଥିବା ଅଞ୍ଚଳ ସମସ୍ତ ପ୍ରକାର କଳୁଷିତ ବାତାବରଣରୁ ମୁକ୍ତ । ପୁରୁଣା ଅଞ୍ଚଳରେ ସମସ୍ତ ପ୍ରକାର ଆବିଳତା ରହିଛି ବୋଲି ଶୁଣିଲି । ମୁଁ ସେଠାରେ ପହଞ୍ଚି ଓଡ଼ିଆ ନିଳୟମ୍‌ରେ ଯାଇ ରହିଥିଲି । ୯ଟିଟାରେ ସେଠାରେ କଟାଇ ସକାଳେ ଓଡ଼ିଆ ଅଫିସରେ ଯାଇ ପହଞ୍ଚିଲି । ସେଠାରେ ମୋର ରହଣୀ ଦିବସ ନିମିତ୍ତ ଆବଶ୍ୟକୀୟ ଟଙ୍କା ଜମା ଦେବାରୁ ସେମାନେ ମୋତେ ସେଥିପାଇଁ ସ୍ଲିପ କେତେଖଣ୍ଡ ଦେଲେ । ତାକୁ ଅନୁମତି ପତ୍ର ବୋଲି ମନେକଲି ।

ସର୍ବସାଧାରଣଙ୍କ ରନ୍ଧନଶାଳା ଗୋଟିଏ ଉଲ୍ଲେଖନୀୟ ସ୍ଥାନ । ସେଠାରେ ପୃଥିବୀର ବିଭିନ୍ନ ସ୍ଥାନରୁ ଆସିଥିବା ବ୍ୟକ୍ତିଗଣ ନାରୀ ପୁରୁଷ ନିର୍ବିଶେଷରେ ଭୋଜନ କରିଥାନ୍ତି । ଥରକରେ ୫୦୦ ଜଣ ଲୋକ ଖାଇ ବସନ୍ତି । କି ସୁନ୍ଦର

ବ୍ୟବସ୍ଥା, ଏତେ ଲୋକ ସେଠାରେ ଖାଇ ବସିଲେ ବି କାହାରି ମୁହଁରୁ ପଦେ ବି କଥା ବାହାରେ ନାହିଁ । ସବୁ ଚୁପ୍ ଚାପ୍ । ସୁନିୟନ୍ତ୍ରିତ । କାହାରି ଟିକିଏ ବି ଅସୁବିଧା ଘଟେ ନାହିଁ । ଆଧ୍ୟାତ୍ମିକ ଖାଦ୍ୟ । ତୃପ୍ତିପ୍ରଦ । ଆଖିରେ ନ ଦେଖିଲେ ଏହା ବର୍ଣ୍ଣନା କଲେ ମଧ୍ୟ ବିଶ୍ୱାସ କରିହେବ ନାହିଁ ।

ଆଶ୍ରମ ପକ୍ଷରୁ ଗେଞ୍ଜି କାରଖାନା, କାଗଜ ତିଆରି କାରଖାନା, ଅତର ତିଆରି, ଧୂପକାଠି ତିଆରି, ଦରି, ଗାଲିଚାବୁଣା, ଲାଇବ୍ରେରୀ ଗୃହ ଆଦି ବହୁ ପ୍ରକାର କାରଖାନା ରହିଛି । ଆଶ୍ରମ ଭିତରେ ଯୋଗୀ ଅରବିନ୍ଦ ଓ ଶ୍ରୀମାଙ୍କ ସମାଧି ୨ଟି ମାର୍ବଲ ପଥରରେ ଢଙ୍କା ହୋଇ ରଖା ଯାଇଛି । ସେବା ବୃକ୍ଷ ନାମରେ ଯେଉଁ ଗଛଟି ଆଶ୍ରମର ଚତୁର୍ଦ୍ଦିଗକୁ ମାଡ ରହିଛି ତାକୁ ଯତ୍ନ କରୁଥିବା ବ୍ୟକ୍ତି ବିଶେଷଙ୍କୁ ଧନ୍ୟ କହିବାକୁ ହେବ ।

୧୯୬୦ ଖ୍ରୀ:ରେ ମୁ ଏଲାହାବାଦ ଯାଇଥିଲି । ଏଲାହାବାଦର କିଲ୍ଲା, ନେହେରୁ ଭବନ (ଆନନ୍ଦ ଭବନ) ଆଦି କେତେକ ଦର୍ଶନୀୟ ସ୍ଥାନ ଦେଖିବାର ସୌଭାଗ୍ୟ ମୋତେ ମିଳିଥିଲା ।

୧୯୬୪ ଖ୍ରୀ:ରେ ମୁ ଉତ୍ତର ବିହାର ଅଞ୍ଚଳ ପରିଦର୍ଶନ କରିବାକୁ ଯାଇ ଗୟା; ପାଟନା ଦେଇ ଫେରି ଆସିଥିଲି । ପାଟନାରେ ସେ ଥର ନିଖିଳ ଭାରତ ପ୍ରାଥମିକ ଶିକ୍ଷକ ଫେଡେରେସନର ବୈଠକ ବସିଥାଏ । ଜଣେ ପ୍ରତିନିଧି ରୂପେ ସର୍ବ ଭାରତୀୟ ସମ୍ମିଳନୀରେ ଯୋଗ ଦେବାର ସୁଯୋଗ ମୋତେ ସେ ଥର ଘଟିଥିଲା । ଭାରତର ସବୁ ରାଜ୍ୟରୁ ପ୍ରତିନିଧିମାନେ ଆସି ଯୋଗ ଦେଇଥାନ୍ତି । ଉକ୍ତ ସମ୍ମିଳନୀ ବିରାଟ ଆକାରରେ ଅନୁଷ୍ଠିତ ହେଉଥାଏ । ଆମ ଓଡ଼ିଶାରୁ ୪୦୦ ପ୍ରତିନିଧି ସେ ଥର ଯାଇ ଥାନ୍ତି ।

ଓଡ଼ିଶାର ପ୍ରାଥମିକ ଶିକ୍ଷକ ମାନଙ୍କୁ ସେତେବେଳେ ମହଙ୍ଗା ଭତ୍ତା ଆମ ଓଡ଼ିଶା ସରକାର ଦେଉ ନ ଥାନ୍ତି । ସଭାରେ ସଭାପତିଙ୍କ ଅନୁମତି ନେଇ ୨ ମିନିଟ ପାଇଁ ମୋତେ କହିବାର ସୁଯୋଗ ମିଳିଥିଲା । ମୁ ହିନ୍ଦିରେ କହିଥିଲି ଯେ ଆମ ଓଡ଼ିଶା ସରକାର ଗୋଟିଏ ଚଷମା ପିନ୍ଧିଛନ୍ତି ଉକ୍ତ ଚଷମାରେ କି ରଙ୍ଗ ଲାଗିଛି କେଜାଣି ସେଥିରେ ସେ ଦେଖି ପାରୁଛନ୍ତି ଯେ ଓଡ଼ିଶାରେ କାମ କରୁଥିବା ସବୁ ବିଭାଗର କର୍ମଚାରୀ ମାନେ ତାଙ୍କ ଆଖିରେ ଗରିବ ଦେଖା ଯାଉଛନ୍ତି ତେଣୁ ତାଙ୍କୁ ମହଙ୍ଗା ଭତ୍ତା ଦେଉଛନ୍ତି । ପ୍ରାଥମିକ ଶିକ୍ଷକ ମାନେ ସେହି ଚଷମାରେ ଧନୀ ଜଣା ପଡୁଛନ୍ତି ତେଣୁ ତାଙ୍କୁ ମହଙ୍ଗା ଭତ୍ତା ଦେଉ ନାହାନ୍ତି ।

ତାହା ଶୁଣି ସମସ୍ତେ ବିପୁଳ ସଂଖ୍ୟାରେ କରତାଳି ଦେଇ ଉକ୍ତ କଥାର ସମର୍ଥନ ଜଣାଇ ଥିଲେ ।

ଆମ୍ଭମାନଙ୍କୁ ଅର୍ଥାତ୍ ଓଡଶା ଓ ମହାରାଷ୍ଟ୍ରର ପ୍ରତିନିଧି ମାନଙ୍କୁ ଲ କଲେଜ ହଷ୍ଟେଲ ମହେନ୍ଦ୍ରରେ ରହିବାର ବ୍ୟବସ୍ଥା କରଯାଇ ଥାଏ । ପ୍ରତି ରାଜ୍ୟର ପ୍ରତି ଜିଲ୍ଲା ପାଇଁ ଗୋଟିଏ କରି କୋଠରୀ ରହିବା ପାଇଁ ଦେଇଥାନ୍ତି । ହଷ୍ଟେଲଟି ଗଙ୍ଗାନଦୀର କୂଳରେ ଅବସ୍ଥିତ । ସେଠାରେ ଥିବା ପର୍ଯ୍ୟନ୍ତ ପ୍ରତ୍ୟହ ଗଙ୍ଗାରେ ସ୍ନାନ କରିବା ସୁବିଧା ମିଳୁଥିଲା । ପାଟନା ସହରକୁ ଲାଗି ବହିଯାଇଥିବା ନଦୀର ଦୁଇ ପାର୍ଶ୍ଵ ପକ୍କା ହୋଇଥିବା ଯୋଗୁ କୂଳସ୍ଥ ମୃତ୍ତିକା କ୍ଷୟର ଆଶଙ୍କା ନାହିଁ । ସକାଳ ପାହି ଯିବା ପରେ ସହସ୍ର ସହସ୍ର ନରନାରୀ ନଦୀର ବିଭିନ୍ନ ସୋପାନ ସଜ୍ଜିତ ଘାଟ ମାନଙ୍କରେ ପୂଜା, ତର୍ପଣ, ସ୍ତୋତ୍ର ପାଠ ଆଦି କରୁଥିବା ଦୃଶ୍ୟ ହିନ୍ଦୁ ଜନ ମାନସରେ ଭକ୍ତି ଭାବ କେବଳ ଉଦ୍ରେକ କରେ ନାହିଁ ତହିରେ ନିଜକୁ ସାମିଲ କରାଇ ଦେବାକୁ ମନ ବଳେ ।

× × × ×

ଦିନେ ସକାଳ ବେଳା ହଷ୍ଟେଲର ବାରଣ୍ଡାରେ ବୁଲୁଛି, ଜଣେ ବାଉଁଶ ତିଆରି ବଂଶୀ ବିକ୍ରୀ କରିବାକୁ ସେଠାକୁ ଆସିଲା । ବଂଶୀ ପ୍ରତି ମୋର ଦୁର୍ବଳତା ବହୁ ଦିନରୁ ରହି ଆସିଅଛି । ବଂଶୀ ଦେଖି ଗୋଟିଏ ବଂଶୀ ପଚିଶ ପଇସା ଦେଇ କିଣି ପକାଇଲି । ବଂଶୀଟାକୁ ଆଣି ରହୁଥିବା କୋଠରୀ ଭିତରେ ବସି ବଜାଇଲି । ତାହା ଦେଖି ମୋ ସହିତ ଯାଇଥିବା ଆମ ବରଗଡର ଜଣେ ଶିକ୍ଷକ ନାମ ବିଦ୍ୟାଧର ପଧାନ ମୋତେ ବଜାଇବାକୁ ମନା କଲେ । କାହିଁକି ବଜାଇବି ନାହିଁ ବୋଲି ମୁଁ ତାଙ୍କୁ ପ୍ରଶ୍ନ କଲି । ସେ କହିଲେ ପାଖ କୋଠରୀ ମାନଙ୍କରେ ସ୍ତ୍ରୀ ଲୋକ (ଶିକ୍ଷୟିତ୍ରୀ) ମାନେ ଅଛନ୍ତି । ସ୍ତ୍ରୀ ଲୋକ ମାନେ ଥିଲେ ମୋର କଣ ଗଲା । ମୋ କୋଠରୀରେ ଥାଇ ମୁଁ ବଜାଉଛି । ଏଥିରେ କିଏ ବିଚଳିତ ହେଲେ ମୋ କିଛି ଯାଏ ଆସେ ନାହିଁ । ମୁଁ ସେହି ସବୁ କଥା ପ୍ରତି ପରବାଏ କରେନା । ଏତକ କହି ବଜାଇବାରେ ଲାଗିଲି ।

ଆମ କୋଠରୀକି ଛାଡ ୩ ଗୋଟି କୋଠରୀରେ ଦକ୍ଷିଣ ପଟକୁ ମହାରାଷ୍ଟ୍ରରୁ ଆସିଥିବା ଶିକ୍ଷକ ଶିକ୍ଷୟିତ୍ରୀ ମାନେ ରହୁଥାନ୍ତି । ମୋର ବଂଶୀ ନିନାଦନ ଶୁଣି ସେମାନଙ୍କ ମଧ୍ୟରୁ କଣ କେତେ ଶିକ୍ଷକ ଏବଂ ଶିକ୍ଷୟିତ୍ରୀ ମୋ କୋଠରୀକି ଆସି ମୋ ସମ୍ମୁଖରେ ଠୁଳ ହୋଇଗଲେ । ତାପରେ ମୋତେ ସସମ୍ମାନେ ତାଙ୍କ କୋଠରୀକି ଡାକି ନେଇ ସେଠାରେ ଯେଉଁ ସମ୍ମାନ ଦେଇ ମୋତେ ଅଭ୍ୟର୍ଥନା

କଲେ ତାହା ଦେଖି ବିଦ୍ୟାଧର ବାବୁ ଆଚମ୍ଭିତ ହୋଇଗଲେ । କାରଣ କୌତୁହଳ ବଶତଃ ସେ ମଧ୍ୟ ସେମାନଙ୍କ କୋଠରୀକି ମୋ ସହିତ ଆସିଥିଲେ ।

ଖଣ୍ଡିଏ ସତରଞ୍ଜି ବିଛା ହୋଇ ତାଉପରେ ଏକ ଗାଲିଚ୍ଚ ବିଛାଇ ଦିଆଗଲା । ତହିଁରେ ମୋ ପାଇଁ ଆଉ ଏକ ମସୃଣ ଛୋଟ ଆସନି ଦେଇ ତାଉପରେ ମୋତେ ବସିବାକୁ କୁହାଗଲା । ଏପଟେ ଷ୍ଟୋଭ ଜଳା ହୋଇ ମୋ ପାଇଁ ଚ୍ଚ ତିଆରିରେ ଜଣ କେତେ ଲାଗିଗଲେ । ମୋତେ କୁହାଗଲା ବଂଶୀ ବଜାଇବାକୁ ।

ଆନନ୍ଦ ଉତ୍‌ଫୁଲ୍ଲ ଚିତ୍ତରେ ମୁ ବିଭିନ୍ନ ସୁର ଦେଇ ବଂଶୀ ବଜାଇବାରେ ଲାଗିଲି । ଓଡ଼ିଆ ଗୀତ ମଧ୍ୟ ବୋଲିଲି । ଓଡ଼ିଆ ଗୀତର ତାଳେ ତାଳେ ବଂଶୀ ମଧ୍ୟ ବାଜିଲା । ତା ଦେଖି ସେମାନେ ମୁଗ୍‌ଧ ହୋଇଗଲେ । ବିସ୍‌କୁଟ, କେକ୍‌, ଚ୍ଚ ଆଦି ଦେଇ ମୋତେ ଆପ୍ୟାୟିତ କରିଥିଲେ ।

ବିଦ୍ୟାଧର ବାବୁ ଏସବୁ ଦେଖି ହତଭମ୍ବ ହେବା ସଙ୍ଗେ ସଙ୍ଗେ କହି ପକାଇଲେ ଏମାନେ ପ୍ରକୃତ ଜୀବନର ମୂଲ୍ୟ ବୁଝିଛନ୍ତି । ଏହିପରି ଭବେ ୩ ଦିନ ପର୍ଯ୍ୟନ୍ତ ସକାଳେ ଓ ସନ୍ଧ୍ୟାରେ ଏହି ପ୍ରକାର ଲଳିତ କଳା ବିଦ୍ୟାର ଉପାସନା ସେମାନଙ୍କର କୋଠରୀକୁ ଯାଇ କରିଥିଲି ।

ଶେଷ ଦିନ ସେମାନେ ଅର୍ଥାତ୍‌ ଜଣକେତେ ଶିକ୍ଷୟତ୍ରୀ ଗଙ୍ଗା ନଦୀରେ ନୌକାବିହାର ପାଇଁ ଆମନ୍ତ୍ରଣ କରିଥିଲେ । ତାଂକ ନିମନ୍ତ୍ରଣ ମୁ ଗ୍ରହଣ କରିଥିଲି । ଗଙ୍ଗା ନଦୀରେ ନୌକାବିହାର ବେଳେ ସେମାନେ ମୋର ଫଟୋ ମଧ୍ୟ ନେଇଥିଲେ ।

## ରଙ୍ଗମଞ୍ଚ ଏବଂ ତହିଁରେ ମୋର ଅଂଶଗ୍ରହଣ

ଆଗ କାଳରେ ଗାଁ ମାନଙ୍କରେ ଲୀଳା, ସୁଆଙ୍ଗ ଆଦିର ପ୍ରଚଳନଥାଏ । ୧୯୨୯ ଖ୍ରୀ:ରେ ରେମଣ୍ଡା ଗ୍ରାମରେ ସର୍ବପ୍ରଥମ ନାଟକର ପ୍ରଚଳନ କଥା ହୋଇଥିଲା । ରେମଣ୍ଡା ମି ଭ. ସ୍କୁଲର ତତ୍କାଳୀନ ହେଡ ପଣ୍ଡିତ ପତିତପାବନ ପଟ୍ଟନାୟକ ସ୍କୁଲରେ ସୁଦାମା ନାଟକ ପ୍ରଥମେ ଗଣେଶ ଚତୁର୍ଥୀ ବେଳେ ସ୍କୁଲ ପିଲାଙ୍କୁ ନେଇ କରାଇଥିଲେ । ତାହା ରେମଣ୍ଡା ଗ୍ରାମରେ ସର୍ବପ୍ରଥମ ଭବେ ଅଭିନୀତ ହୋଇଥିଲା । ତାକୁ ଦେଖି ସ୍ଥାନୀୟ ଶିକ୍ଷିତ ଯୁବକଗଣ ଏକ କ୍ଲବ ପ୍ରତିଷ୍ଠା

କରି ସେହି ବର୍ଷ ଆଶ୍ୱିନ ପୂର୍ଣ୍ଣମୀ ପୂର୍ବଦିନ 'ସାବିତ୍ରୀ' ନାମରେ ଏକ ନାଟକ ପ୍ରଦର୍ଶନ କରିଥିଲେ ।

ସେହି ବର୍ଷଠାରୁ ରେମଣ୍ଡା ଗ୍ରାମରେ ନାଟକ ପ୍ରଦର୍ଶନ ପ୍ରତିବର୍ଷ ୨ଟି କରି ନୂତନ ନାଟକ ଉକ୍ତ କ୍ଲବର ସଭ୍ୟଗଣ କରି ଆସିଥିଲେ ।

୧୯୩୨ ଖ୍ରୀ:ରେ ଗ୍ରୀଷ୍ମ ଅବକାଶ ବେଳେ ମୁ ମଧ୍ୟ ଉକ୍ତ କ୍ଲବର ସଭ୍ୟ ଭୁକ୍ତ ହୋଇ ନାଟକରେ ଜଣେ ଅଭିନେତା ଭବେ ଯୋଗଦାନ କରିଥିଲି । ବହୁ-ବର୍ଷ ଧରି ଉକ୍ତ ସଂସ୍ଥା ଦ୍ୱାରା ଥରେ ଗ୍ରୀଷ୍ମାବକାଶ ବେଳେ ଏବଂ ଆଉ ଥରେ ଦଶହରା ଛୁଟିବେଳେ ବିଭିନ୍ନ ନାଟକମାନ ଗାଁରେ ଅଭିନୀତ ହେଉଥିଲା ଏବଂ ମୁ ସେଥିରେ ମୁଖ୍ୟ ଅଂଶମାନ ଗ୍ରହଣ କରି ଆସୁଥିଲି । ସେହି ପରିପ୍ରେକ୍ଷୀରେ ମୁ ବିଭିନ୍ନ ସ୍ଥାନମାନଙ୍କରେ ଶିକ୍ଷକତା କରୁଥିବା ବେଳେ ମଧ୍ୟ ସେହି ସ୍ଥାନମାନଙ୍କରେ ହେଉଥିବା ନାଟକ ମାନଂକରେ ଅଂଶଗ୍ରହଣ କରି ଆସୁଥିଲି । ଏହି ପରିପ୍ରେକ୍ଷୀରେ ପ୍ରାୟ ଶତାଧିକ ଥର ମୁ ବିଭିନ୍ନ ସୌଖୀନ ରଙ୍ଗମଞ୍ଚ ମାନଂକରେ ଜନୈକ ଅଭି-ନେତା ଭବେ ଅବତୀର୍ଣ୍ଣ ହୋଇ ଥିବାର ମନେପଡେ । ବହୁ ନାଟକର ନିର୍ଦ୍ଦେଶକ ଭବେ ଶେଷରେ ମୋତେ କାର୍ଯ୍ୟ କରିବାକୁ ପଡୁଥିଲା ।

ମୁ ଯେଉଁ ସମୟର କଥା କହୁଛି ସେତିକି ବେଳେ ଆମ ଏ ଅଞ୍ଚଳରେ ନାରୀ ଭୂମିକାରେ ପୁରୁଷ ଲୋକେ ଅଭିନୟ କରୁଥାନ୍ତି । ବହୁ ନାଟକରେ ନାରୀ ଭୂମିକାରେ ମଧ୍ୟ ମୋତେ ଅଭିନୟ କରିବାକୁ ହୋଇଥିଲା ।

ସ୍କୁଲ ମାନଂକରେ ୧୫ ମିନିଟ୍ ମଧ୍ୟରେ ଏକାଙ୍କିକା ନାଟକ ଦେଖାଇ-ବାର ବିଭାଗୀୟମତେ ନିର୍ଦ୍ଦେଶ ଥିବାରୁ ମୋତେ ସେହି କାମ କରିବାରେ ନାଟକ ଲେଖିବାଠାରୁ ଆରମ୍ଭ କରି ନିର୍ଦ୍ଦେଶନା ଦେବା ଆଦି ସବୁ କିଛି କାମ କରିବାକୁ ପଡୁଥିଲା । ସ୍କୁଲରେ ସାଧାରଣ ଶିକ୍ଷାଦାନ କାମ କଲାବେଳେ ନାଟକୀୟ ଶୈଳୀରେ ମୁ ପ୍ରାୟଶଃ ଶିକ୍ଷାପ୍ରଦାନ କରୁଥିଲି । ଫଳରେ ଶିକ୍ଷାଦାନ କାମ ଅତି ଜୀବନ୍ତ ଭବେ ରୂପାୟିତ ହୋଇ ପାରୁଥିଲା ।

ଥରେ ଆମ ଗାଁରେ ୨ ଦଳ ମଧ୍ୟରେ ରାମଲୀଳା ସୁଆଙ୍ଗ ପ୍ରତିଯୋଗିତା ମୂଳକ ଭବେ ଗାଁର ଦୁଇ ଭାଗରେ ମାସାଧିକ କାଳ ନେଇ ଅଭିନୟ ଚାଲିଲା । ତା ପୂର୍ବରୁ ରାମଲୀଳା ସୁଆଙ୍ଗ ପ୍ରତିବର୍ଷ ଦୀର୍ଘ ୨୫/୩୦ ବର୍ଷ ଧରି ଖରା ମାସରେ ହୋଇ ଆସୁଥିଲା । ଶେଷରେ କେତେକ ବର୍ଷ ଉକ୍ତ ଦଳ ୨ ଭାଗ ହୋଇଗଲେ ଏବଂ ଗାଁର ୨ଟି ମୁଖ୍ୟ ସ୍ଥାନରେ ମାସାଧିକ କାଳ ଧରି ଅଭିନୟ କରିବାରେ ଲାଗିଲେ । ରାମଲୀଳାର ଶେଷରେ ମହୀରାବଣ ବଧ କରାଯିବାର କଥା । ଉଭୟ

ପକ୍ଷ ନନ୍ଦଲାଲ ତିଆରି ରାମଲୀଳା କରୁଥାନ୍ତି । ମହୀରାବଣ ବଧ ନନ୍ଦଲାଲ ତାଂକ ରଚନାରେ ସ୍ଥାନ ଦେଇ ନ ଥିବାରୁ ପ୍ରତିଯୋଗୀ ମାନଙ୍କ ମଧ୍ୟରୁ ଗୋଟିଏ ଦଳ ମନାପଡା ଗ୍ରାମକୁ ଯାଇ ପ୍ରେମଲାଲ ରଚିତ ମହୀରାବଣ ବଧ ଆଣି ଅଭିନୟ କରି-ବାରେ ଲାଗିଲେ ।

ଅପର ପକ୍ଷ ଏଥିରେ ହତାଶ ହୋଇ ଶେଷରେ ମୋ ନିକଟକୁ ଆସି ମହୀରାବଣ ବଧ ଲୀଳା ହିସାବରେ ଲେଖି ଦେବାକୁ ମୋତେ ଅନୁରୋଧ କଲେ । ତାଙ୍କ ଅନୁରୋଧ ରକ୍ଷା କରିବାକୁ ଯାଇ ମୋତେ ଉକ୍ତ ନାଟକଟି ଗୀତିନାଟ୍ୟ ଆକାରରେ ଲେଖି ଦେବାକୁ ୭ ଦିନ ସମୟ ଲାଗିଥିଲା । ଗୀତିନାଟ୍ୟଟି ୨ଟି ରାତିରେ ସମାପ୍ତ ହେଉ ଥିବାରୁ ତାକୁ ଉକ୍ତ ୨ ଦିନ ଧରି ପ୍ରଦର୍ଶନ କରୁଥିଲେ । ବହୁ ବର୍ଷ ଧରି ସେହି ନାଟକଟି ସେହି ଦଳ କରି ଆସି ଥିବାର ମୋର ଏବେ ମନେ ପଡୁଛି ।

ଆଉ ଏକ ଦଳଙ୍କ ପାଇଁ କର୍ଣ୍ଣବଧ ଗୀତିନାଟ୍ୟ ଲେଖି ଦେଇଥିଲି । ସେମାନେ ତାକୁ ୭।୮ ବର୍ଷ ଧରି ବିଭିନ୍ନ ଗ୍ରାମକୁ ଯାଇ ବ୍ୟବସାୟ ଭବେ ପ୍ରଦ-ର୍ଶନ କରି ଆସିଥିଲେ ।

୧୯୭୬ ସାଲରେ ମୁଁ ତବଡାରେ ଅବସ୍ଥାନ କରୁଥିବା ବେଳେ ସେଠା-କାର ନାଟ ଦଳ କର୍ତ୍ତୃକ ଅନୁରୁଦ୍ଧ ହୋଇ ଦର୍ପସଂହାର ନାମରେ ଏକ ଗୀତିନାଟ୍ୟ ଲେଖି ଦେଇଥିଲି । ସେମାନେ ମଧ୍ୟ ଉକ୍ତ ଗୀତିନାଟ୍ୟଟିକୁ କେତେ ବର୍ଷ ଧରି ଅଭିନୟ ପ୍ରଦର୍ଶନ କରୁଥିବାର ଜାଣିବାକୁ ପାଉଛି । ବହୁ ବ୍ୟକ୍ତିଙ୍କର ନାଟକ ପାଣ୍ଡୁଲିପି ମୁଁ ସଂଶୋଧନ କରି ଦେଇଛି ଅର୍ଥ ସଂପୂର୍ଣ୍ଣ ଭବରେ ଲେଖି ଦେଇଛି କହିଲେ ଚଳେ ।

## ମାମୁଁଘର ସ୍ମୃତି

ମୋର ମାମୁଁଘର ରେମଣ୍ଡାଠାରୁ ଦକ୍ଷିଣକୁ ୩ ମାଇଲ ଦୂର ଏକ ଗ୍ରାମ କୁଶନପୁରୀ ।

ସେଠାରେ ଗୋପାଳ ଦାଶ ନାମରେ ଜଣେ କୁଳୀନ ବ୍ରାହ୍ମଣ ପରିବାର ବହୁକାଳ ଧରି ବସବାସ କରି ରହିଛନ୍ତି । ତାଙ୍କର ପାଞ୍ଚଗୋଟି ପୁତ୍ର ଏବଂ ଦୁଇ-

ଗୋଟି କନ୍ୟା ସନ୍ତାନ । କନ୍ୟା ଦୁଇଜଣ ବଡ । ଯମୁନା ଓ ହେମା । ପାଞ୍ଚପୁତ୍ର ମଧ୍ୟରୁ ମନବୋଧ; ଅନିରୁଦ୍ଧ, ପୀତାମ୍ବର, ପୀତବାସ ଓ ମହାଦେବ ।

ମୋର ପିତା କୁଶନପୁରୀ ସ୍ଥିତ ଗୋପାଳ ଦାଶଙ୍କ ଜ୍ୟେଷ୍ଠା କନ୍ୟା ଯମୁନା ଦେବୀଙ୍କ ବିବାହ କରିଥିଲେ ।

ମୋର ମାତାମହୀ ଶ୍ରୀମତୀ ପ୍ରତିମା ଦେବୀ ଜଣେ ଅତି ସ୍ନେହବତ୍ସଳା ମହିଳା ଥିଲେ । ମୋର ମାଆଙ୍କ ମୃତ୍ୟୁ ପରେ ସେ ମୋତେ ଟେଲଷ୍ଟ ମନେକରି ମୁ ୭/୮ ବର୍ଷର ହୋଇଯିବା ପରେ ବର୍ଷରେ ଥରେ, ଦୁଇଥର ତାଂକ ଘରକୁ ନେଇ ୪/୫ ଦିନ ପାଏଁ ରଖୁଥାନ୍ତି । ସେହି ସମୟରେ ମୋର ମାମୁଁ ମାନଂକର ମୋ ପ୍ରତି ଯଥେଷ୍ଟ ସ୍ନେହ ଆଦର ଥିବାର ମୁ ଲକ୍ଷ୍ୟ କରି ଆସିଛି । ତାଙ୍କର କ୍ଷୁଦ୍ର ପରିସର ମଧ୍ୟରେ ସେମାନେ ଯାହା କିଛି ମୋତେ ଖାଇବାକୁ ଦେଉଥାନ୍ତି ତାହା-ଥିଲା ମୋ ପକ୍ଷେ ଅତି ମୂଲ୍ୟବାନ ଏବଂ ତୃପ୍ତିପ୍ରଦ ।

ମୋର ପାଞ୍ଚଗୋଟି ମାତୁଳ ମଧ୍ୟରୁ ଅନିରୁଦ୍ଧ ଦାଶ ଓ ତାଂକ ସ୍ତ୍ରୀ ସୁମିତ୍ରା, ଅନ୍ୟତମ ମାମୁଁ ପୀତାମ୍ବର ଦାଶ ଓ ତାଂକ ପତ୍ନୀ ଶଶିମୁଖୀଙ୍କ ସ୍ନେହ ଓ ଦୟା ମୋ ପ୍ରତି ଥିଲା ସର୍ବାଧିକ ।

ପୀତାମ୍ବର ମାମୁଁ ତାଂକର ପ୍ରାକ୍‌ଯୌବନ କାଳରେ କାଶୀ ଯାଇ ସେଠାରୁ ଜ୍ୟୋତିଷ ବିଦ୍ୟା ଶିକ୍ଷା କରି ଆସିଥିଲେ । ଏବେ ସେ ବରଗଡ ଅଞ୍ଚଳ ତଥା ଛତିଶଗଡରେ ଫଳିତ ଜ୍ୟୋତିଷ ନେଇ ନିରବଚ୍ଛିନ୍ନ ସାଧନା ଦ୍ୱାରା ଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ ବହୁ ଅର୍ଥ ଉପାର୍ଜନ କରି ନିଜର ଏକ ସ୍ୱତନ୍ତ୍ର ସ୍ଥାନ ମଧ୍ୟ ପ୍ରତିଷ୍ଠା କରି ପାରିଛନ୍ତି । ସେ ସ୍ୱକୀୟ ଉଦ୍ୟମରେ ନିଜ ଗ୍ରାମର ଗ୍ରାମାଧିପ ପଦକୁ ବି ଉନ୍ନୀତ ହୋଇ ପାରିଥିଲେ ।

ଗ୍ରାମରେ ମହାଦେବ ମନ୍ଦିର, ଗ୍ରାମଦେବୀ ମନ୍ଦିର ନିର୍ମାଣ ତଥା ବିଦ୍ୟା-ଳୟ ସ୍ଥାପନା ଆଦିରେ ତାଂକର ଅବଦାନ ଉଲ୍ଲେଖନୀୟ ଘଟଣା ଅଟେ । ଏ ପ୍ରସଙ୍ଗରେ ୧୯୫୪ ସାଲର ଏକ ଘଟଣା ମୋର ମନେ ପଡେ ।

ସେତେବେଳେ ତାଂକ ଗ୍ରାମରେ ନୂଆ ହୋଇ ଏକ ସ୍କୁଲ ବର୍ଷେ କି ଦୁଇବର୍ଷ ହେବଖୋଲା ଯାଇଥାଏ । ଏକ ଭୂଲଘରେ ସ୍କୁଲକାମ ହେଉଥାଏ । ନୂତନ ସ୍କୁଲଘରଟାଏ ପକ୍କା ଆକାରରେ ତୋଳିବା ପାଇଁ ସମସ୍ତଙ୍କର ସହଯୋଗ ପାଇଁ ସେ ଏକ ଶିକ୍ଷକ ସମ୍ମିଳନୀ ଆବାହନ କରିଥାନ୍ତି । ସ୍କୁଲର ସେକ୍ରେଟେରୀ ତଥା ମୁଖ୍ୟ ଉଦ୍ୟୋକ୍ତା ରୂପେ ସେ ଉକ୍ତ ସମ୍ମିଳନୀରେ ସଭପତି ଥାନ୍ତି । ସେଦିନ ମୋତେ ମୁଖ୍ୟବକ୍ତା ରୂପେ ଅବତୀର୍ଣ୍ଣ ହେବାକୁ ପଡ଼ଥିଲା । ଉକ୍ତ ସମ୍ମିଳନୀରେ ସେଦିନ ମୁ

ଏକ ଉଦ୍‌ବୋଧନ ମୂଳକ ଭାଷଣ ଦେବାକୁ ଯାଇ ଇତିହାସ କ'ଣ ତାରି ଉପରେ ଏକ ପ୍ରାଣସ୍ପର୍ଶୀ ଭାଷଣ ମୋର ସ୍ୱର୍ଗତା ଜନନୀ ଯମୁନା ଦେବୀ ଯିଏ କି ଦିନେ ସେହି ଗ୍ରାମର ଜନୈକା ଝିଅ ରୂପେ ଜନ୍ମି ମୋ ପରି ପୁଅ ଜନ୍ମ କରିଥିଲେ ସେହି କଥା ଉପରେ ଦୀର୍ଘ ସମୟ ଧରି ଯେଉଁ ଭାଷଣ ଦେଇଥିଲି ତାହା ଶୁଣି ସଭାରେ ଉପସ୍ଥିତ ଆବାଳବୃଦ୍ଧବନିତାଙ୍କ ଆଖିରୁ ଧାର ଧାର ଲୁହ ବୋହି ଯାଇଥିଲା । ତାହା ଏତେଦୂର ପ୍ରାଣସ୍ପର୍ଶୀ ତଥା ହୃଦୟବିଦାରକ ହୋଇଥିଲା ଯେ ଏବେ ମଧ୍ୟ ସେହି ସ୍ମୃତି ଅପାଶୋର ହୋଇ ସେହି ଗ୍ରାମରେ ରହି ଆସିଅଛି ।

ବକ୍ତବ୍ୟର ସମାପ୍ତି ପରେ ସ୍ୱେଚ୍ଛାକୃତ ଭାବେ ବହୁ ଅର୍ଥଦାନର ପ୍ରତିଶ୍ରୁତି ମିଳିଥିଲା । ଫଳସ୍ୱରୂପ ତିନି କୋଠରୀ ବିଶିଷ୍ଟ ଏକ ପକ୍‌କା ସ୍କୁଲଘର ନିର୍ମାଣ କରଯାଇ ପାରିଥିଲା ।

ମୋର ପୁଣ୍ୟଯଶା ସେହି ମାତୁଳ ଶ୍ରୀଯୁକ୍ତ ପୀତାମ୍ବର ଦାଶ ଆଜି ଜୀବିତ ଅଛନ୍ତି । ତାଂକର ସ୍ନେହ ଏବଂ ଆଶୀର୍ବାଦ ମୋ ଉପରେ ଅମାପ ରହିଥିବାର ମୁଁ ଅନୁଭବ କରୁଅଛି ।

# ସାହିତ୍ୟ ସାଧନା ପଥେ ପ୍ରେରଣା ଲାଭ

ଓଡ଼ିଆ ସାହିତ୍ୟ ପ୍ରତି ମୋର ଅନୁରାଗ ପିଲାଟି ଦିନରୁ ରହି ଆସିଥାଏ । ମିଡ଼ିଲ ସ୍କୁଲରେ ପଢୁଥିବା ସମୟରେ ବିଭିନ୍ନ ପ୍ରକାର ପୁସ୍ତକ ପଢ଼ିବାର ସ୍ପୃହା ମୋ ମନରେ ଜାତ ହୋଇଥିଲା । ୫ମ ଶ୍ରେଣୀରେ ମୁଁ ପଢୁଥିବା ବେଳେ ମୋର ଶ୍ରେଣୀଶିକ୍ଷକ ନଟବର ସାହୁ, ଗ୍ରାମ ତୋରା, ଏ ଦିଗରେ ମୋତେ ପ୍ରେରଣା ପ୍ରଦାନ କରିଥିଲେ । ସାହିତ୍ୟ କୁସୁମ ୨ୟ ଭାଗ ସେତେ ବେଳେ ଆମର ସାହିତ୍ୟ ପାଠ୍ୟ-କ୍ରମରେ ରହିଥାଏ । ଉକ୍ତ ପାଠ୍ୟ ପୁସ୍ତକରେ ଚିଲିକା ହ୍ରଦ ଏବଂ ପ୍ୟାରିମୋହନ ଆଚାର୍ଯ୍ୟ ଏହି ଦୁଇଗୋଟି ପାଠକୁ ମୁଁ ବିଶେଷ ଭଲ ପାଉଥାଏଁ । ଶିକ୍ଷକ ମହାଶୟ ଚିଲିକା ହ୍ରଦ ପାଠ ପଢ଼ାଇବା ବେଳେ ଉକ୍ତ ପାଠର ଶେଷ ଭାଗରେ ଲେଖା ଥିବା ଏକ ବିଷୟ ଯଥା- କବିବର ରାଧାନାଥ ଚିଲିକାକୁ ଦେଖି 'ଶୋକ ପାଶୋର ଅପ୍‌ସରା ଭବନ' ବୋଲି ବର୍ଣ୍ଣନା କରି ଅଛନ୍ତି-ଏହି ବିଷୟ ସେ ବୁଝାଇବାକୁ ଯାଇ ଚିଲିକା ହ୍ରଦର ତଟବର୍ତ୍ତୀ ଅଞ୍ଚଳ ତଥା ହ୍ରଦଟିରେ ଭାସୁଥିବା ମାଳ ମାଳ ପକ୍ଷିଗଣଙ୍କର ଯେଉଁ ଚିତ୍ର ଆମ ଆଗରେ ଥୋଇ ଦେଲେ ତାହା ଶୁଣି ମୋର କୈଶୋର ମନ,

କବିଙ୍କର ଗୁଣ, ବୈଶିଷ୍ଟ୍ୟ ତଥା ପ୍ରତିଭା ପ୍ରତି ଆକୃଷ୍ଟ ହୋଇ ପଡ଼ିଲି । ଯୋଗକୁ ସେତେବେଳେ ଆମ ଘରେ 'ରାଧାନାଥ ଗ୍ରନ୍ଥାବଳୀ' ବହିଟାଏ ଥାଏ । ଉକ୍ତ ପୁସ୍ତକଟି ମୋର ସ୍ୱର୍ଗତ ପିତା ଶ୍ୟାମସୁନ୍ଦର ଦାଶ ସେ ନିଜେ ପଢ଼ିବା ପାଇ ମଗାଇ ଥିଲେ । ମୃତ୍ୟୁ ଶଯ୍ୟାରେ ଥାଇ ସେ ବହିଟିର ପାର୍ଶଲ ଯାହା କଟକରୁ ଭି. ପି. ଯୋଗେ ଆସିଥିଲା ତାକୁ ମୁକୁଲାଇ ଥିଲେ କିନ୍ତୁ ପାର୍ଶଲ ଫିଟାଇ ପୁସ୍ତକଟିକୁ ଦେଖିବା ଆଗରୁ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା । ସେ ମରି ଯିବାରୁ ପାର୍ଶଲଟି ସେହି ପରି ଅଫିଟା ହୋଇ ଘରେ ପଡ଼ ରହିଥାଏ । ଦିନେ ଆମେ ଦୁଇ ଭାଇ ତାକୁ ଫିଟାଇ ଥିଲୁ ତାଙ୍କ ମୃତ୍ୟୁର ବହୁ ବର୍ଷ ପରେ ।

ଶିକ୍ଷକ କହିଲେ ତୁମ୍ଭେ ମାନେ ବଡ ହେଲେ ଚିଲିକାକୁ ଯିବ ଏବଂ ଉକ୍ତ ଶୋଭା ଦେଖି ଆସିବ...... ।

ଭଲ କରି ପାଠ ପଢ଼ । ତୁମ୍ଭେ ବି ତାଙ୍କ ପରି କବି ହୋଇ ପାରିବ ।

କବି ଅର୍ଥ କଣ ବୋଲି ମୁ ଶିକ୍ଷକଙ୍କୁ ପଚାରି ଥିଲି । କବି ଶବ୍ଦର ଅର୍ଥ ସେ ସେଦିନ ଯାହା ବୁଝାଇ ଦେଇଥିଲେ ସେହି କଥା ଏବେ ମଧ୍ୟ ମୋ ମନରେ ରେଖାପାତ କରିଛି ।

ରେମଣ୍ଡା ମି. ଭ. ସ୍କୁଲରେ ସେତେବେଳେ ୪ ଗୋଟି ଆଲମିରାରେ ଲାଇବ୍ରେରୀ ବହି ଭର୍ତ୍ତି ହୋଇ ରହିଥାଏ । ଆମ ଶ୍ରେଣୀ ଶିକ୍ଷକ ଲାଇବ୍ରେରୀ ଭାର ନେଇଥାନ୍ତି । ପ୍ରତି ସପ୍ତାହରେ ପ୍ରତି ପିଲା ଯେପରି ଲାଇବ୍ରେରୀ ବହି ନେବେ ଏବଂ ପଢ଼ିବେ ସେଥି ପାଇଁ କଠୋର ବ୍ୟବସ୍ଥା ଥାଏ । କିଏ କି ପ୍ରକାର ପୁସ୍ତକ ନେଇ ପଢ଼ ବୁଝି ପାରିବ ଶିକ୍ଷକ ତାହା ଜାଣି କରୁଥାନ୍ତି । ମୋର ମନ ଜାଣି ସେ ମୋତେ ବାଛି ବାଛି କରି ପୁସ୍ତକ ଯଥା ଉତ୍କଳ କାହାଣୀ, ଗର୍ଣ୍ଣପୁଅ ଅନନ୍ତା, ଆରବ୍ୟ କାହାଣୀ, ପାରସ୍ୟ କାହାଣୀ, ଗୁଲେବକାଓଲି, ଆଦି ବହିମାନ ଦେଉଥିଲେ । ମୁ ଯେସବୁ ବହି ଗୁଡକ ପଢୁଥାଏ ଏବଂ ଶିକ୍ଷକଙ୍କୁ ତାହା ଫେରାଇବା ବେଳେ ସେ ବହିପଢ଼ା ବିଷୟ ନେଇ ସଂପୃକ୍ତ ବହିମାନଂକରୁ ପ୍ରଶ୍ନମାନ ମଧ୍ୟ ପଚାରୁଥାନ୍ତି । ତେଣୁ ପୁସ୍ତକ ପାଠରେ କାହାରି ଫାଙ୍କି ଦେବାର ଉପାୟ ନ ଥାଏ ।

ମୁ ପଞ୍ଚମ ଶ୍ରେଣୀ ପଢୁଥିବା ଅଧା ସମୟ ପର୍ଯ୍ୟନ୍ତ ରୀତିମତ ଦାନ୍ତ ଘଷୁ ନ ଥିଲି । ମଧ୍ୟାହ୍ନ ଭୋଜନ ବେଳେ ବାସି ପଖାଳ ଖାଉଥିଲି । ବାସି ପଖାଳ ନ ଦେଲେ ମୋତେ କାନ୍ଦ ମାଡୁଥିଲା । ନଟବର ବାବୁ ଦାନ୍ତ ଘଷିବା ପ୍ରତି ଜୋର ଦେଲେ ଏବଂ ବାସି ପଖାଳ ନ ଖାଇବା ପାଇଁ ଶକ୍ତ ତାଗିଦ୍ କରି ଦେବାରୁ ସେହି ଦିନଠାରୁ ମୁ ଦାନ୍ତ ଘଷି ଆସୁଛି ଏବଂ ଗରମ ଭାତ ବା ପଖାଳ ଖାଇବା ଅଭ୍ୟାସ କରି ଆସିଛି ।

ଶିକ୍ଷକଙ୍କର ପଦେ କଥାର ମୂଲ୍ୟ କେତେ ଏବଂ ତାହା ପିଲାଙ୍କ ଉପରେ କି ପ୍ରକାର ପ୍ରଭାବ ପକାଏ ତାହା ଉପରୋକ୍ତ ଘଟଣାରୁ ସହଜରେ ଉପଲବ୍ଧ କରି ହେବ ।

୬ଷ୍ଠ ଶ୍ରେଣୀର ଶିକ୍ଷକ ହଡ଼ାରୁ ପଧାନ କ୍ଲାସର ପଠିତବ୍ୟ ପାଠ ଗୁଡ଼କୁ ପଢାଇବାରେ ତାଂକର ନିଷ୍ଠା ଥାଏ ସମଧିକ । ଆଜିକାଲି ଓଡ଼ିଆ ପଦ୍ୟ ଯାହା ମେଟ୍ରିକ କ୍ଲାସରେ ପଢା ହେଉଛି ସେତେବେଳେ ତାହା ୬ଷ୍ଠ ଶ୍ରେଣୀରେ ପଢା ହେଉଥାଏ । ଓଡ଼ିଆ ବ୍ୟାକରଣ ପ୍ରବେଶ ବୋଲି ଖଣ୍ଡିଏ ବ୍ୟାକରଣ ବହି ରାଧା- ନାଥ ରାୟ ଲେଖିଥାନ୍ତି । ତାକୁ ଆମେ ୬ଷ୍ଠ ଓ ୭ମ ଶ୍ରେଣୀରେ ପଢୁଥାଉଁ ।

ହଡ଼ାରୁ ବାବୁ ଯେଉଁ ବ୍ୟାକରଣ ମୋତେ ୬ଷ୍ଠ ଶ୍ରେଣୀରେ ପଢାଇଥିଲେ ତାହା ଏବେବି ମୋ ମନରୁ ପାଶୋର ଯାଇନାହିଁ । ଉପସର୍ଗ ୨୦ଟି ଦିନେ ମୁଁ କହି ପାରି ନ ଥିବାରୁ ତାଂକଠୁ ଯେଉଁ ଚଟକଣା ଖାଇଥିଲି ଆଖିରୁ ମୋର ନିଆଁ ଝୁଲ ବାହାରି ପଡ଼ିଥିଲା । ସେହି ମାଡ଼ର ପ୍ରଭାବରୁ ଉପସର୍ଗ କୋଡ଼ିଏ ଗୋଟି ଏବେବି ମୁଁ ଅକ୍ଳେଶରେ କହି ଦେଇ ପାରୁଛି ।

୭ମ ଶ୍ରେଣୀର ଶିକ୍ଷକ ପତିତପାବନ ପଟ୍ଟନାୟକ ସ୍କୁଲପାଠ୍ୟ ବ୍ୟତୀତ ରାଧାନାଥ ଗ୍ରନ୍ଥାବଳୀରୁ ଚିଲିକା, ତୁଳସୀ ସ୍ତବକ, ଦରବାର କବିତା ଗୁଡ଼ିକ ପଢାଉ ଥିଲେ । କଠିନ ଶବ୍ଦ ଗୁଡ଼ିକର ଅର୍ଥ ସେ ଯାହା ସେତେବେଳେ କହି ଦେଉଥିଲେ ସେଥିମଧ୍ୟରୁ ଅଧିକାଂଶ ଏବେବି ମୋର ମନେ ଅଛି ।

କବିବର ଚିନ୍ତାମଣି ମହାନ୍ତିଙ୍କ ଲେଖାକୁ ସେ ବିଶେଷ ସମ୍ମାନ ଦେଉଥାନ୍ତି । ତାଂକର ଲେଖା ବିଶ୍ୱଚିତ୍ର, ସଂଯମ ଶିକ୍ଷା, ପତ୍ରପୁଷ୍ପ ସେ ଯାହା ସେତେବେଳେ ପଢାଇଥିଲେ ତହିଁର ପ୍ରତ୍ୟେକ ଅଂଶ ମୋ ମନରୁ ପାଶୋର ଯାଇନାହିଁ ।

ସପ୍ତମ ଶ୍ରେଣୀ ପାସ ପରେ ମୁଁ କାଳିଦାସଙ୍କ ମୂଳ ସଂସ୍କୃତ ଲେଖା ରଘୁବଂଶ ଯାହା ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଓଡ଼ିଆ ଭାଷାରେ ଭାଷାନ୍ତରିତ କରି- ଥିଲେ ତାକୁ ଅତି ଯତ୍ନର ସହିତ ପାଠ କରିଥିଲି । କାଳିଦାସ ସନ୍ଦର୍ଭ ନାମରେ ଏକ ପୁସ୍ତକ ପଣ୍ଡିତ କୁଳମଣି ଦାଶ ଯାହା ସମ୍ପାଦନ କରିଥିଲେ ତାହା ମୋର ନିତ୍ୟ ପାଠ୍ୟ ପୁସ୍ତକ ହୋଇ ସେତେବେଳେ ରହିଥିଲା । କାଳିଦାସଙ୍କ ବର୍ଣ୍ଣନା ପାଟକରେ ମୁଁ ଅଭିଭୂତ ହୋଇ ଯାଉଥିଲି । ସେହି ଅନୁଧ୍ୟାନ ସାହିତ୍ୟ ସାଧନା କରିବା ଦିଗରେ ମୋତେ ବିଶେଷ ପ୍ରେରଣା ପ୍ରଦାନ କରିଥିଲା । ପଣ୍ଡିତ ଜଗଦୀଶ ରଥଙ୍କୁ ଟ୍ରେନିଂ ସ୍କୁଲରେ ଗୁରୁ ଭାବରେ ପାଇ ମୁଁ ନିଜକୁ ଧନ୍ୟ ମନେ କରିଥିଲି । ତାଂକ ମୁଖରୁ ରାଧାନାଥ ରାୟ, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ଚନ୍ଦ୍ରମୋହନ

ମହାରଣା ଆଦିଙ୍କ ବହୁବିଧ କଥାଶୁଣି ସାହିତ୍ୟ ପ୍ରତି ନିରବଚ୍ଛିନ୍ନ ସାଧନା କରିବାକୁ ପ୍ରୟାସୀ ହୋଇଥିଲି । ୧୯୩୪ ସାଲରୁ ହିଁ ମୋର ସାହିତ୍ୟ ସାଧନାର ମାର୍ଗ ଉନ୍ମେଷ ଘଟିଥିଲା ।

ଟ୍ରେନିଂ ସ୍କୁଲରେ ଥିବାବେଳେ ମୁ ଯେଉଁ ପ୍ରବନ୍ଧ ଗୁଡ଼କ ଲେଖୁଥିଲି ସେଗୁଡ଼କ ବିଦ୍ୟାଳୟ ଗତ ପ୍ରବନ୍ଧ ଲେଖାଠାରୁ ଭିନ୍ନ ଧରଣ ହେଉଥିଲା । ମୁ ଯାହା କିଛି ଲେଖୁଥାଏ ସେଥିରେ ରହୁଥାଏ ସାହିତ୍ୟର ଉନ୍ନତ ଶୈଳୀ, ବର୍ଣ୍ଣନା ଚତୁରୀ, ଭଷାର ଗାରିମା ତଥା ଉନ୍ନତ ଶବ୍ଦଗଢ଼ି । ତାକୁ ପଢ଼ି ଶ୍ରୀଯୁକ୍ତ ରଥ ଆପଣେ ବିଶେଷ ଖୁସି ହେଉଥାନ୍ତି । ଅନ୍ୟାନ୍ୟ ପିଲଙ୍କୁ ସେହି ଢଙ୍ଗରେ ଲେଖିବା ପ୍ରତି ଉତ୍ସାହିତ କରିବା ଅଭିପ୍ରାୟରେ ମୋ ଲେଖା ଗୁଡ଼କ ତାଂକ ଆଗେ କ୍ଲାସରେ ପଢ଼ି ଦେଉଥାନ୍ତ ମଧ୍ୟ । ସେସବୁରୁ ମୁ ବିଶେଷ ପ୍ରେରଣା ଲଭୁଥିଲି ଏବଂ ଆହୁରି ଉନ୍ନତ ଧରଣ ତଥା ପରିମାର୍ଜିତ ଆକାରରେ ମୋ ଲେଖା ଗୁଡ଼କ ଲେଖି ତାଂକ ଆଗେ ଉପସ୍ଥାପନ କରିବା ଅର୍ଥ ଲେଖା ଦିଗରେ ମୁ ତାଂକର ସମର୍ଥନ ପ୍ରକାରନ୍ତରେ ବାଞ୍ଛା କରୁଥିଲି ।

ମୁ ଯେତେବେଳେ ଯାହା କିଛି ଲେଖୁଥିଲି ତାକୁ ସମାଲୋଚନା ତଥା ବିଶ୍ଳେଷଣାତ୍ମକ ଢଙ୍ଗରେ ଲେଖୁଥାଏ ବୋଲି ତାର ମାନ ନିର୍ଦ୍ଧାରଣ କରିବାକୁ ଯାଇ ସେ ତାରି ଉପରେ ଉତ୍ତମ, ଅତ୍ୟୁତ୍କୃଷ୍ଟ; ଚମତ୍କାର, ଲେଖକଂକ ଲେଖନୀ ରଚନା ପ୍ରଶଂସାର୍ହ' ଏପରି ମନ୍ତବ୍ୟମାନ ପ୍ରଦାନ କରୁଥାନ୍ତି । ଏହିପରି ଭବେ ମୁ ମୋର ସାହିତ୍ୟ ସାଧନାର ମାର୍ଗକୁ କ୍ରମେ ପ୍ରଶସ୍ତରୁ ପ୍ରଶସ୍ତତର ଅବସ୍ଥାରେ ଥୋଉଥିଲି ।

## ସାହିତ୍ୟ କୃତି ତଥା ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ସ୍ୱୀକୃତି ଲାଭ

୧୯୩୫ ଖ୍ରୀ: ରେ କତିପୟ ସାହିତ୍ୟ ପ୍ରେମୀ ମାନଙ୍କୁ ନେଇ ଏକ ହାତ-ଲେଖା ମାସିକ ପତ୍ରିକା ବାହାର କରିବା ଉଦ୍ଦେଶ୍ୟରେ ଏକ ବିଧିବଦ୍ଧ ଯୋଜନା ରେମଣ୍ଡା ସୋମଲେଶ୍ୱରୀ କ୍ଲବ ପକ୍ଷରୁ କରଯାଇ ଥିଲା । କ୍ଲବ ପକ୍ଷରୁ ସେଥି ପାଇଁ ଏକ ସବ୍‌କମିଟି ୫ ଜଣ ସଭ୍ୟଙ୍କୁ ନେଇ ଗଠନ କରଗଲା । ଉକ୍ତ କମିଟିରେ ମୁ ଆବାହକ, ସଂଯୋଜକ ରୂପେ ନିର୍ବାଚିତ ହୋଇଥିଲି । 'ମିହିର' ନାମରେ ଏକ

ମାସିକ ହାତଲେଖା ପତ୍ରିକା ପ୍ରତି ମାସରେ ବାହାର କରିବା ସ୍ଥିର କରି କମିଟି ପତ୍ରିକାଟିର ସଂପାଦନା ଦାୟିତ୍ୱ ମୋ ଉପରେ ଅର୍ପଣ କରିଥିଲେ । ୧୯୩୫ ସାଲର ମାର୍ଚ୍ଚ ମାସରୁ ପତ୍ରିକାଟି ଆତ୍ମପ୍ରକାଶ କରିଥିଲା ଏବଂ ତାହା ୩ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ପତ୍ରିକାଟିକୁ ସଂପାଦନ କରିବାକୁ ଯାଇ ନିଜ ହାତରେ ମୁଁ ତାର ସମସ୍ତ ବିଭବ ଉଦ୍ଧୃତ କରିବା ସଙ୍ଗେ ସଙ୍ଗେ ସଂପାଦକୀୟ ଲେଖା ମଧ୍ୟ ବିଭିନ୍ନ ଦୃଷ୍ଟି କୋଣରୁ ଲେଖୁଥିଲି । ପତ୍ରିକାଟିର ପ୍ରସାର ପ୍ରଥମେ ଅତାବିରା ଏବଂ ଭେଡେନ ଥାନାରେ ସୀମିତ ପରିସର ମଧ୍ୟରେ ଆବଦ୍ଧ ରହି କ୍ରମେ ତାହା ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ମଧ୍ୟ ସଂପ୍ରସାରିତ ହୋଇ ବିପୁଳ ଜନ ସମର୍ଥନ ଲାଭ କରିଥିଲା । ତିନି-ବର୍ଷ ପର୍ଯ୍ୟନ୍ତ ପତ୍ରିକାଟି ସୁରଖୁରରେ ଚାଲିବା ପରେ କେତେ ଜଣ ଈର୍ଷାଳୁ ବ୍ୟକ୍ତି ତା ବିରୁଦ୍ଧରେ କଟୁ ମନ୍ତବ୍ୟ ମାନ ପ୍ରକାଶ କରିବା ଫଳରେ ଶେଷରେ ତାହା ବନ୍ଦ ହୋଇଗଲା । ୧୯୩୯ ସାଲରେ ମୋର ପ୍ରଥମ ଲେଖା 'କୁମୁଦ୍ୱତୀ' କାବ୍ୟ ପୁସ୍ତକଟି ପ୍ରକାଶିତ ହୋଇଥିଲା । ପୁସ୍ତକଟି ପ୍ରକାଶିତ ହେବା ପରେ ମୋର ଗୁରୁଦେବ ପଣ୍ଡିତ ଜଗଦୀଶ ରଥଙ୍କୁ ତାହା ପ୍ରଥମେ ଭକ୍ତି ଶ୍ରଦ୍ଧାଞ୍ଜଳି ସ୍ୱରୂପ ପ୍ରଦାନ କରିଥିଲି । ଗୁରୁଦେବ ମହୋଦୟ ତାକୁ ପଢ଼ି ଖୁସି ହୋଇଥିଲେ ଏବଂ ମୋ ନିକଟକୁ ଏକ ପତ୍ର ଲେଖି ମୋର ଉତ୍ସାହ ବର୍ଦ୍ଧନ କରିଥିଲେ । ପତ୍ରଟି ହେଉଛି—

ବରଗଡ଼

ତା ୨୬ । ୧୧ । ୩୯

ସ୍ନେହର ବୀରବର,

ତୁମ୍ଭ ଦ୍ୱାରା ରଚିତ କୁମୁଦ୍ୱତୀ ପୁସ୍ତକଟି ପାଇ ଖୁସି ହେଲି । ପୁସ୍ତକଟିକୁ ଆମୂଳ ଚୂଳ ପଢ଼ିଗଲି । ଲେଖାରେ କୌଣସି ତ୍ରୁଟୀ ନାହିଁ । ବେଶ୍ ଭଲ ହୋଇଛି । ଲେଖା ଦିଗରେ ରୀତିମତ ଲାଗି ରହିଲେ ଆହୁରି ଉନ୍ନତତର ଲେଖା ମାନ ବାହାରିବ । ଭଗବାନ ତୁମ୍ଭର ସହାୟକ ହେବେ ।

ମୋର ଆଶୀର୍ବାଦ ନେବ । ରହୁଛି ।

ଶୁଭଚିନ୍ତକ

ସ୍ୱାଃ ନଃ ଜଗଦୀଶ ରଥ

ପତ୍ରଟି ପାଇ ତାକୁ ମୁଣ୍ଡରେ ଛୁଆଁଇ ଦେଇ ଯତ୍ନରେ ସାଇତି କରି ରଖି ଦେଲି । ସେତେବେଳେ ଜାଣି ନ ଥିଲି ଯେ ପତ୍ରଟି ଆଜି ୫୦ ବର୍ଷ ପରେ ଏପରି ଭାବେ ଉପଯୋଗ ହେବ ବୋଲି । ଯାହା ହେଉ ଆଜି ତହିର ଯଥାର୍ଥ ସତ୍ ବ୍ୟବହାର କରି ବିଶେଷ ହର୍ଷ ଅନୁଭବ କରୁଅଛି ।

୧୯୪୪ ଖ୍ରୀ: ରେ ଭେଡେନ ଥାନା ଅତାବିର ଥାନା; ଓ ଧମା ଥାନାରେ କାର୍ଯ୍ୟ କରୁଥିବା ଶିକ୍ଷକ ଗଣଙ୍କୁ ନେଇ ଏକ ପ୍ରବନ୍ଧ ପ୍ରତିଯୋଗିତା ହୋଇଥିଲା । ପ୍ରବନ୍ଧଟିର ନାମ ଥିଲା 'ଶିକ୍ଷା ଓ ଶିକ୍ଷକ' । ଉକ୍ତ ପ୍ରତିଯୋଗିତାରେ ମୁଁ ଯୋଗଦାନ କରିଥିଲି । ମୋର ପ୍ରବନ୍ଧ ଗୋଟିକ ୨ୟ ସ୍ଥାନ ଲାଭ କରି ଥିବାରୁ ମୋତେ ସେଥି ପାଇଁ ଏକ ରୌପ୍ୟପଦକ ମିଳିଥିଲା । ସେଥି ପାଇଁ ତତ୍କାଳୀନ ସ୍କୁଲ ସ: ଇ: ନିମ୍ନ-ମତେ ମୋତେ ଏକ ପତ୍ର ଲେଖି ଜଣାଇ ଦେଇଥିଲେ ।

ଶ୍ରୀଯୁକ୍ତ ବୀରବର ଦାଶ, ଶିକ୍ଷକ, ରେମଣ୍ଡା ବାଳକ ସ୍କୁଲ

ମହାଶୟ,

'ଶିକ୍ଷା ଓ ଶିକ୍ଷକ' ପ୍ରବନ୍ଧ ପ୍ରତିଯୋଗିତାରେ ଆପଣ ଏକ ରୌପ୍ୟ ପଦକ ପାଇ ଅଛନ୍ତି । ତାକୁ ପତ୍ର ଜରିଆରେ ଆପଣଙ୍କୁ ବିଦିତ କରାଇ ଦେବାପାଇଁ ଶ୍ରୀମାନ ଓ୍ୟାର୍ଡସ୍, ଡେପୁଟୀ କଲେକ୍ଟର ମହୋଦୟ ମୋ ପାଖକୁ ଲେଖି ଅଛନ୍ତି ।

ତେଣୁ ଆପଣଙ୍କୁ ଜଣାଇ ଦିଆଗଲା ।

2-2-44 } Sd/- L. M Patl
S. I. of Schools, Attabira Circle

୧୯୪୭ ସାଲ ଡସମ୍ବର ମାସରେ ଉତ୍କଳୀୟ ବ୍ରାହ୍ମଣ ସମାଜର ଏକ ବଡ ଧରଣର ସଭ ବରଗଡ ନିକଟ କଟାପାଲି ଗ୍ରାମରେ ହେବାର ପରିକଳ୍ପନାରେ ଏକ ପ୍ରବନ୍ଧ ପ୍ରତିଯୋଗିତା କରା ଯାଇଥିଲା । ଉକ୍ତ ପ୍ରତିଯୋଗିତାରେ ସର୍ବମୋଟ ୧୪୨ ଜଣ ପ୍ରତିଯୋଗୀ ଯୋଗଦାନ କରିଥିଲେ ।

ତା ୨୬ । ୧୨ । ୪୭ଇ: ଦିନ ଉକ୍ତ ସଭ କଟାପାଲି ଗ୍ରାମରେ ବିରାଟ ଆକାରରେ ଅନୁଷ୍ଠିତ ହୋଇଥିଲା । ପାଞ୍ଚ ହଜାରରୁ ଅଧିକ ବ୍ରାହ୍ମଣ ତହିଁରେ ଯୋଗଦାନ କରିଥିଲେ ।

ପ୍ରବନ୍ଧ ଗୁଡ଼କ ଯାଞ୍ଚ କରି ସେଥିରେ ୧ମ, ୨ୟ ଓ ୩ୟ ସ୍ଥାନ ଲାଭ କରିଥିବା ବ୍ୟକ୍ତି ମାନଙ୍କୁ ଯଥାକ୍ରମେ ଟ୨୦, ଟ୧୫ ଓ ଟ୧୦ ଦେବାର କଥା ଥାଏ ।

ଉକ୍ତ ସଭରେ ମୋର ପ୍ରବନ୍ଧଟି ୨ୟ ସ୍ଥାନ ଲାଭ କରିଥିଲା । ସେଥି-
ପାଇଁ ସଭରେ ମୋତେ ସଭପତି ସ୍ୱହସ୍ତରେ ଟ୧୫ ପ୍ରଦାନ କରିଥିଲେ । ବିପୁଳ ଜନ ସମାବେଶରେ ଯେତେବେଳେ ମୁଁ ଉକ୍ତ ଟଙ୍କା ସଭପତି ମହୋଦୟଙ୍କ ହସ୍ତରୁ ଗ୍ରହଣ କରି ଆଣିଲି ଉପସ୍ଥିତ ଜନ ଗହଳି ସେତେବେଳେ ଯେଉଁ କରତାଳି ଧ୍ୱନି ଦେଇଥିଲେ ତାହା ଶୁଣି ମୋର ଛାତି କୁଣ୍ଢେ ମୋଟ ହୋଇ ଯାଇଥିଲା ।

ପୁରସ୍କାର ପତ୍ର ମିଳିଥିବା ଲେଖାଟି ନିମ୍ନମତେ ଉଦ୍ଧୃତ କରୁଅଛି ।

ଉତ୍କଳୀୟ ବ୍ରାହ୍ମଣ ମହାସଭ, ସମ୍ବଲପୁର, ତା ୨୬ । ୧୨ । ୪୭

ଶ୍ରୀଯୁକ୍ତ ବୀରବର ଦାଶ ନି: ରେମଣ୍ଡା

ପ୍ରବନ୍ଧ ପ୍ରତିଯୋଗିତା ନିମିତ୍ତ ପଠାଇଥିବା ଆପଣଙ୍କ ପ୍ରବନ୍ଧଟି ୨ୟ ସ୍ଥାନ ଲାଭ କରିଛି ।

ତେଣୁ ଏହି ମହାମଭ ପକ୍ଷରୁ ମୁଁ ଆପଣଙ୍କୁ ସେଥିପାଇଁ ଟ୧୫ (ପନର ଟଙ୍କା) ପୁରସ୍କାର ପ୍ରଦାନ କରି ଆପଣଙ୍କ ଶୁଭ କାମନା କରୁଅଛି ।

ସ୍ଥାନ କଟାପାଲି } ସ୍ୱା: ନ: ମୃତ୍ୟୁଞ୍ଜୟ ଗୁରୁ

୨୬ । ୧୨ । ୪୭ } ସଭପତି

ତାପରେ କୁଦ ଗୁଣ୍ଡେରପୁର ଶିକ୍ଷା ସମ୍ମିଳନୀରେ ମୋତେ ଅନ୍ୟ ଏକ ପୁରସ୍କାର ଏବଂ ପ୍ରମାଣ ପତ୍ର ମିଳିଥିଲା । ତହିର ବିବରଣୀ ନିମ୍ନମତେ ରହିଅଛି ।

ଗୁଣ୍ଡେରପୁର ଶିକ୍ଷା ସମ୍ମିଳନୀ

ଶ୍ରୀଯୁକ୍ତ ବୀରବର ଦାଶ, ପ୍ରଧାନ ଶିକ୍ଷକ; ବାଳିକା ବିଦ୍ୟାଳୟ, ରେମଣ୍ଡା

ମହାଶୟ,

ଏହି ସମ୍ମିଳନୀରେ ଆପଣ ପ୍ରବନ୍ଧ ପାଠ, ସମ୍ମିଳନୀରେ ସୁଚିନ୍ତିତ ଆଲୋଚନା, ଆକସ୍ମିକ ଖେଳ ପ୍ରଦର୍ଶନ କରିଥିବା ହେତୁ ସମ୍ମିଳନୀର କର୍ମକର୍ତ୍ତା ବୃନ୍ଦ ଆପଣଙ୍କ ଉପରେ ବିଶେଷ ଆନନ୍ଦିତ ହୋଇ 'କାଳିଦାସ ସନ୍ଦର୍ଭ' ଏବଂ ଶିକ୍ଷା ଦାନେ କୌଶଳ ପୁସ୍ତକ ୨ ଖଣ୍ଡ ଏବଂ ଟ୫ (ପାଞ୍ଚ ଟଙ୍କା) ପୁରସ୍କାର ଦେଇ ଅଛନ୍ତି ।

Sd/- S. Biswal
S. I. of Schools, Dhama
Circle

Sd/- B. Naik
Deputy Inspector of Schools
Sambalpur, 23-3-52

ସେହିପରି ଆଉ ଏକ ପୁରସ୍କାର ମୋତେ ତୁରୁମ ଶିକ୍ଷା ସମ୍ମିଳନୀରେ ମିଳିଥିଲା । ନିମ୍ନ ଲେଖାରୁ ତାହା ଅନୁମେୟ ।

## ତୁରୁମ ଶିକ୍ଷା ସମ୍ମିଳନୀ

ଶ୍ରୀଯୁକ୍ତ ବୀରବର ଦାଶ, ହେ. ପ., ବାଳିକା ସ୍କୁଲ, ରେମଣ୍ଡା

'ନାରୀ ଶିକ୍ଷା ଓ ତାର ପ୍ରଗତି' ଶୀର୍ଷକ ପ୍ରବନ୍ଧ ପ୍ରତିଯୋଗିତାରେ ଆପଣ ଯେଉଁ ପ୍ରବନ୍ଧଟି ପାଠ କଲେ ତାହା ଏଠାରେ ପ୍ରଥମ ସ୍ଥାନ ଲାଭ କରିଅଛି ।

ସେଥିପାଇଁ ଉଦ୍ଦିଷ୍ଟ ଟ ୧୫ ଏବଂ ଏକ ରୌପ୍ୟ କପ୍ ଆପଣଙ୍କୁ ପୁରସ୍କାର ଦିଆଗଲା ।

Sd/- Somanath Mishra
6 - 11 - 58
ମୁଖ୍ୟ ଅତିଥି

Sd/- N. Mishra
Special Officer
D. B., Sambalpur
ସଭପତି
ତା ୬ । ୧୧ । ୫୮

୧୯୫୯ ସାଲରେ 'ପୁଣ୍ୟପଥେ ବ୍ରାହ୍ମଣ' ପୁସ୍ତକଟି ପ୍ରକାଶିତ ହୋଇଥିଲା । ପୁସ୍ତକଟିର ଲୋକପ୍ରିୟତା ହେତୁ ଅତି ଅଳ୍ପ ସମୟ ମଧ୍ୟରେ ପୁସ୍ତକ ସବୁ ବିକ୍ରୀ ହୋଇ ଯାଇଥିଲେ ମଧ୍ୟ ଅର୍ଥାଭାବ ହେତୁ ତାହାର ଦ୍ୱିତୀୟ ମୁଦ୍ରଣ ମୁଁ କରାଇ ପାରି ନ ଥିଲି ।

୧୯୬୨ ସାଲରେ ଭାରତ ସରକାର ସମାଜସେବୀ ରୂପେ ସ୍ୱର୍ଣ୍ଣଯୁକ୍ତ ବ୍ରୋଞ୍ଜ ପଦକ ମୋତେ ପ୍ରଦାନ କରିଥିଲେ । ଉକ୍ତ ପଦକ ପ୍ରଦାନ କରି ଭାରତ ସରକାର ଯେଉଁ ପ୍ରମାଣ ପତ୍ର ଦେଇଥିଲେ ତାହା ହେଲା ଏହା—

Government of India
Ministry of Home Affairs
Certificate of Honour
1961

Sri Birabar Dash

In recognition of your out standing Zeal and the high quality of the Services rendered by you during the 1961 Census of India the President has been pleased to confer upon you the 1961 Census goldclay-Bronze Medal.

New Delhi
Dated the 20th
Decembar, 1962

Sd/—
Registrar General
India

୧୯୬୩ ସାଲରେ 'ପ୍ରେମର ପ୍ରତିଦାନ' ଉପନ୍ୟାସ ପୁସ୍ତକଟି ପ୍ରକାଶିତ ହୋଇଥିଲା । ଉକ୍ତ ପୁସ୍ତକଟିକୁ ପ୍ରକାଶ କରିଥିଲେ ଶ୍ରୀ ରଘୁବୀର ମେହେର, ବେରମଣ୍ଡା ।

୧୯୬୪ ସାଲ ଜାନୁୟାରୀ ୨୬ ତାରିଖରେ ମୋତେ ଜଣେ କୃତୀ ଶିକ୍ଷକ ରୂପେ ଓଡ଼ିଶାର ରାଜ୍ୟପାଳ ପୁରସ୍କାର ପ୍ରଦାନ କରିଥିଲେ । ସେଥିପାଇଁ ମୋତେ

ଯେଉଁ ପ୍ରମାଣ ପତ୍ର ମିଳିଥିଲା ନିମ୍ନ ଲେଖାରୁ ତାହା ସୁସ୍ପଷ୍ଟ ହୁଏ ।

Government of Orissa
Education Department

This State Award is given to Sri Birabar Dash, Asst.-teacher, Khajuri tikra U. P. School, Bargarh, Dist- Sambalpur in recognition of his valuable services to the community as a teacher of out standing merit.

Bhubaneswar
Dated 26th January
1964

Sd/- S. Mishra
Director of Public
Instruction, Orissa

୧୯୬୪ ଖ୍ରୀ:ରେ ବରଗଡରେ ରବିବାସରୀୟ ସାହିତ୍ୟ ସଂସଦ ପ୍ରତିଷ୍ଠିତ ହୋଇଥିଲା ଏବଂ ଉକ୍ତ ଅନୁଷ୍ଠାନରେ ମୁ ସଭପତି ରୂପେ ନିର୍ବାଚୀତ ହୋଇ ଦୁଇ ବର୍ଷ ପର୍ଯ୍ୟନ୍ତ ଉକ୍ତ କାର୍ଯ୍ୟ ପରିଚ୍ଛଳନା କରିଥିଲି । ସେହି ସମୟରେ ଅନୁଷ୍ଠାନ ପକ୍ଷରୁ 'ନିର୍ଯ୍ୟାସ' ନାମରେ ଏକ ସ୍ମରଣିକା ପ୍ରକାଶିତ ହୋଇଥିଲା ।

୧୯୬୭ ଖ୍ରୀ:ରେ ବରଗଡରେ 'ପ୍ରଗତି ସାହିତ୍ୟ ପରିଷଦ' ଗଠିତ ହୋଇ ଥିଲା ଏବଂ ଉକ୍ତ ଅନୁଷ୍ଠାନରେ ସଭପତି ରୂପେ ମୁଁ ଏ ପର୍ଯ୍ୟନ୍ତ ରହି ଆସିଅଛି ।

୧୯୬୮ ସାଲରେ 'ଓଡଆ ଯୁବ ଲେଖକ ସମ୍ମେଳନ' ଓଡଶାରେ ମୁଁ ସଭ୍ୟ ରୂପେ ଯୁକ୍ତ ହୋଇ ପରେ ତହିରେ ଆଜୀବନ ସଭ୍ୟ ରୂପେ ରହିଅଛି ।

୧୯୬୯ ଖ୍ରୀ:ରେ ବରଗଡ 'ବାସନ୍ତୀ ସାହିତ୍ୟ ସଂସଦ'ରେ ସଭ୍ୟ ରୂପେ ମୁଁ ରହି ପରେ ଅନୁଷ୍ଠାନର ସଂପାଦକ ଭବେ ଏ ପର୍ଯ୍ୟନ୍ତ ରହି ଆସିଥିଲି ।

୧୯୭୧ ସାଲରେ 'ମରୀଚିକାର ଢେଉ' (ଗଳ୍ପ ସଞ୍ଚୟନ) ପ୍ରକାଶିତ ହୋଇଥିଲା । ପ୍ରକାଶକ ହେଉଛନ୍ତି ଡକ୍ଟର ବିକ୍ରମ କେଶରୀ ଦାଶ । ପୁସ୍ତକଟିର ମୁଖବନ୍ଧ ଲେଖିବାକୁ ଯାଇ ଡକ୍ଟର ଫନି ମହାନ୍ତି, ସଂପାଦକ 'ସଂଯୋଗ' ମତ ପ୍ରକାଶ କରିଛନ୍ତି ଯେ "ବୀର ବାବୁଙ୍କର ଗଳ୍ପ ଗୁଚ୍ଛ 'ମରୀଚିକାର ଢେଉ' ଏକ ସାର୍ଥକ ସୃଷ୍ଟି । ଏଥିର ଦ୍ୱିମତ ନାହି । ବରଗଡ ପରି ଏକ ଶିଳ୍ପାଞ୍ଚଳ ସହରରୁ ନିଜର ବ୍ୟକ୍ତିଗତ ଉଦ୍ୟମରେ ସ୍ୱଳ୍ପ ସମୟ ମଧ୍ୟରେ ଏପରି ଏକ ଉଲ୍ଲେଖନୀୟ ସାହିତ୍ୟ ପୁସ୍ତକ ପ୍ରକାଶ ଲଭ କରିବାରେ ଲେଖକଙ୍କର ଯେ ଅଶେଷ ବାହାଦୁରୀ ରହିଛି ତାହା କହିବା ଅନାବଶ୍ୟକ ।

× × × × ×

ଗଳ୍ପ ଗୁଚ୍ଛର ସମସ୍ତ ଗଳ୍ପ ଭବ ସର୍ବସ୍ୱ ନ ହୋଇ ଅନୁଭୂତି ପ୍ରଧାନ ପରି ମନେ ହୁଏ । ଗଳ୍ପର ବିଭିନ୍ନ ଚରିତ୍ର ଗୁଡ଼କ ଏପରି ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଲେଖା ଯାଇଛି ଯେ ସେ ଗୁଡକୁ ଯେତେ ପଢ଼ଲେ ବି ଆହୁରି ପଢ଼ିବାକୁ ମନହୁଏ । 'ମରୀଚିକାର ଢେଉ' ଓଡ଼ିଆ ସାହିତ୍ୟ ଜଗତରେ ଏକ ନିଶ୍ଚିତ ମାଇଲ ଖୁଣ୍ଟି । ଗଳ୍ପ ଗୁଡକର ବର୍ଣ୍ଣନା କେବଳ ଉପକୂଳ ବର୍ତ୍ତୀ ଅଞ୍ଚଳରେ ସୀମିତ ନ ରହି ଉପାନ୍ତ ଅଞ୍ଚଳର ଗାଁ ଗହଳ ପର୍ଯ୍ୟନ୍ତ ପରିବ୍ୟାପ୍ତ ।

× × × ×

ଠିକ୍ ସେହି ବର୍ଷ ସମ୍ବଲପୁରର 'ଅଗ୍ନିଶିଖା' ପତ୍ରିକାର ସଂପାଦକ ଶ୍ରୀ ଅର୍ଜ୍ଜୁନ ରଂଜନ ପଣ୍ଡା ତାଙ୍କ ଅଗ୍ନିଶିଖା ପତ୍ରିକା ୪ର୍ଥ ବର୍ଷ ୩-୪ ଅଙ୍କ ଫେବୃୟାରୀ ୧୯୭୧ ସାଲରେ 'ମଣିଷ ଭିତରେ ମଣିଷ' ବିଭଗରେ ମୋ ସମ୍ବନ୍ଧରେ ଲେଖିଥିଲେ—

## ସାହିତ୍ୟକ ବୀରବର ଦାଶ (ବରଗଡ)

ଓଡ଼ିଆ ସହିତ୍ୟର ଜଣେ ନିଷ୍ଠାପର ସେବକ ରୂପେ ଶ୍ରୀ ବୀରବର ଦାଶଙ୍କ ସେବା ଉତ୍କଳ ଭରତୀଙ୍କ ନିକଟରେ ନ୍ୟୁନ ନୁହେ । ଓଡ଼ିଆ ସାହିତ୍ୟରେ ଶ୍ରୀ ଦାଶଙ୍କ ଦ୍ୱାର ଲିଖିତ ବିଭିନ୍ନ ପ୍ରକାର ପୁସ୍ତକ ମାନଙ୍କ ମଧ୍ୟରୁ କୁମୁଦ୍ବତୀ, ଯୁଗ ପଥେ ବ୍ରାହ୍ମଣ, ପ୍ରେମର ପ୍ରତିଦାନ, ସମାଧାନ, ଅଭିଶପ୍ତ ମରୀଚିକାର ଢେଉ ଆଦି ଯାହା ପ୍ରକାଶ ପାଇଛି ତାକୁ ପର୍ଯ୍ୟାଲୋଚନା କଲେ ବୀରବର ବାବୁ ଯେ ଏକାଧାରରେ ଜଣେ ଔପନ୍ୟାସିକ, କବି, ଗାଳ୍ପିକ, ସମାଲୋଚକ ଓ ନାଟ୍ୟକାର ଅଟନ୍ତ ଏହା ନିଃସନ୍ଦେହ ରୂପେ କୁହାଯାଇପାରେ । ତାଙ୍କର ଉପନ୍ୟାସ ଗୁଡ଼କ ପାଠକଲେ ଲେଖକଂକର ବଳିଷ୍ଠ ଲେଖନୀର ମାଧୁରୀ ପାଠକର ଚିତ୍ତକୁ ଏକ ଅନନୁଭୂତ ଚିନ୍ତା ରାଜ୍ୟକୁ ନେଇଯାଏ । ସାମାଜିକ ଦୃଷ୍ଟି ଭଙ୍ଗୀର ଯୁଗୋଚିତ ପରିବର୍ତ୍ତନ ସଙ୍ଗେ ସଙ୍ଗେ ମାର୍ଜ୍ଜିତ ରୁଚି ସମ୍ପନ୍ନ ଆଦର୍ଶ ଚରିତ୍ର ସୃଷ୍ଟି ଦ୍ୱାର ତାଂକର ସାହିତ୍ୟିକ ଆଭିମୁଖ୍ୟ ପାଠକ ଚିତ୍ତକୁ ରସାପ୍ଲୁତ କରିଥାଏ ।

'ଯୁଗପଥେ ବ୍ରାହ୍ମଣ' ପୁସ୍ତକଟିରେ ପ୍ରଚଳିତ ସାମାଜିକ ପ୍ରଥାର କୁସଂସ୍କାରର ସଂସ୍କାର ଆନୟନ କରିବା ଦିଗରେ ଯେଉଁ ବୈପ୍ଳବିକ ଚିନ୍ତାଧାର ପ୍ରକାଶ କରିଛନ୍ତି; ଅଧୁନାତନ ଯୁବଗୋଷ୍ଠୀଂକ ପ୍ରତି ତାହା ଏକ ନିଶ୍ଚିତ ଏବଂ ସୁଦୃଢ଼ ଅହ୍ୱାନ । ଆଧୁନିକ ସମାଜରେ ପ୍ରଚଳିତ ଥିବା ବହୁ ଦୋଷ ତ୍ରୁଟୀର ସମାଲୋଚନା କରିବା ସଙ୍ଗେ ସଙ୍ଗେ ଭରତୀୟ ସଂସ୍କୃତିର ମୌଳିକ ଚିନ୍ତାଧାର ଉପରେ ଆଧାରିତ ପରମ୍ପର ଗତ ଦୃଷ୍ଟାନ୍ତ ଆଦିର ପରିପ୍ରକାଶ ପ୍ରଣିଧାନ ଯୋଗ୍ୟ ।

କ୍ଷୁଦ୍ର ଗଳ୍ପର ଲେଖକ ରୂପେ ଲେଖକଙ୍କର ଅନ୍ୟତମ ପ୍ରତିଷ୍ଠା ଅବିସ୍ମରଣୀୟ ଅଟେ । 'ମରୀଚିକାର ଢେଉ' 'ଲଙ୍କାରେ ହରିଶଙ୍କ' 'ସି' 'ବ୍ୟତିକ୍ରମ' 'ମମତାର ପରିଧି' 'ପୁରସ୍କାର' 'ମୁଁ ବେଶ୍ୟା ନୁହେଁ' 'ରିକ୍ତ ପ୍ରେମ' ଆଦି ଗଳ୍ପ ପାଠ କଲେ ଲେଖକଙ୍କର ଦେଶାତ୍ମବୋଧ, ଆଦର୍ଶ ନାଗରିକତା ତଥା ସଂସ୍କାର ପ୍ରିୟତା ରୂପକ ମନୋଭବର ପରିଚୟ ମିଳିଥାଏ ।

ସମ୍ବଲପୁର ଜିଲ୍ଲାର ଭେଡେନ ଥାନାସ୍ଥିତ ବେମଣ୍ଡା ଗ୍ରାମରେ ବୀରବର ବାବୁ ୧୯୧୫ ସାଲରେ ଜନ୍ମ ଗ୍ରହଣ କରନ୍ତି । ଲେଖକଙ୍କର ପିତା ଶ୍ୟାମସୁନ୍ଦର ଦାଶ ଏବଂ ମାତା ଯମୁନା ଦେବୀ ତାଂକ ଜନ୍ମର ଅବ୍ୟବହିତ କେତେକ ମାସ ପରେ ଏକା ଦିନକେ ମୃତ୍ୟୁ ହେବାରୁ ଲେଖକଂକର ବାଲ୍ୟଜୀବନ ଅତି ଦୁଃଖାବହ ତଥା ଦୁର୍ଦ୍ଦଶାଗ୍ରସ୍ତ ହୋଇ ପଡଥିଲା । ଲେଖକଂକର ପିତାମହୀ କୌଶଲ୍ୟା ଦେବୀଂକ ଯତ୍ନରେ ଲଳିତ ପାଳିତ ହେଉଥିବା ବେଳେ କୈଶୋର ଅବସ୍ଥାରେ ତାଙ୍କୁ ମଧ୍ୟ ହରାଇ ବସି ଥିଲେ । ତେଣୁ ତାଂକର ବାଲ୍ୟ, କୈଶୋର ତଥା ଯୌବନ କାଳ ଅତି ଦୁର୍ବିସହ ଅବସ୍ଥାରେ ଅତିବାହିତ ହୋଇଅଛି । ତେଲ ଲୁଣର ସଂସାର ଚଳାଇବା ନିମିତ୍ତ ଲେଖକ ଶିକ୍ଷକ ଜୀବନକୁ ନିଜର ଜୀବିକା ରୂପେ ବାଛି ନେଇଛନ୍ତି । ଜଣେ କୃତୀ ଶିକ୍ଷକ ରୂପେ ଓଡଶା ସରକାରଂକ ଠାରୁ ୧୯୬୪ ରେ ରାଜ୍ୟ ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ଜନସେବା ନିମିତ୍ତ ଭାରତ ସରକାରଙ୍କ ଠାରୁ ଏହାର ଦୁଇ ବର୍ଷ ପୂର୍ବରୁ ସେ ସ୍ୱର୍ଣ୍ଣ ପଦକ ପାଇ ଅଛନ୍ତି ।

ବର୍ତ୍ତମାନ ସେ ବରଗଡ ଅଫିସର କଲୋନୀ ସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରୁ ଅଛନ୍ତି । ବିଭିନ୍ନ ସାହିତ୍ୟ ସଂସଦ, ପରିଷଦ, ସଂସ୍ଥା ଆଦିରେ ସଭପତି; ସମ୍ପାଦକ, ସଭ୍ୟ ଆଦି ରୂପେ ରହି ଅନୁଷ୍ଠାନ ମାନଙ୍କର ଅଭିବୃଦ୍ଧି ନିମିତ୍ତ ତାଂକର ସେବା ତଥା ଦାନ ଉତ୍ସାହ ବ୍ୟଞ୍ଜକ ।

ଜଣେ ପ୍ରାବନ୍ଧିକ ରୂପେ ବିଭିନ୍ନ ଅନୁଷ୍ଠାନ ତଥା ଆସର ମାନଂକଠାରୁ ବହୁବାର ପଦକ, କପ୍ ତଥା ପୁରସ୍କାର ଆଦି ପାଇଥିବା ଘଟଣା ଗୁଡକ ଲେଖକଙ୍କର ଅନ୍ୟ ଏକ ମହତ୍ତର ଗୁଣର ପରିଚୟ ଦିଏ ।

ଜଣେ କୁଶଳୀ ଅଭିନେତା ରୂପେ ମଧ୍ୟ ଲେଖକ ପରିଚିତ । ୧୯୩୪ ସାଲରୁ ୧୯୬୪ ସାଲ ମଧ୍ୟରେ ବିଭିନ୍ନ ସୌଖୀନ ରଙ୍ଗମଞ୍ଚରେ ଶତାଧିକ ଥର ସେ ଅବତୀର୍ଣ୍ଣ ହୋଇ ନିଜର କଳା କୁଶଳତା ଦ୍ୱାରା ଜନ ଗୌରବ ଅର୍ଜନ କରିଥିବା ଜଣାପଡେ ।

ଲଳିତ କଳା ବିଦ୍ୟାରେ ତାଙ୍କର ଅନୁରାଗ ତଥା ବଂଶୀ ବାଦନରେ

ତାଙ୍କର ନୈପୁଣ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଅଟେ । ତାଂକ ଦ୍ୱାରା ଲିଖିତ ମହୀରାବଣ ବଧ, କର୍ଣ୍ଣବଧ ଓ ଦର୍ପ ସଂହାର ଗୀତିନାଟ୍ୟ ରୂପେ ଗ୍ରାମ୍ୟ ନାଟ୍ୟଦଳ କର୍ତ୍ତୃକ ଅଭିନୀତ ହୋଇ ଗ୍ରାମ୍ୟ ଜନ ମନ ରଞ୍ଜନ କରୁଥିବାର ଶୁଣାଯାଏ ।

ଲେଖକ ଜୀବନର ମଧ୍ୟାହ୍ନ କାଳରେ ପହଞ୍ଚିଥିଲେ ମଧ୍ୟ କର୍ମ ଜଞ୍ଜାଳ ପୂର୍ଣ୍ଣ ପରିସର ମଧ୍ୟରେ ରହି ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ନିରବଚ୍ଛିନ୍ନ ସାଧନା ଓ ନିଷ୍ଠା ଅବ୍ୟାହତ ରଖି ପାରିଛନ୍ତି ।

ଆମ୍ଭେ ଲେଖକଙ୍କର ଏତାଦୃଶ ପ୍ରଚେଷ୍ଟାକୁ ଅଭିନନ୍ଦନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଲେଖକଙ୍କର ଦୀର୍ଘ ଜୀବନ କାମନା କରୁଅଛୁଁ । x x x x

୧୯୭୧ ଖ୍ରୀ:ରେ ବରଗଡ ବାସନ୍ତୀ ସାହିତ୍ୟ ସଂସଦର ଆୟୋଜନରେ ନିଖିଳ ଉତ୍କଳ ସାହିତ୍ୟ ସମ୍ମିଳନୀ ବରଗଡରେ କରାଯାଇ ଏକ ସ୍ମରଣିକା ପ୍ରକାଶ ପାଇଥିଲା । ଉକ୍ତ ସମ୍ମିଳନୀ ସଭାରେ ଅନ୍ୟାନ୍ୟ ଉଦ୍ୟୋକ୍ତାଗଣଙ୍କ ସହିତ ମୁଁ ସକ୍ରିୟ ଅଂଶ ଗ୍ରହଣ କରିଥିଲି । ତହିଁର ପରବର୍ତ୍ତୀ ବର୍ଷର ସେପ୍‌ଟେମ୍ବର ମାସରେ ପ୍ରଜାତନ୍ତ୍ର ରଜତ ଜୟନ୍ତୀ ଉତ୍ସବ ମଧ୍ୟ ବରଗଡ ବାସନ୍ତୀ ସାହିତ୍ୟ ସଂସଦ ପକ୍ଷରୁ ବିରାଟ ଆକାରରେ କରାଯାଇ ସେଥିପାଇଁ ମଧ୍ୟ ଏକ ସ୍ମରଣିକା ପ୍ରକାଶ ପାଇଥିଲା । ଅନୁଷ୍ଠାନର ସମ୍ପାଦକ ରୂପେ ମୋତେ ସେଥର ସମ୍ମିଳନୀ ପାଇଁ ବହୁ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

୧୯୭୩ ଖ୍ରୀ:ରେ ଅବିସ୍ମରଣୀୟ ମୁହୂର୍ତ୍ତ ପୁସ୍ତିକା ପ୍ରକାଶିତ ହୋଇଥିଲା । ୧୯୭୪ ଖ୍ରୀ:ରେ 'ଅଭିଶପ୍ତ' (କବିତା ସଙ୍କଳନ) ପୁସ୍ତକଟି ଆତ୍ମପ୍ରକାଶ କରିଥିଲା । ପ୍ରକାଶକ ଥିଲେ ଶ୍ରୀ ମୁଟୁରୁ ନାୟକ, ରେମଣ୍ଡା ।

ମୁଁ ଭୁବନେଶ୍ୱର ରାଜଧାନୀ ସାହିତ୍ୟ ସଂସଦର ଜଣେ ସଭ୍ୟ ରୂପେ ରହିଥିବା ହେତୁ ପୁସ୍ତକଟିର ଉଦ୍‌ଘାଟନ ଉତ୍ସବ ଉକ୍ତ ସଂସଦ ମାଧ୍ୟମରେ ଭୁବନେଶ୍ୱରରେ ହୋଇଥିଲା ।

୧୯୭୪ଖ୍ରୀ:ରେ ହର୍ଷ ଦ୍ୟୋତନା ପ୍ରକାଶିତ ହୋଇଥିଲା । ୧୯୭୬ଖ୍ରୀ:ରେ ସମ୍ବଲପୁର ଜିଲ୍ଲା ଲେଖକ ସମ୍ମିଳନୀ କର୍ତ୍ତୃକ ମୋତେ ଉପାୟନ ପ୍ରଦାନ କରା ଯାଇଥିଲା । ଉକ୍ତ ସମ୍ମିଳନୀରେ ଓଡ଼ିଶାର ୫ ଜଣ ମନ୍ତ୍ରୀ ଯୋଗଦାନ କରିଥିଲେ । ଲିଖିତଭାବେ ଯେଉଁ ମାନପତ୍ର ମୋତେ ପ୍ରଦାନ କରା ଯାଇଥିଲା ତହିଁରେ ଶିକ୍ଷା ଏବଂ ସାଂସ୍କୃତିକ ବିଭାଗ ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର ମୁଖ୍ୟ ଅତିଥି ରୂପେ ଯୋଗଦାନ କରି ମୋତେ ଉପହାର ତଥା ମାନପତ୍ର ଅର୍ପଣ କରିଥିଲେ ।

## ମାନ ପତ୍ର (ପ୍ରତିଲିପି)

ସମ୍ବଲପୁର ଜିଲ୍ଲା ଲେଖକ ସମ୍ମିଳନୀ, ୧୯୭୬, ଜୁଲାଇ ୨୪, ୨୫ ତାରିଖ

ବରଗଡର ସ୍ୱନାମ ଧନ୍ୟ ଶିକ୍ଷକ, କଳାକାର ଓ ସାହିତ୍ୟିକ
ଶ୍ରୀଯୁକ୍ତ ବୀରବର ଦାଶ, ମହୋଦୟେଷୁ !

ପଶ୍ଚିମ ଓଡିଶାର ଯେଉଁ ଲେଖକ ମାନଙ୍କ ସାଧନା ଦ୍ୱାରା ଉତ୍କଳ ବାଣୀ ଭଣ୍ଡାର ସମୃଦ୍ଧ ହୋଇଛି, ଆପଣ ସେମାନଙ୍କ ମଧ୍ୟରେ ଅନ୍ୟତମ । କାବ୍ୟ,କବିତା, ଗଦ୍ୟ ଆଲୋଚନା, ଗଳ୍ପ, ଉପନ୍ୟାସ ଆଦି ବିବିଧ ବିଭଗରେ ଲେଖନୀ ଚ୍ଚଳନା କରି ଆପଣ ଯେଉଁ ମନୋହର ରଚନାବଳୀ ସୃଷ୍ଟି କରିଛନ୍ତି; ତନ୍ମଧ୍ୟରୁ କୁମୁଦ-ବତୀ,ଯୁଗପଥେ ବ୍ରାହ୍ମଣ, ପ୍ରେମର ପ୍ରତିଦାନ, ସମାଧାନ, ମରିଚୀକାର ଢେଉ, ହର୍ଷ ଦ୍ୟୋତନା, ଅଭିଶପ୍ତ, ଅବିସ୍ମରଣୀୟ ମୁହୂର୍ତ୍ତ, ନିୟତିର ପରିହାସ ପ୍ରଭୃତି ପ୍ରକାଶିତ ତଥା ଆଦୃତ ହୋଇଛି ।

ଓଡିଆ ସାହିତ୍ୟକୁ ଆପଣଂକ ସେହି ଅବଦାନର ସ୍ୱୀକୃତି ସ୍ୱରୂପ ଲେଖକ ସମ୍ମିଳନୀର ଏହି ଅଧିବେଶନ ଅବସରରେ ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଇ ନିଜକୁ ଗୌରବାନ୍ୱିତ କରୁଛି ।

| | |
|---|---|
| ଗଙ୍ଗାଧର ମହାପାତ୍ର | ସ୍ୱାଃନଃ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା |
| ମୁଖ୍ୟ ଅତିଥି | ସଭପତି ୨୪ । ୭ । ୭୬ |

୧୯୭୭ ଖ୍ରୀଃରେ ନିୟତିର ପରିହାସ (ଗଳ୍ପ ସଂକଳନ) ପ୍ରକାଶିତ ହୋଇ ଥିଲା । ଶ୍ରୀ ହରିବୋଲ ପ୍ରଧାନ, ରେମଣ୍ଡା ପୁସ୍ତକଟିର ପ୍ରକାଶକ ।

ପୁସ୍ତକଟିର ଅଭିରୂପ ଶୀର୍ଷକ ଲେଖାରେ ମତବ୍ୟକ୍ତ କରିବାକୁ ଯାଇ ମୋର ଅନ୍ୟତମ ସାହିତ୍ୟିକ ବନ୍ଧୁ ଶ୍ରୀ ଈଶ୍ୱର ଚନ୍ଦ୍ର ସାମଲ ଲେଖିଛନ୍ତି—

× × × × × ×

ଆଧୁନିକ ସମାଜରେ ନବ ଅଙ୍କୁରିତ ଦୁଃସହ କର୍କଟ ବ୍ୟାଧିଗ୍ରସ୍ତ ଦୋଷ ଉପରେ ରଞ୍ଜନ ରଶ୍ମି (X-Ray) ପ୍ରତିଫଳନ କରାଇ ବାସ୍ତବତାର ମୂଲ୍ୟାଂକନ କରିବା ଗଳ୍ପ ଲେଖକଂକର ଉଦ୍ଦେଶ୍ୟ । ମାଇପ ଉଦ୍ବୋଧରେ ଶଳାକୁ ଜୁହାର ନ୍ୟାୟରେ ଆଧୁନିକ ଶିକ୍ଷିତ ରୋଜଗାର କ୍ଷମ ଯୁବକ ମାନେ କିପରି କର୍ତ୍ତବ୍ୟଚ୍ୟୁତ ହୋଇ ନିଜର ପିତାମାତା ଓ ଆତ୍ମୀୟଂକୁ ଉପେକ୍ଷା, ଅବହେଳା ଓ ଅବମାନନା କରୁଛନ୍ତି ତାହାର ଜ୍ୱଳନ୍ତ ପ୍ରମାଣ ଲେଖକଂକ ଲେଖନୀରେ ପରିସ୍ଫୁଟିତ ।

× × × × × ×

କ୍ଷୁଦ୍ର ଗଳ୍ପ ମାଧ୍ୟମରେ ଶ୍ରୀ ଦାଶ ଆଧୁନିକ ସମାଜରେ ମଣିଷର ଅପରିପକ୍ୱ ଚିନ୍ତାଧାରକୁ ସମାଲୋଚନା କରିଛନ୍ତି । ତାଂକର ଅନ୍ତର୍ଜଗଙ୍ଗ ଓ ବହିର୍ଜଗଙ୍ଗର କ୍ରମ ନୟମ ଦ୍ୱିମୁଖୀ - ନିବୃତ୍ତି ଓ ପ୍ରତିକାରକ । ନିର୍ଦ୍ଦିଷ୍ଟକ ବିଷୟବସ୍ତୁ, ଚରିତ୍ର ଅକ୍ଷେପ ଓ ସଂସ୍କାର ଉପରେ ଲିଖିତ ଏହି ଗଳ୍ପ ଗୁଡ଼ିକ ଆଧୁନିକ ସମାଜରେ ସାମାଜିକ ଆତ୍ମୀୟତାକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ସୁପଥ ଅନୁସନ୍ଧିତ୍ସୁ ଯୁବକ ଯୁବତୀ ମାନଙ୍କୁ ଆନନ୍ଦମୟ ଜୀବନ ଯାପନର ପ୍ରେରଣା ଦେବ ବୋଲି ଆଶା ।

× × × × × ×

କଟକ ଉତ୍କଳ ସାହିତ୍ୟ ସମାଜରେ ଜଣେ ସଭ୍ୟ ହେବା ସକାଶେ ମୋର ମନରେ ବହୁ ଦିନରୁ ବାସନା ରହି ଆସିଥାଏ । ୧୯୭୭ ସାଲରେ ମୋର ସେହି ଚିରପୋଷିତ ଆକାଂକ୍ଷା ପୂର୍ଣ୍ଣ ହୋଇ ଥିଲା । ସେହି ସମୟରୁ ଆଜି ପର୍ଯ୍ୟନ୍ତ ମୁ ଉକ୍ତ ଅନୁଷ୍ଠାନର ସଭ୍ୟ ରୂପେ ରହି ଆସିଛି ।

୧୯୭୮ ସାଲରେ ମୋର ଅନ୍ୟ ଏକ ପୁସ୍ତକ ଐତିହାସିକ ଶିବ ପ୍ରସାଦ ଦାଶ (ଜୀବନୀ) ପ୍ରକାଶ ଲଭ କରିଥିଲା । ପୁସ୍ତକଟିର ପ୍ରକାଶକ ହେଉଛନ୍ତି ଶ୍ରୀ ଲିଙ୍ଗରାଜ ବେଉ, ହେଡ ମାଷ୍ଟର; ତବଡା ହାଇସ୍କୁଲ । ସେହି ବର୍ଷ ମୁ ସମ୍ବଲପୁରରେ ଥିବା 'ଚିନ୍ମୟ ସାହିତ୍ୟ ସଂସଦ' ସାହିତ୍ୟ ସଂସ୍ଥାର ସଭ୍ୟ ଶ୍ରେଣୀ ଭୁକ୍ତ ହୋଇଥିବାରୁ ପୁସ୍ତକଟିର ଉଦ୍‌ଘାଟନ ଉତ୍ସବ ଉକ୍ତ ଅନୁଷ୍ଠାନ ତରଫରୁ ସମ୍ବଲପୁର ପୌର ସଭ ଗୃହରେ କରା ଯାଇଥିଲା ।

୧୯୭୯ ଖ୍ରୀ: ଜୁନ ମାସରେ ଚିନ୍ମୟ ସାହିତ୍ୟ ସଂସଦ ପକ୍ଷରୁ ମୋର ଜୟନ୍ତୀ ଉତ୍ସବ ସମ୍ବଲପୁରରେ ପାଳିତ ହୋଇଥିଲା । ତଦୁପଲକ୍ଷ୍ୟେ ଉକ୍ତ ଅନୁଷ୍ଠାନର ସଭପତି ସତ୍ୟନାରାୟଣ ବହିଦାର ଯେଉଁ ଲେଖା ଦୈନିକ କୌଶଳ ପତ୍ରିକାକୁ ଲେଖି ପଠାଇ ଥିଲେ କୋଶଳ ପତ୍ରିକାର ସଂପାଦକ ଶ୍ରୀ ତ୍ରିବିକ୍ରମ ତ୍ରିପାଠୀ ତାକୁ ପତ୍ରିକାର ସମ୍ପାଦକୀୟ ସ୍ତମ୍ଭରେ ସ୍ଥାନ ଦେଇ ଯାହା ପ୍ରକାଶିତ କରିଥିଲେ ତାହା ଏଠାରେ ଉଦ୍ଧୃତ କଲି ।

ଦୈନିକ କୋଶଳ

୮ମ ବର୍ଷ, ୨୦୭ ସଂଖ୍ୟା ତା ୨୧ । ୬ । ୭୯ ଗୁରୁବାର

## କବି, ସାହିତ୍ୟିକ, ରୂପକାର

ଆତ୍ମା ଏବଂ ଆତ୍ମୀୟତା ସାହିତ୍ୟର ପ୍ରାଣ । ଆପଣା ଭିତରେ ଆତ୍ମୀୟତାର ସନ୍ଧାନ ପାଇଁ ଏବଂ ତାରି ଭିତରେ ଆପଣାକୁ ଖୋଜିବାକୁ ଯାଇ ସାହିତ୍ୟିକ ଓ କବି ବୀରବର ଦାଶ ଲେଖିଲେ ପ୍ରେମର ପ୍ରତିଦାନ ଉପନ୍ୟାସ । ପ୍ରକୃତ ପ୍ରେମ କି ଭବରେ ଆପଣାର ଭିତରେ ବିକଶିତ ହୋଇ ଅନ୍ୟ ମଧ୍ୟରେ ବିଚ୍ଛୁରିତ ହୁଏ

ତାହା କବି ତ୍ୟାଗ ମଧ୍ୟରେ - କଠୋରତା, ନିର୍ଯାତନା ମଧ୍ୟରେ ନିର୍ଯାସ କରିଛନ୍ତି । ବାସ୍ତବତା ମଧ୍ୟରେ ଅରୂପର ସନ୍ଧାନରେ—ବିବିଧତା ମଧ୍ୟରେ ଏକାନ୍ୱୟତା ଏବଂ ଏକକତା ମଧ୍ୟରେ ବିବିଧତା ଦେଇ କବି ହୃଦୟରେ ବହୁ ଝଙ୍କାର ଉଠିଲା — କବିତା ମନ୍ତ୍ର ମନ୍ଦିର ମାର୍ଗରେ କୁମୁଦ୍ୱତୀ, ହର୍ଷ ଦ୍ୟୋତନା, ଅଭିଶପ୍ତର କବିତା ଏବଂ ମୁହୂର୍ତ୍ତ ଚେତନାରେ ରୂପାୟିତ ହୋଇ କ୍ଷଣ, କ୍ଷଣର ଝଲକକୁ କ୍ଷଣିକର ଗାନରେ ନିବଦ୍ଧ କଲା ।

ଫୁଲର ଭିତରେ ଗନ୍ଧ ପରି କବିତା କବି ହୃଦୟରୁ ବାହାରି ଅରୂପରେ--—ରୂପ, ରସ, ସ୍ପର୍ଶରେ ଦୁର୍ବାର, ଦୁର୍ଦ୍ଧର ଗତିରେ ହୃଦୟକୁ ସ୍ପର୍ଶ କରେ । ସେତେବେଳେ ଭିତର ହୁଏ ବାହାର ଓ ବାହାର ହୁଏ ଭିତର । ଏ ଉଭୟର ଖେଳ ଖେଳା ତାଙ୍କୁ ସବୁଦିନ ନିବଦ୍ଧ କରିପାରିଲା ନାହିଁ । ଯେହେତୁ ଚତୁର୍ଦ୍ଦିଗରେ ଅନୈକ୍ୟର ଯେ ପ୍ରାଚୀର ଯୁଗ ଯୁଗରୁ ସୁଦୃଢ଼ ହୋଇଅଛି — ତାହା ତାଙ୍କୁ ମର୍ମେ ମର୍ମେ ଆଘାତ କଲା । ଫଳତଃ ଅଭଙ୍ଗଣ କଠୋରତା — ନିର୍ମମ ନ୍ୟାୟପରତା ଦୃଷ୍ଟିରୁ ସମାଜ ସଂସ୍କାର ପ୍ରୟାସରେ ଲେଖନୀ ଉତ୍ତୋଳନ କଲେ ଏବଂ ଯୁଗ-ପଥେ ବ୍ରାହ୍ମଣ ପୁସ୍ତକରେ ତାହା ରୂପାୟିତ ହୋଇ ଶିକ୍ଷା ଦେଲା —

ଏସୋ ବ୍ରାହ୍ମନ୍ ଶୁଚି କରେ ମନ
ଧରେ ହାତ ସବାକାର
ଏସୋ ହେ ପତିତ କରେ ଅପନୀତ
ସବ୍ ଅପମାନ ଭର ।

× × ×

ହେ ରୁଦ୍ର ବୀଣା ବାଜୋ ବାଜୋ ବାଜୋ
ଘୃଣା କରି ଦୂରେ ଆଛେ ଯାରା ଆଜଓ
ବନ୍ଧ ନାଶିବେ ତାରାଓ ଆସବେ
ଦାଁଡ଼ାବେ ଧୀରେ
ଏଇ ଭରତେର ମହା ମାନବେର
ସାଗର ତୀରେ ।

ଏତିକିରେ ସନ୍ତୁଷ୍ଟ ନହୋଇ କବି ଦେଖିଲେ ପଶ୍ଚିମ ଓଡ଼ିଶାର ଅନେକ ଅମୂଲ୍ୟ ଦୁର୍ମୂଲ୍ୟ ଜୀବନର ସନ୍ଧାନ ଜନତା ଜାଣି ପାରିନାହିଁ — ଫଳରେ ଉତ୍କଳର ସୁବିଖ୍ୟାତ ଐତିହାସିକ ଶିବପ୍ରସାଦ ଦାଶଙ୍କ ଜୀବନୀ ସଙ୍କଳନ କଲେ ଏବଂ

ଗୁଡ଼ଆ ବାବାଜୀ ବା ସନ୍ଥ ଗୋବର୍ଦ୍ଧନ ଦାସଙ୍କ ଜୀବନରେ ସକଳ ମୌଳିକତାର ସନ୍ଧାନ ଦେଇ ଭୁକ୍ତି ଭିତରେ ମୁକ୍ତିର ଏବଂ ବନ୍ଧନ ଭିତରେ ମୋଚନର ମାର୍ଗ ଲୋକ ଲୋଚନ ଆଗରେ ଉଦ୍‌ଘାଟନ କଲେ ।

କେବଳ କାବ୍ୟିକତା, ଶାସ୍ତ୍ରାଲୋଚନା ଏବଂ ଗଦ୍ୟ ରଚନାରେ କବି, ଲେଖକର ପେଟ ପୂରେ ନାହିଁ । ଫଳରେ ଦୁର୍ବାର ସଂସାର ଯାତ୍ରାରେ ସରଳ, ନୈତିକ ଶିକ୍ଷକତା ଗ୍ରହଣ କଲେ ଏବଂ ଉତ୍କୃଷ୍ଟ ଶିକ୍ଷକ ରୂପେ ୧୯୬୪ ରେ ରାଜ୍ୟ ପୁରସ୍କାର ଲାଭ କରି ଅନନ୍ୟ ସେବାବ୍ରତ ଯୋଗୁଁ ତହିଁର ଦୁଇବର୍ଷ ପୂର୍ବେ ରାଷ୍ଟ୍ର-ପତିଙ୍କଠାରୁ ସ୍ୱର୍ଣ୍ଣପଦକ ଲାଭ କଲେ ।

ସାଧନାର ଏକାନ୍ତକତା — ବିଶୃଙ୍ଖଳା ମଧ୍ୟରେ ତୀବ୍ର ଆତ୍ମସଂଯମ ପରିପାର୍ଶ୍ୱକୁ ଆୟତ୍ତ କରିବା — ସାହସ, ବିଶ୍ୱାସ ଧରି ଜୀବନ ପଥରେ ଅଗ୍ରସର ହେବା ତଦୀୟ ଜୀବନରୁ ଉଦାତ୍ତ ଶିକ୍ଷା ମିଳେ । ଯେହେତୁ ଅତି ବାଲ୍ୟକାଳରୁ କବି ପିତାମାତାଙ୍କୁ ହରାଇ ନାନା ବିପଦ ବନ୍ଧନରେ ଅଣ୍ଡାଳି ଅଣ୍ଡାଳି ପଥ ପାଇଛନ୍ତି ।

ସଂଯମ, ସାଧନାର ଦୁର୍ଜୟ ପଥରେ ଗତି କରି ଆଜି ଦୃଢ଼ୀଭୂତ ହୋଇ ବହୁ ମାନରେ-ଜନ ସମାଜରେ କବି, ନାଟ୍ୟକାର, ଔପନ୍ୟାସିକ,ଚିତ୍ରକାର, ନାଟ୍ୟ ଅଭିନେତା ରୂପେ ବହୁଶଃ ପୂଜା ପାଉଛନ୍ତି । ତଦ୍ ରଚିତ ମହୀରାବଣ ବଧ, କର୍ଣ୍ଣ-ବଧ ଓ ଏକଲବ୍ୟ ନାଟକ ଗ୍ରାମ୍ୟ ନାଟ୍ୟ ଦଳରେ ଅଭିନୀତ ହୋଇ ତଦୀୟ ନାଟ୍ୟକଳା କୁଶଳତାର ସ୍ପଷ୍ଟ ନିଦର୍ଶନ ଦିଏ ବୋଲି ବିଶିଷ୍ଟ କବି ଶ୍ରୀ ସତ୍ୟନାରାୟଣ ବହିଦାର ମତବ୍ୟକ୍ତ କରିଅଛନ୍ତି ।

ଆଷାଢ଼ କୃଷ୍ଣ ନବମୀ ତିଥିରେ ବୀରବର ବାବୁଂକ ବହୁମୁଖୀ ପ୍ରତିଭାର ଶୁଭ୍ର, ଶାଶ୍ୱତ ଯଶୋଗାଥାର ଅଭିବୃଦ୍ଧି ପାଇଁ ଭଗବାନଂକ ଠାରେ ଯୁକ୍ତ କରରେ ପ୍ରାର୍ଥନା ପୂର୍ବକ ତଦୀୟ ଦୀର୍ଘ ଜୀବନ କାମନା କରୁଁ ।

୧୯୮୦ ଖ୍ରୀ:ରେ ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ (ଗୁଡଆ ବାବା) ପୁସ୍ତକଟି ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟି ପ୍ରକାଶ କରିଥିଲେ ଶ୍ରୀ ବେଣୁଧର ସାହୁ, ବଟଗଡ । ଏହି ପୁସ୍ତକଟିର ଉଦ୍‌ଘାଟନ ଉତ୍ସବ ସମ୍ବଲପୁର ଗୋପାଳଜୀ ମଠରେ ହୋଇଥିଲା । ଉଦ୍‌ଘାଟନ କରିଥିଲେ ତତ୍କାଳୀନ କୁଳପତି, ସମ୍ବଲପୁର ବିଶ୍ୱବିଦ୍ୟା-ଳୟ, ବୁର୍ଲା, ଡକ୍ଟର ଶ୍ରୀ ନବୀନ କୁମାର ସାହୁ । ସଭପତି ଆସନ ଅଳଂକୃତ କରି ଥିଲେ ଡକ୍ଟର ଶ୍ରଦ୍ଧାକର ସୂପକାର, ସମ୍ବଲପୁର ।

ଡକ୍ଟର ଶ୍ରୀଯୁକ୍ତ ନବୀନ କୁମାର ସାହୁ ଏହି ପୁସ୍ତକଟିର ପାଣ୍ଡୁଲିପି ପାଠ କରି ମୋ ନିକଟକୁ ଯେଉଁ ଶୁଭେଚ୍ଛା ଶୀର୍ଷକ ପତ୍ର ପ୍ରଦାନ କରିଥିଲେ ତାହା

ମୋର ଜୀବନ ପଥରେ ସ୍ମୃତି ପାଥେୟ ବୋଲି ମନେକରେ । ତାହା ଉକ୍ତ ପୁସ୍ତକର ଶିରୋଭୂଷଣ ରୂପେ ସ୍ଥାନ ପାଇ ଥିଲେ ହେଁ ଉକ୍ତ ଲେଖାଟି ମୋହର ହୃଦୟ ଭୂଷଣ ତୁଲ୍ୟ ଅଟେ । ତେଣୁ ଲେଖାଟିର ପ୍ରତିଲିପି ଦେବା ଅପରିହାର୍ଯ୍ୟ ବୋଧକରି ଏଠାରେ ତାକୁ ସନ୍ନିବିଷ୍ଟ କରୁଅଛି ।

Vice-Chancellor (Seal) Jyotivihar, 9-7-1980

## 'ଶୁଭେଚ୍ଛା'

ଶ୍ରୀଯୁକ୍ତ ବୀରବର ଦାଶ, ଲେଖକ ଓ ସମାଲୋଚକ ଭାବରେ ଓଡ଼ଶାରେ ପରିଚିତ । ସେ ମଧ୍ୟ ଯେ ଜଣେ ଗବେଷକ ତାହା ଜ୍ଞାନାନନ୍ଦ ସରସ୍ୱତୀଂକ ଜୀବନୀ ଆଲୋଚନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ।

ଜ୍ଞାନାନନ୍ଦ ସରସ୍ୱତୀ 'ବୁଢ଼ଆ ବାବା' ନାମରେ ଜନ ସମାଜରେ ପରିଚିତ । ତାଂକର ଦାର୍ଶନିକ ଜ୍ଞାନ ଓ ଧାର୍ମିକ ସାଧନା ଅତି ଆଶ୍ଚର୍ଯ୍ୟ ଭାବରେ ପ୍ରକାଶ ପାଇଥିଲା । ତାଙ୍କ ପରି ମହାନ୍ ବ୍ୟକ୍ତିଙ୍କୁ ଆଜି ଶିକ୍ଷିତ ସମାଜର ଲୋକେ ଭୁଲି ଯାଇଛନ୍ତି । ମାତ୍ର ପଶ୍ଚିମ ଓଡ଼ଶା ଓ ମଧ୍ୟପ୍ରଦେଶର ସାଧାରଣ ଜନତାଙ୍କ ମଧ୍ୟରେ ତାଙ୍କର ପ୍ରେରଣା ଏ ପର୍ଯ୍ୟନ୍ତ ଉଜ୍ଜୀବିତ ରହିଛି ।

ମୁଁ ସ୍କୁଲ ଛାତ୍ର ଥିବା ସମୟରେ 'ବୁଢ଼ଆ ବାବା'ଙ୍କୁ ଦେଖିଥିଲି ଏବଂ ତାଙ୍କର ମହାନ୍ ବ୍ୟକ୍ତିତ୍ୱର ସଂସ୍ପର୍ଶରେ କିଛି କାଳ ଆସିଥିଲି । ତାଙ୍କର ଆଧ୍ୟାତ୍ମିକ ପ୍ରଭାବ ଓ ଧାର୍ମିକ ପ୍ରେରଣା ମୋ ମଧ୍ୟରେ ଯେପରି ଭାବରେ କ୍ରିୟାଶୀଳ ହୋଇ ଅଛି ତାହା ଅନିର୍ବଚନୀୟ ।

ଶ୍ରୀଯୁକ୍ତ ବୀରବର ଦାଶ ମୋର ଏହି ଆନ୍ତରିକ ଭାବ ଏ କ୍ଷେତ୍ରରେ ବ୍ୟକ୍ତ କରିବାକୁ ସୁଯୋଗ ଦେଇ ଥିବାରୁ ମୁଁ ତାଙ୍କୁ ଅଶେଷ ଧନ୍ୟବାଦ ଜ୍ଞାପନ କରୁଅଛି ।

ଶ୍ରୀଯୁକ୍ତ ଦାଶ ସ୍ୱର୍ଗୀୟ ଜ୍ଞାନାନନ୍ଦଙ୍କ ମହତ୍ ଜୀବନର ଯେଉଁ ଅପୂର୍ବ ଇତିବୃତ୍ତି ସଂଗ୍ରହ କରି ଅଛନ୍ତି ତାହା ତାଙ୍କର ଜ୍ଞାନ ଓ ସାଧନାର ସ୍ପଷ୍ଟ ପରିଚୟ ପ୍ରଦାନ କରେ ।

ମୁଁ ଆଶାକରେ ଏହି କୃତି ଜନ ସମାଜରେ ଅଭିନନ୍ଦିତ ହେବ ।

ସ୍ୱାଃ ।ଃ ନବୀନ କୁମାର ସାହୁ ।

ପୁସ୍ତକଟିର ମୁଖବନ୍ଧ ଲେଖିବାକୁ ଯାଇ ଡକ୍ଟର ଯଜ୍ଞ କୁମାର ସାହୁ ଲେଖିଛନ୍ତି — ଗୋବର୍ଦ୍ଧନ ଥିଲା ତାଂକର ପିତୃମାତୃ ଦତ୍ତ ନାମ । ସାଧୁ ସାଧକ ମାନଂକ ଆଖିରେ ସେ ଥିଲେ ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ, ସାଧାରଣ ଲୋକେ

ତାଙ୍କୁ କହୁଥିଲେ ଗୁଡଆ ବାବା । ବୈଶ୍ୟ କୁଳରେ ସେ ଜନ୍ମ ଗ୍ରହଣ କରିଥିଲେ; ମାତ୍ର ସାଧନା ଥିଲା ତାଂକର ବ୍ରାହ୍ମଣର । ଦସ୍ୟୁ ରତ୍ନାକରର ମାର୍ଗ ଅନୁସରଣ କରି ଶେଷରେ ସେ ହେଲେ ବାଲ୍ମୀକି ।

ଏହା ସମ୍ଭବ ହେଲା କିପରି ? ତାହାର ଉତ୍ତର ଦେଇଛି ପଶ୍ଚିମ ଓଡ଼ିଶାର ସୁଲେଖକ ବୀରବର ଦାଶଂକ ପ୍ରଣୀତ ଏହି ଜୀବନୀ ଗ୍ରନ୍ଥ ।

× × × × ×

ଶ୍ରୀ ଦାଶ ଏହିପରି ଏକ ସନ୍ୟାସୀଙ୍କ ଜୀବନୀ ପୁସ୍ତକ ସରଳ ସୁନ୍ଦର ଧବରେ ଉପସ୍ଥାପିତ କରି ଥିବାରୁ ଆମେ ତାଂକ ନିକଟରେ କୃତଜ୍ଞ ଅଟୁ ।.......।

ସ୍ୱାଃ ନଃ ଡକ୍ଟର ଯଜ୍ଞ କୁମାର ସାହୁ
ଅଧ୍ୟାପକ, ସ୍ନାତକୋତ୍ତର
ଇତିହାସ ବିଭାଗ
ଜ୍ୟୋତି ବିହାର,
୨୩ । ୬ । ୮୦

ଶ୍ରୀ ନେତ୍ରାନନ୍ଦ ପୂଜାରୀ ପୁସ୍ତକ ସମ୍ବନ୍ଧରେ ସ୍ୱୀୟ ମତପ୍ରଦାନ କରିବାକୁ ଯାଇ ଲେଖିଛନ୍ତି —

× × × ×

ବର୍ତ୍ତମାନ ଆମ ଓଡ଼ିଆ ସାହିତ୍ୟରେ ଜୀବନୀ ସାହିତ୍ୟ ବିଭବଟି ଅପେକ୍ଷାକୃତ ଅବହେଳିତ ଅବସ୍ଥାରେ ପଡ଼ ରହିଛି । ବିଶେଷତଃ ଆଧ୍ୟାତ୍ମିକ କ୍ଷେତ୍ରରେ ଅପୂର୍ବ ସିଦ୍ଧିଲାଭ କରିଥିବା ଭଳି ସିଦ୍ଧ ପୁରୁଷ ମାନଂକର ଜୀବନୀ ପ୍ରକାଶ କରିବା ପାଇଁ ବ୍ୟାପକ ଉଦ୍ୟମ ହେବା ଦରକାର ।

× × × ×

ଏ ଅଞ୍ଚଳର କବି, ଗାଳ୍ପିକ ତଥା ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଶ୍ରୀ ବୀରବର ଦାଶଂକ ସହିତ ଏ ପ୍ରସଙ୍ଗରେ ମୁ ଅନେକ ଥର ଆଲୋଚନା କରିଥିଲି । କଥାବାର୍ତ୍ତା କରୁଁ କରୁଁ ସେ ଥରେ ମୋ ଆଗେ ପ୍ରକାଶ କଲେ ଯେ ପଶ୍ଚିମ ଓଡ଼ିଶାର ପ୍ରତିଭାଶାଳୀ ବ୍ୟକ୍ତିଗଣଂକର ଜୀବନୀ ଲେଖିବା ପାଇଁ ସେ ସଂକଳ୍ପ ବଦ୍ଧ । ଐତିହାସିକ ଶିବ ପ୍ରସାଦ ଦାଶଙ୍କ ଜୀବନୀ ପୁସ୍ତକଟି ହୋଇ ସାରିବା ପରେ ସ୍ୱାମିଜୀଙ୍କ ଜୀବନୀ ପ୍ରକାଶିତ ହେବା ଘଟଣା ତାଂକ ଦୃଢ ମନୋଭବର ଏକ ପରିପ୍ରକାଶ ଅଟେ । ଏଥିପାଇଁ ସେ ପ୍ରାୟ ୧୫ ବର୍ଷ ଧରି ନିରବଚ୍ଛିନ୍ନ ସାଧନା କରି ଥିବାର କଥା ମୋ

ଆଗରେ ବ୍ୟକ୍ତ କଲେ । ତାହା ଶୁଣି ମୁ ଖୁବ୍ ଆଶ୍ୱସ୍ତ ଓ ଆଶାନ୍ୱିତ ହୋଇ ଉଠିଥିଲି ।

ଇତି ମଧ୍ୟରେ ସେ କିଭଳି କଷ୍ଟ ସ୍ୱୀକାର କରି ବିଭିନ୍ନ ସ୍ଥାନକୁ ଯାଇ ସ୍ୱାମିଜୀଂକ ଘନିଷ୍ଠ ସମ୍ପର୍କରେ ଆସିଥିବା ପ୍ରତିଷ୍ଠିତ ଓ ଦାୟିତ୍ୱଶୀଳ ଲୋକଂକ ସମେତ ତାଂକର ଉତ୍ତର ପୁରୁଷ ମାନଂକ ସହିତ ମଧ୍ୟ ସାକ୍ଷାତ କରି ତଥା ସ୍ୱାମିଜୀ ସଂଶ୍ଳିଷ୍ଟ ରହିଥିବା ବିଭିନ୍ନ ସଂସ୍ଥା ସହିତ ପତ୍ରାଳାପ ମାଧ୍ୟମରେ ଆବଶ୍ୟକୀୟ ମୂଲ୍ୟବାନ ତଥ୍ୟ ଗୁଡ଼ିକ ସଂଗ୍ରହ କରିଛନ୍ତି ତାହା କହି ବସିଲେ ପୁରଣ ହେବ । ଏହା ଫଳରେ ବହୁ ନୂତନ କଥା ଆବିଷ୍କୃତ ହେଲା ଓ ଜୀବନୀଟିକୁ ପ୍ରାମାଣିକ (Authentic) କରିବାରେ ମଧ୍ୟ ସହାୟକ ହେଲା ।

ଶ୍ରୀଯୁକ୍ତ ଦାଶ ପ୍ରସ୍ତୁତ କରିଥିବା ପାଣ୍ଡୁଲିପିଟିକୁ ମୁ ଆମୂଳଚୂଳ ପାଠ କରିଛି । ଘଟଣାବଳୀର ଉପସ୍ଥାପନା ଶୈଳୀ ଯେପରି ଆକର୍ଷଣୀୟ, ବିଷୟବସ୍ତୁ ସେପରି ସୁନିର୍ବାଚିତ ଓ ଶିକ୍ଷଣୀୟ । ପଢ଼ିଲା ବେଳେ ଅନେକ ଘଟଣା କାହାଣୀ ଭଳି ଚିତ୍ତାକର୍ଷକ ଓ ବିସ୍ମୟଜନକ ମନେ ହେବ ।

ଉଭୟ ସାଧାରଣ ପାଠକ ଓ ସାଧକ ପାଇଁ ଏହା ସୁଖ ପାଠ୍ୟ ଓ ପ୍ରେରଣା ଦାୟକ ହେବ ବୋଲି ମୋର ବିଶ୍ୱାସ ହୁଏ । ଏହି ଅଭିନନ୍ଦନ ପଦକ୍ଷେପ ପାଇଁ ମୁ ଲେଖକଙ୍କୁ ସାଧୁବାଦ ଜ୍ଞାପନ କରୁଅଛି ।

ସ୍ୱାଃ ନଃ ଶ୍ରୀ ନେତ୍ରାନନ୍ଦ ପୂଜାରୀ
M. A. B. Ed (Formerly O. E. S.)
ଅଧ୍ୟକ୍ଷ
ଶ୍ରୀରାମ କଲେଜ, ରାମପୁର

ତା ୩୦ । ୬ । ୮୦

୧୯୮୧ ସାଲ ମାର୍ଚ୍ଚ ମାସ ୧୪ ତାରିଖରେ ମୋତେ ଗଦ୍ୟ ସ୍ତବରେ ଉପାୟନ ପ୍ରଦାନ କରିବା ପାଇଁ ପୁରୀ ଜିଲ୍ଲା ସ୍ଥିତ ଉଦୟପୁର ଯଦୁମଣି ସାହିତ୍ୟ ସଂସଦର କର୍ମକର୍ତ୍ତାଙ୍କ ନିକଟରୁ ଏକ ନିମନ୍ତ୍ରଣ ପତ୍ର ଆସିଲା । ଉକ୍ତ ନିମନ୍ତ୍ରଣ ପତ୍ର ପାଇବାର କେତେକ ଦିନ ପରେ ସମ୍ବଲପୁର ଜିଲ୍ଲା ହୀରାକୁଦ ଠାରୁ ବିଶାଳ ହୀରାଖଣ୍ଡ ସାହିତ୍ୟ ବିହାର ସଂସ୍ଥା ପକ୍ଷରୁ 'ଆର୍ଯ୍ୟପଦ୍ମ' ଉପାଧି ପ୍ରଦାନ କରିବାକୁ ଏବଂ ତାହା ଠିକ୍ ସେହି ତା ୧୪ । ୩ । ୮୧ ଦିନ ଉକ୍ତ ଅନୁଷ୍ଠାନ ନିର୍ଦ୍ଦିଷ୍ଟ ଦିବସ ଧାର୍ଯ୍ୟ କରି ଦେଇ ଥିବାରୁ ଉଭୟଥା ଯୋଗଦାନ କରିବା ସମ୍ଭବ ନୁହେ ଜାଣି ହୀରାକୁଦ ସଂସ୍ଥା ପାଇଁ 'ଉଲ୍ଲାସ ମୂର୍ଚ୍ଛନା' ଶୀର୍ଷକ ଏକ ପଦ୍ୟ ଲେଖି ପଠାଇ ଦେବା ଅପେକ୍ଷା ନିଜେ ତାଙ୍କ ପାଖକୁ ଯିବା ସ୍ଥିର କଲି । ଯଥା ସମୟରେ

ସେଠାରେ ପହଞ୍ଚି ଉକ୍ତ ସଂସ୍ଥାର ସଭାପତି ଶ୍ରୀ ମିହିରଚନ୍ଦ୍ର ଖମାରୀଙ୍କ ସହ ଦେଖା କଲି । ଉକ୍ତ ସଂସ୍ଥାର ସେକ୍ରେଟେରୀ ମଧ୍ୟ ଆସି ମୋତେ ଦେଖି ବିଶେଷ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ କହିଲେ ଯେ ଆପଣ ଯଦି ନ ଆସୁଛନ୍ତି ତେବେ ଆମେ ଏଥର ଉତ୍ସବ ବନ୍ଦ କରି ଦେଉଛୁ — ପରେ ଆପଣ ଯେଉଁ ଦିନ ଆସିବାକୁ ସ୍ୱୀକୃତି ଦେବେ ସେହି ଦିନ କରିବୁ । ଘଟଣା ହେଲା ଦୁଇ ବର୍ଷ ପୂର୍ବେ ଉକ୍ତ ସଂସ୍ଥା ପଶ୍ଚିମ ଓଡ଼ିଶାର ଲେଖକ ମାନଙ୍କ ଠାରୁ ସେମାନଙ୍କର ପ୍ରକାଶିତ କବିତା ପୁସ୍ତକ ମାନ ପଠାଇବାକୁ ଖବର କାଗଜ ମାଧ୍ୟମରେ ଅନୁରୋଧ କରିଥିଲେ । ସେହି ପ୍ରସଙ୍ଗରେ ମୁଁ ମୋର କବିତା ପୁସ୍ତକ 'ଅଭିଶପ୍ତ'ଟିକୁ ଉକ୍ତ ପ୍ରତିଯୋଗିତା ସକାଶେ ପଠାଇ ଥିଲି । ସର୍ବମୋଟ ୬୨ ଜଣ କବିଂକ ୬୨ ଖଣ୍ଡ କବିତା ପୁସ୍ତକ ସେମାନଂକର ହସ୍ତଗତ ହୋଇ ଥିଲା । ସେଥି ମଧ୍ୟରୁ ମୁଁ ଲେଖିଥିବା ପୁସ୍ତକଟିକୁ ସେମାନେ ପ୍ରଥମ ସ୍ଥାନ ଦେଇ ନିର୍ବାଚନ କଲେ । ଫଳରେ ମୋତେ ସେଥିପାଇଁ 'ଆର୍ଯ୍ୟପଦ୍ମ' ଉପାଧି ପ୍ରଦାନ କରିବା ନିଷ୍ପତ୍ତି ଉକ୍ତ ସଂସ୍ଥା ଗ୍ରହଣ କରିଥାନ୍ତି ।

ମୁଁ ଉପସ୍ଥିତ ହୋଇ ନ ପାରିବା ହେତୁ ତାହା ୨୧ । ୧୧ । ୮୨ରେ ସେମାନେ ମୋତେ ଏକ ଉତ୍ସବରେ ପ୍ରଦାନ କରିଥିଲେ ।

ତା ୧୪ । ୩ । ୮୧ରେ ମୁଁ ରାଜ୍ୟ ସ୍ତରୀୟ ଉପାୟନ ଗ୍ରହଣ କରିବା ପାଇଁ ଉଦୟପୁର ଯାଇଥିଲି ।

ଉଦୟପୁର ଏକ ଛୋଟିଆ ଗ୍ରାମ । ସେଠାରେ ବାଞ୍ଛାନିଧି ପାଠାଗାର ନାମରେ ଏକ ବିରାଟ ପାଠାଗାର କର୍ମୀ ଶ୍ରୀ ଦାଶରଥି ପଟ୍ଟନାୟକଂକ ବିଶେଷ ଚେଷ୍ଟାରେ ଦୃଢ଼ତାର ସହ ମୁଣ୍ଡ ଟେକି ରହିଛି । ପାଠାଗାରର ଗୁରୁତ୍ୱ ହେଲା ଏତିକି ଯେ ବହୁ ଛାତ୍ର ଗବେଷଣା ପାଇଁ ସେଠାକୁ ଯାଇ ବିଭିନ୍ନ ବିଷୟରେ ଗବେଷଣା କରିଥାନ୍ତି । ପୁରାତନ ତାଳପତ୍ର ପୋଥି ଠାରୁ ଆରମ୍ଭ କରି ବିଭିନ୍ନ ସମୟର ବିଭିନ୍ନ ରଜା ମହାରଜାଂକ ସନନ୍ଦ, ମୁଦ୍ରା, ତାମ୍ରପଟା ଆଦି ଉକ୍ତ ଅନୁଷ୍ଠାନରେ ବୈଜ୍ଞାନିକ ପଦ୍ଧତିରେ ସାଇତା ହୋଇ ରଖାଯାଇଛି ।

୩ ଦିନ ଧରି ଉତ୍ସବ କାର୍ଯ୍ୟ ଚାଲିଥିଲା । ଓଡ଼ିଶାର ବିଶିଷ୍ଟ ସମାଜସେବୀ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଭୁବନେଶ୍ୱରରୁ ପୂର୍ବତନ ମନ୍ତ୍ରୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ମନ୍ତ୍ରୀ ଶ୍ରୀ ଭଜମନ ବେହେରା, ପ୍ରୋଫେସର ଦାଶରଥି ମିଶ୍ର ପ୍ରମୁଖ ବ୍ୟକ୍ତି ଗଣ ତଥା ନିଖିଳ ଉତ୍କଳରୁ ଆହୂତ କବି, ଚିତ୍ରକର, ଲଳିତ କଳା ବିଶାରଦ ଆଦି ବହୁ କୃତ ବିଦ୍ୟ ବ୍ୟକ୍ତିଂକ ଉପସ୍ଥିତିରେ ଯେପରି ଉବେ ସାହିତ୍ୟାଲୋଚନା, ସମାଜ ଚେତନା ତଥା ପରିଶେଷରେ ରାଜ୍ୟସ୍ତରୀୟ ଉପାୟନ ପ୍ରଦାନ ଉତ୍ସବ ସଂଘଟିତ ହୋଇଥିଲା ତାହା ବାସ୍ତବିକ ଅନିର୍ବଚନୀୟ କହିଲେ ହେବ ।

ଶ୍ରୀଯୁକ୍ତ ଦାଶରଥି ପଟ୍ଟନାୟକ ଏକକ ଉଦ୍ୟମରେ ବର୍ଷେ କିମ୍ବା ୨ ବର୍ଷରେ ଏପରି ସମାରୋହ କରି ଆସୁଥିବାର ଜାଣି ତାଂକ ନିଷ୍ଠା ତଥା ତ୍ୟାଗ ମନୋଭାବ ନିକଟରେ ବାର ବାର ମୁଣ୍ଡ ନୁଆଇ ପ୍ରଣତି ଜ୍ଞାପନ କରିବାକୁ ଇଚ୍ଛା ହେଲା ।

୧୫ । ୩ । ୮୧ ଦିବସର ଉତ୍ସବରେ ଉକ୍ତ ଅନୁଷ୍ଠାନ ମୋତେ ଯେଉଁ ମାନପତ୍ର ତଥା ଉତ୍କଳମଣି ଗୋପବନ୍ଧୁଙ୍କ ଏକ ପ୍ରସ୍ତର ମୂର୍ତ୍ତି ଉପାୟନ ଆକାରରେ ପ୍ରଦାନ କଲେ ତାହା ମୁଁ ଅତି ଯତ୍ନର ସହିତ ଘରେ ସାଇତି ରଖିଛି ।
ମାନପତ୍ରର ପ୍ରତିଲିପି ହେଲା—

## ଯଦୁମଣି ସାହିତ୍ୟ ସଂସଦ

### ଉଦୟପୁର, ନୂଆଗାଁ, ଜି: ପୁରୀ

ମାନନୀୟ ଶ୍ରୀଯୁକ୍ତ ବୀରବର ଦାଶ ମହୋଦୟ !

ମହାଶୟ,

ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ନିମିତ୍ତ ଆପଣ ନାନାବିଧ ମୌଳିକ ରଚନା ସୃଷ୍ଟିରେ ସିଦ୍ଧହସ୍ତ । ବ୍ୟକ୍ତିଗତ ଭାବେ ଆପଣ କଠିନ ଅଧ୍ୟବସାୟ ପୂର୍ବକ ସଂଯମ, ଶୃଙ୍ଖଳା, ନମ୍ରତା ଓ ଶିଷ୍ଟତା ଆଦି ସଦାଚାରରେ ସମ୍ପନ୍ନ । ଆଶା, ନିରାଶା; ହର୍ଷ, ବିଷାଦ ଜୀବନର ପ୍ରତ୍ୟେକ ଅବସ୍ଥାରେ ଆପଣ ସାହିତ୍ୟ ସାଧନାକୁ ଅନ୍ତରଙ୍ଗ ସୁହୃଦ ମନେକରି ଆସି ଅଛନ୍ତି ।

ଆପଣ ଏକାଧାରରେ ଜଣେ ବିଶିଷ୍ଟ ଗାଳ୍ପିକ, ପ୍ରାବନ୍ଧିକ, ସମାଲୋଚକ, ଔପନ୍ୟାସିକ, ସମାଜ ସଂସ୍କାରକ ତଥା ଜଣେ ଛାତ୍ର ବତ୍ସଳ ଆଦର୍ଶ ଶିକ୍ଷକ ଭାବେ ସୁପରିଚିତ ।

ଆଜିର ଏହି ଶୁଭ ଅବସରରେ ଆପଣଂକର ଉଜ୍ଜ୍ୱଳ ପ୍ରତିଭାକୁ ସମ୍ମାନ ଜଣାଇ 'ଯଦୁମଣି ସାହିତ୍ୟ ସଂସଦ' ଆପଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଅଛି ।

| | | |
|---|---|---|
| ସ୍ୱା:ନ: ଦାଶରଥି ପଟ୍ଟନାୟକ | ସ୍ୱା:ନ: ନିତ୍ୟାନନ୍ଦ ମହାପାତ୍ର | ସ୍ୱା:ନ: ରାମଚନ୍ଦ୍ର ମିଶ୍ର |
| ସମ୍ପାଦକ | ମୁଖ୍ୟ ଅତିଥି | ସଭାପତି |

ଉଦୟପୁର ତା ୧୫ । ୩ । ୧୯୮୧

ଏହି ପରିପ୍ରେକ୍ଷୀରେ ଛପା କରା ଯାଇଥିବା ଏକ ପୁସ୍ତିକାରେ ଓଡିଶାର ବିଭିନ୍ନ ଜିଲ୍ଲାରୁ ଆସିଥିବା ସମ୍ବର୍ଦ୍ଧିତ ବ୍ୟକ୍ତିବିଶେଷଙ୍କ ବିବରଣ ମଧ୍ୟ ରହିଅଛି ଏବଂ

ତାହା ସଂପୃକ୍ତ ବ୍ୟକ୍ତିଙ୍କୁ ୨ ଖଣ୍ଡ କରି ଯାହା ବିତରଣ କରା ଯାଇଥିଲା ଉକ୍ତ ବିବ-ରଣୀ ମଧ୍ୟରୁ ମୋ ସମ୍ବନ୍ଧରେ ଲେଖାଥିବା ବିଷୟ ହେଉଛି ଏହା —

ଶ୍ରୀ ବୀରବର ଦାଶ

ଜନ୍ମ- ତା ୧୭ । ୬ । ୧୯୧୪

ଜନ୍ମସ୍ଥାନ- ରେମଣ୍ଡା, ସମ୍ବଲପୁର; ପିତା- ୰ ଶ୍ୟାମସୁନ୍ଦର ଦାଶ

ମାତା- ୰ ଯମୁନା ଦେବୀ ।

ଜନ୍ମର ଏକାଦଶ ମାସର ଅବ୍ୟବହିତ ପରେ ଏକ ଦିନରେ ଉଭୟ ପିତା ଓ ମାତାଙ୍କୁ ହରାଇ ଓ ପରେ ପିତାମହୀ କୌଶଲ୍ୟା ଦେବୀଙ୍କ ଦ୍ୱାରା ଲାଳିତ ପାଳିତ ହେବା ସମୟରେ ତାଙ୍କୁ ହରାଇ ଶ୍ରୀ ଦାଶଙ୍କର ବାଲ୍ୟକାଳ ଅତି ଦୁଃଖାବହ ଓ ଦୁର୍ଦ୍ଦଶାଗ୍ରସ୍ତ ହୋଇ ପଡିଥିଲା । ସମୟ କ୍ରମେ ଶିକ୍ଷକତାକୁ ଜୀବିକା ଭାବେ ବାଛି ନେଇଥିଲେ ।

୧୯୬୨ ରେ ଜନସେବା ପାଇଁ ଭାରତ ସରକାରଂକଠାରୁ ସ୍ୱର୍ଣ୍ଣ ପଦକ ଲାଭ ଓ ୧୯୬୪ ରେ କୃତୀ ଶିକ୍ଷକ ଭାବେ ରାଜ୍ୟ ସରକାରଂକଠାରୁ ପୁରସ୍କାର ପ୍ରାପ୍ତ । ଜଣେ ପ୍ରବନ୍ଧକ ଭାବେ ଜିଲ୍ଲା ତଥା ଆଞ୍ଚଳିକ ସ୍ତରରେ ବହୁବାର ପ୍ରଶଂ-ସିତ ଓ ପୁରସ୍କୃତ । ଜଣେ କୁଶଳୀ ଅଭିନେତା ଭାବେ ୧୯୩୧ ରୁ ୧୯୬୪ ପର୍ଯ୍ୟନ୍ତ ବିଭିନ୍ନ ସୌଖୀନ ରଙ୍ଗମଞ୍ଚରେ ଅବତୀର୍ଣ୍ଣ ହୋଇ ଦକ୍ଷତା ଓ ଗୌରବ ଅର୍ଜନ । ୧୯୭୬ ରେ ସମ୍ବଲପୁର ଜିଲ୍ଲା ଲେଖକ ସମ୍ମେଳନ କର୍ତ୍ତୃକ ବିଶିଷ୍ଟ ସାହିତ୍ୟିକ ଭାବେ ଉପାୟନ ପ୍ରାପ୍ତ ।

କୁମୁଦ୍ୱତୀ, ଯୁଗପଥେ ବ୍ରାହ୍ମଣ, ପ୍ରେମର ପ୍ରତିଦାନ, ସମାଧାନ, ମରୀ-ଚିକାର ଛେଉ, ନିୟତିର ପରିହାସ, ଅଭିଶପ୍ତ, ହର୍ଷ ଦ୍ୟୋତନା, ଅବିସ୍ମରଣୀୟ ମୁହୂର୍ତ୍ତ, ଐତିହାସିକ ଶିବପ୍ରସାଦ ଦାଶ, ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ ଆଦି ପ୍ରାୟ ଏଗାର ଖଣ୍ଡ ବିଭିନ୍ନ ପ୍ରକାର ଗ୍ରନ୍ଥ ପ୍ରକାଶିତ ।

ଓଡ଼ିଆ ସାହିତ୍ୟର ଜଣେ ନିଷ୍ଠାପର ସେବକ ଭାବେ ଶ୍ରୀ ଦାଶଙ୍କର ସେବା ଉତ୍କଳ-ଭାରତୀଙ୍କ ନିକଟରେ ନ୍ୟୂନ ନୁହେଁ ।

---

ସେହିବର୍ଷ ମଯୀ ମାସର ୨୩ ତାରିଖରେ ସ୍ଥାନୀୟ ନିର୍ଝର ସାହିତ୍ୟ ସଂସଦ ପକ୍ଷରୁ ମୋତେ ଆଉ ଏକ ମାନପତ୍ର ନିମ୍ନଲିଖିତମତେ ମିଳିଥିଲା ।

## ନିର୍ଝର ସାହିତ୍ୟ ସଂସଦ

ବରଗଡ, ଜି: ସମ୍ବଲପୁର
ତା ୨୩ । ୪ । ୮୧

ସମ୍ମାନନୀୟ ଶ୍ରୀଯୁକ୍ତ ବୀରବର ଦାଶ ମହୋଦୟ ସମ୍ମାନ ବରେଷୁ,

ମହାଶୟ,

ଓଡ଼ିଆ ସାହିତ୍ୟର ପରିପ୍ରକାଶ ଓ ପରିବର୍ଦ୍ଧନରେ ପଶ୍ଚିମ ଓଡ଼ିଶାର ଯେଉଁ ବରେଣ୍ୟ ଲେଖକ ମାନଙ୍କର କଠୋର ଅଧ୍ୟବସାୟ, ବୌଦ୍ଧିକ ପ୍ରେରଣା ଓ ନିଃସ୍ୱାର୍ଥତାର ତ୍ୟାଗ ରହିଛି ସେମାନଙ୍କ ମଧ୍ୟରେ ଆପଣ ହେଉଛନ୍ତି ଅନ୍ୟତମ । ଆପଣଙ୍କର ଉଦ୍‌ବୋଧୀପକ କାବ୍ୟ, କବିତା, ଗଳ୍ପ, ସଂସ୍କାର ମୂଳକ ପ୍ରବନ୍ଧ, ଉପନ୍ୟାସ ଓ ସମାଲୋଚନା ପ୍ରଭୃତି ସଂପ୍ରତି ସାହିତ୍ୟର ବିବର୍ତ୍ତିତ ପରମ୍ପରା ମଧ୍ୟରେ ଏକ ନୂତନ ବିସ୍ମୟ ସୃଷ୍ଟି କରିଛି ।

ଆଜିର ଏଇ ଶୁଭ ଅବସରରେ ଆପଣଙ୍କ ଉଚ୍ଚକୋଟୀର ସାହିତ୍ୟା-ଦର୍ଶକୁ ସମ୍ମାନ ଜଣାଇ 'ନିର୍ଝର ସାହିତ୍ୟ ସଂସଦ' ଆପଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଅଛି ।

ସ୍ୱାଃନଃ ଶଙ୍କର ପ୍ରସାଦ ପୁରୋହିତ
ମୁଖ୍ୟ ଅତିଥି
ତା ୨୩ । ୪ । ୮୧

ସ୍ୱାଃନଃ ରାଧାବଲ୍ଲଭ ମିଶ୍ର
ସଭାପତି
ତା ୨୩ । ୪ । ୮୧

ସ୍ୱାଃ ନଃ ଦିବ୍ୟକିଶୋର ଦେବତା
ସଂସଦୀୟ ସମ୍ପାଦକ
ତା ୨୩ । ୪ । ୮୧

ଏହି ସମୟର ମଧ୍ୟରେ 'ନୀତି ମଞ୍ଜୁଷା' ପୁସ୍ତକଟି ପ୍ରକାଶିତ ହୋଇଥିଲା । ପୁସ୍ତକଟିକୁ ପ୍ରକାଶ କରିଥିଲେ ଶ୍ରୀ ହରିହର ହଟାଇ, ରେମଣ୍ଡା ।

ପୁସ୍ତକଟିର ମୁଖବନ୍ଧ ଲେଖିବାକୁ ଯାଇ ଶ୍ରୀ ଶଶିଭୂଷଣ ଦାଶ ଲେଖିଛନ୍ତି- କବି ଶ୍ରୀ ବୀରବର ଦାଶଙ୍କ ଦ୍ୱାରା ଲିଖିତ ନୀତି ମଞ୍ଜୁଷା ପୁସ୍ତକର ପାଣ୍ଡୁଲିପି ପାଠ କରି ମୁଁ ଆଶାତିରିକ୍ତ ମୁଗ୍ଧ ହୋଇଛି । ଶ୍ରୀଯୁକ୍ତ ଦାଶ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଲବ୍‌ଧ ପ୍ରତିଷ୍ଠ ସାହିତ୍ୟିକ, ଗାଳ୍ପିକ; ଔପନ୍ୟାସିକ, ସମାଲୋଚକ ତଥା ଗବେଷକ ଅଟନ୍ତି । ତାଙ୍କ ଦ୍ୱାରା ଲିଖିତ ଏଗାର ଖଣ୍ଡ ବିଭିନ୍ନ ବିଷୟର ପୁସ୍ତକ ଆପାତତଃ ପ୍ରକାଶ ଲାଭ କରି ଥିବାର ମୁଁ ଜାଣେ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ

ସେ ଗାଳ୍ପିକ ଭବରେ ଯେପରି ପ୍ରତିଷ୍ଠା ଲଭ କରି ଅଛନ୍ତି, ଭଣେ ଔପନ୍ୟାସିକ, ସନ୍ଦର୍ଭ ଲେଖକ ଓ ଜୀବନୀ ଲେଖକ ଭବେ ମଧ୍ୟ ତାଙ୍କର ଯଥେଷ୍ଟ ପ୍ରଶସ୍ତି ରହି ଥିବାର ଦୃଷ୍ଟାନ୍ତ, ପତ୍ରପତ୍ରିକା ମାନଙ୍କରେ ପ୍ରକାଶିତ ବିଭିନ୍ନ ବିଶିଷ୍ଟ ସାହିତ୍ୟିକ ଗଣଙ୍କର ମନ୍ତବ୍ୟରୁ ସୂଚୀତ ହୁଏ ।

× × × × × ×

କାବ୍ୟିକ ଦୃଷ୍ଟିରୁ ବିଚାର କଲେ ପୁସ୍ତକଟିର ଲିଖନ ଶୈଳୀ ଭବ ବିନ୍ୟାସ ଚାତୁରୀ ମନୋହର, ହୃଦ୍ୟ, ନୀତିପ୍ରଦ ତଥା ଶାଳୀନତା ପଦବାଚ୍ୟ । ପୁସ୍ତକଟିର ଯେ କୌଣସି ଅଂଶ ପାଠ କଲେ ସୁରୁଚିପୂର୍ଣ୍ଣ ନୀତିକଥା ଗୁଡ଼କହିଁ ପାଠକ ଚକ୍ଷୁରେ ପ୍ରତିଭତ ହୋଇଥାଏ ।

× × × × × ×

ସାହିତ୍ୟ ମାଧ୍ୟମରେ ଆମ୍ଭେମାନେ ସ୍ୱକୀୟ ସନ୍ଦେହାଚ୍ଛନ୍ନ ଜିଜ୍ଞାସା ମନୋଭବକୁ ନିଃସନ୍ଦେହ ମୁକ୍ତ କରିଥାଉଁ । ମାନବ ହୃଦୟର ଗଭୀରତମ ପ୍ରଦେ- ଶରେ ଯେଉଁ ଭବରାଶି ଜଳଧି ତଳର ରତ୍ନରାଶି ଭଳି ନୟନର ଅନ୍ତରାଳରେ ଅନାଦି କାଳରୁ ବିରାଜିତ, ସାହିତ୍ୟ ମାଧ୍ୟମରେ ଆମ୍ଭେମାନେ ସେହି ନିଭୃତ ଶାଶ୍ୱତ ଅପୂର୍ବ ଭବପୁଞ୍ଜର ସାକ୍ଷାତ କରିଥାଉ ।

ବୀରବର ବାବୁ ସାହିତ୍ୟର ସେହି ନିଗୂଢ ତତ୍ତ୍ୱଚୟର ସନ୍ଧାନ କରି ଆମ୍ଭ ମାନଙ୍କ ସମ୍ମୁଖରେ ଯେଉଁଭଳି ଭବେ ଉପସ୍ଥାପନ କରି ଅଛନ୍ତି ତାହା ଚିନ୍ତନ ଯୋଗ୍ୟ, ତର୍କ ବିହୀନ ଅନୁଶୀଳନ ସାପେକ୍ଷ ।

× × × × × ×

ସ୍ୱାଃ ନଃ ଶ୍ରୀ ଶଶି ଭୂଷଣ ଦାଶ
ଶିକ୍ଷା ଜିଲ୍ଲା ଅଧିକାରୀ
ଧରମଗଡ
ତା ୨୮ । ୪ । ୮୧

ନୀତି ମଂଜୁଷା ସମ୍ବନ୍ଧରେ ଶ୍ରୀ ସାଧୁଚରଣ ପଟ୍ଟନାୟକ ଲେଖିଛନ୍ତି

× × × × × ×

ନୀତି ପ୍ରଦାୟକ ନୀତି ମଂଜୁଷା ଗ୍ରନ୍ଥଟିର ଅପୂର୍ବ କଳା କୌଶଳ ବିଷୟ ବିଚାରକୁ ନେଲେ କବି ପ୍ରତିଭର ଅମଳିନ ଜ୍ୟୋତି ସୁସ୍ପଷ୍ଟ ପ୍ରତିଭତ ହୁଏ ।

ଶିକ୍ଷକ ଜୀବନର ପ୍ରାକ୍‌କାଳରୁ ପ୍ରତିଭର ଆଦ୍ୟସ୍ଫୁରଣ ଘଟିଥିବା ହେତୁ ତାଙ୍କର ଉତ୍ତର ଜୀବନରେ ସେ ଏଭଳି ବୈଚିତ୍ର୍ୟ ଓ ବଳିଷ୍ଠ ପ୍ରତିଭର ଅଧିକାରୀ

ହୋଇ ପାରିଛନ୍ତି । ମୌଳିକ ଉପାଦାନର ଉପାଦେୟତା ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିବା ହେତୁ, ଦୁଷ୍ପ୍ରାପ୍ୟ ନୀତି ଗୁଡ଼ିକ ଉପରେ ସେ ଗଭୀର ଚିନ୍ତା ଓ ଅନୁଶୀଳନ କରି ପାଠକ ବର୍ଗଙ୍କୁ ପରିବେଷଣ କରି ଅଛନ୍ତି ।

× × × × × ×

ସ୍ଥିତଧୀ କବି ବୀରବର ଦାଶ ଏଭଳି ଏକ ନୀତିଗ୍ରନ୍ଥ ଲେଖି ଉତ୍କଳ ଭାରତୀଂକ କୋଠ ଭଣ୍ଡାରକୁ ସମୃଦ୍ଧ କରିବା ଆମ ପାଇଁ କମ ଗୌରବର ବିଷୟ ନୁହେ ।

ତା ୨୩ । ୪ । ୮୧

ସ୍ୱାଃ ନଃ ସାଧୁଚରଣ ପଟ୍ଟନାୟକ
ସଂପାଦକ
ପ୍ରଗତି ସାହିତ୍ୟ ପରିଷଦ, ବରଗଡ

ଗତ ୧୭-୬-୮୨ଇଃ ମୋର ଜନ୍ମ ଦିବସ । ଉକ୍ତ ଦିବସ ପ୍ରତି ଲକ୍ଷ୍ୟ ରଖି 'ଯୁଗବାର୍ତ୍ତା' ଦୈନିକ ପତ୍ରିକା, ରାଉରକେଲା ୯ମ ବର୍ଷ, ୧୨୪ ସଂଖ୍ୟା ତା ୧୩ । ୬ । ୮୨ରେ ପ୍ରତିଭା ପରିଚୟ ବିଭାଗରେ ମୋ ବିଷୟ ନେଇ ଯାହା ଲେଖିଥିଲେ ତହିର ପ୍ରତିଲିପି ହେଲା—

ପ୍ରତିଭା ପରିଚୟ

## ଆର୍ଯ୍ୟପଦ୍ମ କବି ଶ୍ରୀ ବୀରବର ଦାଶ

ଓଡ଼ିଆ ଭାଷାର ଜଣେ ବିଶିଷ୍ଟ ଲେଖକ ରୂପେ ଶ୍ରୀଯୁକ୍ତ ବୀରବର ଦାଶ ପରିଚିତ । ତାଂକର ଜନ୍ମ ସମ୍ବଲପୁର ଜିଲ୍ଲାର ଭେଡେନ ଥାନା ଅନ୍ତର୍ଗତ ରେମଣ୍ଡା ଗ୍ରାମରେ । ୧୯୧୪ ସାଲ ଆଷାଢ଼ କୃଷ୍ଣ ନବମୀ (୧୭ । ୬ । ୧୪) ତିଥିରେ ସେ ଉକ୍ତ ଗ୍ରାମରେ ଭୂମିଷ୍ଠ ହୋଇଥିଲେ ।

ତାଂକର ଅନ୍ତର୍ନିହିତ ପ୍ରତିଭା ଅଙ୍କୁରିତ ହେବାପାଇଁ ସେ ଦୁଇଟି ସୁଯୋଗ ପାଇଥିଲେ । ଏହି ସମ୍ଭ୍ରାନ୍ତ ବଂଶର ମହିଳା ତାଂକ ତେଜସ୍ୱିନୀ ଜେଜେ ମାଆ (ପିତାମହୀ) ବହୁଗଳ୍ପ, କାହାଣୀ, ଭଗଦ୍ଭକ୍ତି ଓ ସାମାଜିକ କର୍ତ୍ତବ୍ୟ ବିଚାର ବିଷୟରେ ତ ତାଙ୍କୁ ପ୍ରଥମରୁ ବହୁ ଧାରଣା ଦେଇଥିଲେ । କୈଶୋର ଓ ତାରୁଣ୍ୟରେ ସେ କବିବର ଗଙ୍ଗାଧର ମେହେରଂକ ବହୁ ସଂସ୍ପର୍ଶରେ ଆସି ତାଂକ ଚରିତ୍ର, ଆଦର୍ଶ ଓ କର୍ମରୁ ପ୍ରେରଣା ମଧ୍ୟ ଲାଭ କରିଥିଲେ ।

ଶ୍ରୀଯୁକ୍ତ ଦାଶ ହେଉଛନ୍ତି ଏକାଧାରରେ ଜଣେ କାବ୍ୟିକ, ନାଟ୍ୟକାର, ସାହିତ୍ୟିକ, ଗାଳ୍ପିକ, ଔପନ୍ୟାସିକ ତଥା କବି । ତାଂକର ଦ୍ୱାରା ଲିଖିତ କାବ୍ୟ କୁମୁଦବତୀ, ସର୍ବ ପ୍ରଥମେ ୧୯୩୯ ସାଲରେ ପ୍ରକାଶିତ ହୋଇ ତତ୍କାଳୀନ

ଅବସ୍ଥାରେ ବିଶେଷ ଜନାଦୃତ ହୋଇଥିଲା । ତାପରେ ଯୁଗପଥେ ବ୍ରାହ୍ମଣ ପୁସ୍ତକଟି ପ୍ରକାଶିତ ହେବା ଦ୍ୱାରା ସମାଜ ସଂସ୍କାର ଦିଗରେ ତାଂକର ବୈପ୍ଳବିକ ଦୃଷ୍ଟି-କୋଣ କଅଣ ତାହା ଜନ ସାଧାରଣ ବିଶେଷ ଭାବେ ଉପଲବ୍ଧି କରି ପାରିଥିଲେ ।

ପ୍ରେମର ପ୍ରତିଦାନ ଓ ସମାଧାନ ନାମକ ଦୁଇଖଣ୍ଡ ବାସ୍ତବ ଧର୍ମୀ ଉପନ୍ୟାସ ବିଶେଷ ଚିନ୍ତାଦ୍ୟୋତକ ଅଟେ ।

'ମରୀଚିକାର ଢେଉ' ଏବଂ 'ନିୟତିର ପରିହାସ' ନାମକ ୨ ଖଣ୍ଡ କ୍ଷୁଦ୍ର ଗଳ୍ପ ପୁସ୍ତକ ଯାହା ପ୍ରକାଶିତ ହୋଇଅଛି ତାହା ଅତ୍ୟନ୍ତ ସାରଗର୍ଭକ ତଥା ଉପା-ଦେୟ—ଏହା ଯେ କୌଣସି ପାଠକ ମୁଖରୁ ଶୁଣାଯାଏ ।

'ଐତିହାସିକ ଶିବ ପ୍ରସାଦ ଦାଶ' ଓ 'ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ' ଦୁଇଟି ଜୀବନୀ ଗ୍ରନ୍ଥ ଲେଖି ସେ ପଶ୍ଚିମ ଓଡ଼ିଶାର ଏକ ବହୁ ଅନୁଭୂତ ଅଭାବ ଦୂର କରିବାରେ ସମର୍ଥ ହୋଇ ଅଛନ୍ତି । ହର୍ଷ ଦ୍ୟୋତନା, ଉଲ୍ଲାସ ମୂର୍ଚ୍ଛନା, ଅବିସ୍ମରଣୀୟ ମୁହୂର୍ତ୍ତ, ଅଭିଶପ୍ତ ନୀତି ମଞ୍ଜୁଷା ଆଦି କ୍ଷୁଦ୍ର ବୃହତ୍ ପୁସ୍ତକ ଗୁଡ଼ିକ ଲେଖି ସେ ସ୍ୱୀୟ କବି ପ୍ରତିଭାର ପରିଚୟ ଦେଇ ଅଛନ୍ତି । ତାଂକର ଲେଖାଗୁଡ଼ିକ ସାବଲୀଳ ଭାଷା, ସାର୍ବଜନୀନ ଭାବ, ଶିକ୍ଷଣୀୟ ବିଷୟବସ୍ତୁରେ ସମୃଦ୍ଧ ହୋଇ-ଥିବାରୁ ଲୋକ ପ୍ରିୟ ହୋଇଥାଏ ।

ବୀରବର ବାବୁ ବହୁ ସାହିତ୍ୟ ସଂସ୍ଥା ଦ୍ୱାରା ସମ୍ମାନିତ ତଥା ଉପାୟନ ପ୍ରାପ୍ତ ହୋଇ ଅଛନ୍ତି ।

ସମ୍ବଲପୁର ଜିଲ୍ଲା ଲେଖକ ସମ୍ମିଳନୀ, ଯଦୁମଣି ସାହିତ୍ୟ ସଂସଦ, ନିର୍ଝର ସାହିତ୍ୟ ସଂସଦ ଆଦି ଅନୁଷ୍ଠାନ ଗୁଡ଼ିକ ତାଙ୍କୁ ସମ୍ମାନ ପ୍ରଦାନ କରି ପୂଜ୍ୟ ପୂଜାର ପରମ୍ପରା ରକ୍ଷା କରି ଅଛନ୍ତି ।

ବିଶାଳ ହୀରାଖଣ୍ଡ ସାହିତ୍ୟ ବିହାର ତାଂକର ଅଭିଶପ୍ତ ପୁସ୍ତକ ନିମିତ୍ତ ତାଙ୍କୁ ଆର୍ଯ୍ୟପଦ୍ମ ଉପାଧି ପ୍ରଦାନ କରି ଅଛନ୍ତି । ମାନ୍ୟବର ଭାରତ ସରକାର ତାଙ୍କୁ ସମାଜ ସେବା ପାଇଁ ସ୍ୱର୍ଣ୍ଣ ପଦକ ତଥା ଓଡ଼ିଶା ସରକାର ଜଣେ କୃତୀ ଶିକ୍ଷକ ରୂପେ ତାଙ୍କୁ ସମ୍ମାନିତ ତଥା ପୁରସ୍କୃତ କରି ନିଜର କର୍ତ୍ତବ୍ୟ ସଂପାଦନ କରି ଅଛନ୍ତି । ସେ ଚାକିରୀରୁ ଅବସର ଗ୍ରହଣ ପରେ ଯୁବୋଚିତ ଉଦ୍ୟମରେ ତାଂକର ସଫଳ ଲେଖନୀ ଚଳାଇ ଅଛନ୍ତି ।

ଆଗାମୀ ତା ୧୭ । ୬ । ୮୨ ରେ ତାଂକର ୬୮ ତମ ସ୍ୱନକ୍ଷତ୍ର ଦିବସ । ଏହି ଶୁଭ ଜୟନ୍ତୀ ଅବସରରେ 'ଯୁଗବାର୍ତ୍ତା' ତାଂକର ସହସ୍ର ପୂର୍ଣ୍ଣଚନ୍ଦ୍ର ଦର୍ଶନ କାମନା କରିବା ସଙ୍ଗେ ସଙ୍ଗେ ତାଂକର ମହତ୍ତର ପ୍ରତିଭା ପ୍ରତି ସମ୍ମାନ ପ୍ରଦର୍ଶନ

କରି ନିଜକୁ ଗୌରବାନ୍ୱିତ ମନେକରି ସେ ଯୁଗବାର୍ତ୍ତା ପ୍ରତି ତାଂକର ଆନ୍ତରିକ ସହଯୋଗ ଅକ୍ଷୁର୍ଣ୍ଣ ରଖିବାକୁ ନିବେଦନ କରୁଅଛି ।

ଶ୍ରୀ ରଘୁନାଥ ମିଶ୍ର
ସମ୍ପାଦକ, 'ଯୁଗବାର୍ତ୍ତା'

ବିଶାଳ ହୀରଖଣ୍ଡ ସାହିତ୍ୟ ବିହାର ହୀରାକୁଦ 'ଅଭିଶପ୍ତ' ପୁସ୍ତକ ନିମିତ୍ତ ଆର୍ଯ୍ୟପଦ୍ମ ଉପାଧି ପ୍ରଦାନ କରିବା ବିଷୟ ଗତ ତା ୧୫ । ୩ । ୮୧ ପୂର୍ବରୁ ଅନୁଷ୍ଠାନର କାର୍ଯ୍ୟକାରୀ ସମିତି କର୍ତ୍ତୃକ ନୀତିଗତ ଭବେ ପ୍ରସ୍ତାବ ଗୃହୀତ ହୋଇ ସାରି ମୋତେ ଜଣାଇ ଦିଆ ଯାଇଥିଲା । ମୋର ଅନୁପସ୍ଥିତି ସକାଶେ ତାହା ସ୍ଥଗିତ ରହିଥିଲା । ଗତ ତା ୨୧ । ୧୧ । ୮୨ ଦିନ ସମ୍ବଲପୁର ସହରସ୍ଥ ପୌରସଭା ଗୃହରେ ଏକ ମନୋଜ୍ଞ ପରିବେଶ ମଧ୍ୟରେ ଉକ୍ତ ଉତ୍ସବ ଅନୁଷ୍ଠିତ ହୋଇଥିଲା । ସେଦିନ ଅନୁଷ୍ଠାନ ପକ୍ଷରୁ ମୋତେ ଯେଉଁ ମାନପତ୍ର ପ୍ରଦାନ କରିଥିଲେ ତହିଁର ପ୍ରତିଲିପି ହେଉଛି —

## ବିଶାଳ ହୀରାଖଣ୍ଡ ସାହିତ୍ୟ ବିହାର, ହୀରାକୁଦ

ପ୍ରତିଷ୍ଠାତା– କୁଳକବି ମିତ୍ରଭାନୁ ଖମାରୀ
Regd. No. 114 - 48 of 1981 - 82

ନଂ : ୯ ତା ୧୮ । ୧ । ୧୯୮୦

V. H. SAHITYA VIHAR, HIRAKUD
Dist- Sambalpur

ଏଇ ମହୋପାଧି ପତ୍ର ଆମ ଓଡ଼ିଆ ଜାତିର ସ୍ରଷ୍ଟା ତଥା ଭାଗ୍ୟ ନିର୍ମାତା ଶ୍ରୀଯୁକ୍ତ କବି ବୀରବର ଦାଶଙ୍କ ପ୍ରତି ଉଦ୍ଦିଷ୍ଟ । ସ୍ଥାନ କାଳ ପାତ୍ର ନିର୍ବିଶେଷରେ ଓଡ଼ିଆ ଲେଖକଙ୍କୁ ଉପାଧି ପ୍ରଦାନ ପୂର୍ବକ ସମ୍ମାନ ପ୍ରଦର୍ଶନ କରାଯିବା ଲାଗି ଆମ ସାହିତ୍ୟ ବିହାର ସଂକଳ୍ପବଦ୍ଧ ଥିବା ସ୍ଥଳେ ୧୯୮୦ ଖ୍ରୀ: ପାଇଁ ଲେଖା ପ୍ରତିଯୋଗିତା କ୍ଷେତ୍ରରେ କବିତା ଅଭିଶପ୍ତ ପୁସ୍ତକ ଯୋଗୁଁ ଆପଣଙ୍କୁ ସମାଦରେ ସ୍ୱାଗତ ଜଣାଉଛି ।

ଏଣୁ ଆପଣଙ୍କ ସାହିତ୍ୟ ସେବାରେ ଆମେ ବିମୁଗ୍ଧ ବଶତଃ ଆପଣଙ୍କୁ ଜାତୀୟ ମର୍ଯ୍ୟାଦା ସଂପନ୍ନ 'ଆର୍ଯ୍ୟପଦ୍ମ' ଉପାଧିରେ ଭୂଷିତ କଲୁଁ । ଆପଣ ଆମ

ଓଡ଼ିଆ ଜାତିର ସ୍ୱର୍ଗୀୟ ଗୌରବ । ଆପଣଙ୍କ ବିଦ୍ୱତ୍ତା ପ୍ରତି ଆମର ଗଭୀର ଅଭି-ନନ୍ଦନ ରହିଛି ।

ସ୍ୱାଃ ନଃ ଲୋକନାଥ ମିଶ୍ର
ମୁଖ୍ୟ ଅତିଥି
୨୧ । ୧୧ । ୮୨

ସ୍ୱାଃ ନଃ ଶ୍ରୀବଲ୍ଲଭ ପାଣିଗ୍ରାହୀ
ସଭାପତି
୨୧ । ୧୧ । ୮୨

ସ୍ୱାଃ ନଃ ବିଷ୍ଣୁ ଚରଣ ବିଶୋଇ
ସଂପାଦକ
Secretary
Vishal Hirakhanda Sahitya Vihar
Hirakud

ସ୍ୱାଃ ନଃ ମିତ୍ରଭନୁ ଖମାରୀ
ସଭାପତି
ବିଶାଳ ହୀରାଖଣ୍ଡ ସାହିତ୍ୟ ବିହାର
ହୀରାକୁଦ, ସମ୍ବଲପୁର

୧୯୮୩ ଖ୍ରୀଃରେ 'ସନ୍ଧ୍ୟାବାଳୀ ଶୋକ' ପୁସ୍ତିକାଟି ପ୍ରକାଶିତ । ପ୍ରକାଶିକା କୁମାରୀ ସଂଧ୍ୟାବାଳୀ ପଣ୍ଡା, ଶିକ୍ଷୟିତ୍ରୀ, ବରଗଡ ।

ଗତ ତା ୫ । ୩ । ୮୩ରେ ସମ୍ବଲପୁର ସ୍ଥିତ ସିଦ୍ଧେଶ୍ୱରୀ ଧର୍ମ ସଂସଦ ଓଡ଼ିଶା ସାଂସ୍କୃତିକ ସମାଜ ଗୃହରେ ଏକ ମନୋଜ୍ଞ ପରିବେଶରେ ମୋତେ ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ ଯାଇ ମାନପତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ 'କଥାସାଗର' ଉପାଧିରେ ଭୂଷିତ କରି ଉପାୟନ ପ୍ରଦାନ କରିଥିଲେ । ଯେଉଁ ମାନପତ୍ର ଉକ୍ତଦିନ ସଭାରେ ପଠିତ ହୋଇଥିଲା ତହିଁର ପ୍ରତିଲିପି ହେଲା —

## ସିଦ୍ଧେଶ୍ୱରୀ ଧର୍ମ ସଂସଦ, ସମ୍ବଲପୁର

ସୁସାହିତ୍ୟିକ ଶ୍ରୀଯୁକ୍ତ ବୀରବର ଦାଶ, ବରଗଡ ମହୋଦୟେଷୁ,
ମହାଶୟ,

ଆପଣଙ୍କ ଜନ୍ମହୁଏ ପଶ୍ଚିମ ଓଡ଼ିଶାର ସମ୍ବଲପୁର ଜିଲ୍ଲାର ରେମଣ୍ଡା ଗ୍ରାମରେ ୧୯୧୫ ମସିହା ଜୁନ ମାସ ୧୭ ତାରିଖରେ ଶ୍ୟାମସୁନ୍ଦର ଦାଶଙ୍କ ପରିବାରରେ । ସ୍ୱଳ୍ପ ବୟସରୁ ପିତୃମାତୃହରା ହୋଇଥିବା ସତ୍ତ୍ୱେ ଆପଣ ସ୍ୱୀୟ ପିତାମହୀ କୌଶଲ୍ୟା ଦେବୀଙ୍କ ପ୍ରେରଣାରେ ସାହିତ୍ୟ, ଜନସେବା ତଥା ସମାଜ ସଂସ୍କାର କ୍ଷେତ୍ରରେ ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ତାହା ଯେ କେବଳ ଓଡ଼ିଶା ଭୂଇଁରେ ଚିର ଅମର ହୋଇ ରହିବ ତାହା ନୁହେଁ, ଆଗାମୀ ଯୁବଗୋଷ୍ଠୀକୁ ମଧ୍ୟ ସର୍ବଦା ଅନୁପ୍ରାଣିତ କରୁଥିବ ।

ସ୍ୱାଧୀନତା ସଂଗ୍ରାମୀ ଭାବରେ ସ୍ୱଳ୍ପ ବୟସରେ ବାଲେଶ୍ୱର ଜିଲ୍ଲା ଅନ୍ତ-ର୍ଗତ ଇଞ୍ଚୁଡ଼ିରେ ଯେଉଁ ଦଶଜଣ ସତ୍ୟାଗ୍ରହୀଙ୍କ ଭିତରେ ଏକ ସତ୍ୟାଗ୍ରହୀ ଭାବେ

ବାନର ସେନା ସହ ସାମିଲ ହୋଇଥିଲେ ତାହା ଆପଣଙ୍କ ଭରତ ସ୍ୱାଧୀନତା ପାଇଁ ଥିବା ଅଦମ୍ୟ ଇଚ୍ଛା ପ୍ରକଟିତ କରେ । ସୁତରାଂ ଭରତର ସ୍ୱନାମଧନ୍ୟ ସ୍ୱାଧୀନତା ସଂଗ୍ରାମୀ ଭବରେ ଆପଣଙ୍କ ସୁନାମ ସ୍ୱାଧୀନତା ସଂଗ୍ରାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଏଥିରେ ଦ୍ୱିମତ ହେବାର କୌଣସି କାରଣ ନାହିଁ ।

ଏକ ଆଦର୍ଶ ଶିକ୍ଷକ ଭବରେ ଆପଣଙ୍କ ଖ୍ୟାତି ସାର ଦେଶରେ ବ୍ୟାପ୍ତ ଏହା ସ୍ୱୀକାର୍ଯ୍ୟ । ୧୯୭୪ ମସିହାରେ କୃତୀ ଶିକ୍ଷକ ଭବରେ ଓଡ଼ଶା ରାଜ୍ୟପାଳଙ୍କ ଦ୍ୱାର ପୁରସ୍କୃତ ହୋଇ ଆପଣ ପଶ୍ଚିମ ଓଡ଼ଶାର ଗୌରବ ବଢାଯ଼ ରଖିଛନ୍ତି । ଏହାଛଡା ଜଣେ ସମାଜସେବୀ ଭବରେ ୧୯୬୨ ସାଲରେ ଭରତର ରାଷ୍ଟ୍ରପତିଙ୍କ ଠାରୁ ସ୍ୱର୍ଣ୍ଣପଦକ ହାସଲ କରି ଯେଉଁ ପରାକାଷ୍ଠା ପ୍ରଦର୍ଶନ କରିଥିଲେ ତାହା କେବଳ ଯେ ପଶ୍ଚିମ ଓଡ଼ଶାକୁ ଗୌରବାନ୍ୱିତ କରିଥିଲା ତାହା ନୁହେଁ, ସାର ଓଡ଼ଶାକୁ ଏକ ଉଚ୍ଚ ସମ୍ମାନନୀୟ ସ୍ଥାନରେ ଅବସ୍ଥାପିତ କରାଇଥିଲା ।

ସୁସାହିତ୍ୟିକ ତଥା ଅଭିନେତା ଭବରେ ଆପଣ ଆଞ୍ଚଳିକ ତଥା ଜାତୀୟ ସ୍ତରରେ ସ୍ୱସ୍ୱୀକୃତିଦ୍ଧ ପ୍ରଦର୍ଶନ ପୂର୍ବକ ପୁରସ୍କୃତ ତଥା ସମ୍ମାନିତ ହୋଇଛନ୍ତି । ଆପଣ ଅସଂଖ୍ୟ ସାହିତ୍ୟକୃତି ସୃଷ୍ଟି କରି ଓଡ଼ଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଆପଣଙ୍କ ସାହିତ୍ୟକୃତି ଗୁଡକ ଆପଣଙ୍କୁ ଚିର ଅମର କରି ରଖିବ ଏଥିରେ ସନ୍ଦେ-ହର ଅବକାଶ ନାହିଁ । ଆପଣଙ୍କ ପ୍ରକାଶିତ ସାହିତ୍ୟକୃତି ଗୁଡ଼କ ହେଲା କୁମୁଦ୍ୱତୀ (କାବ୍ୟ), ଅଭିଶପ୍ତ (କବିତା), ହର୍ଷଦ୍ୟୋତନା (କବିତା), ପ୍ରେମର ପ୍ରତିଦାନ (ଉପନ୍ୟାସ), ମରୀଚିକାର ଭେଦ (କ୍ଷୁଦ୍ରଗଳ୍ପ), ନିୟତିର ପରିହାସ (କ୍ଷୁଦ୍ରଗଳ୍ପ), ଅବିସ୍ମରଣୀୟ ମୁହୂର୍ତ୍ତ, ଯୁଗପଥେ ବ୍ରାହ୍ମଣ, ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ; ଶିବ ପ୍ରସାଦ ଦାଶ (ଜୀବନୀ), ନୀତି ମଞ୍ଜୁଷା ଓ ଉଲ୍ଲାସ ମୂର୍ଚ୍ଛନା ଏବଂ ଅପ୍ରକାଶିତ ସାହିତ୍ୟକୃତି ହେଉଛି ସମାଧାନ (ଉପନ୍ୟାସ), ରାମାନୁଜ, ଏକଲବ୍ୟ ଗୁର୍ବାଦେଶ, ନିଷ୍ପତ୍ତିର ବ୍ୟପଦେଶ (ଏକାଙ୍କିକା) ଓ ଦର୍ପସଂହାର (ଗୀତିନାଟ୍ୟ) ।

ଆପଣଙ୍କ ସାହିତ୍ୟ ପ୍ରତି ଅନିର୍ବଚନୀୟ ଅବଦାନକୁ ଦୃଷ୍ଟିରେ ରଖି ଆପଣଙ୍କୁ ସିଦ୍ଧେଶ୍ୱରୀ ଧର୍ମ ସଂସଦ, ସମ୍ବଲପୁର 'କଥାସାଗର' ଉପାଧିରେ ଭୂଷିତ କରି ଏହି ମାନପତ୍ର ଆନ୍ତରିକତାର ସହ ପ୍ରଦାନ କରୁଛି ।

ସ୍ୱାଃ ନଃ ଡକ୍ଟର ଶ୍ରଦ୍ଧାକର ସୁପକାର
ମୁଖ୍ୟ ଅତିଥି
ତା ୪ । ୩ । ୮୩

ସ୍ୱାଃ ନଃ ଶ୍ରୀ ବିବେକାନନ୍ଦ ପାଣିଗ୍ରାହୀ
ସଭପତି
ତା ୪ । ୩ । ୮୩

ସ୍ୱ: ନ: ଶ୍ରୀ ଗୌରୀ ଶଙ୍କର ପାଣିଗ୍ରାହୀ
ମୁଖ୍ୟ ପରାମର୍ଶ ଦାତା
ତା ୪ । ୩ । ୮୩

ସ୍ୱ: ନ: ଶ୍ରୀ ଗୋପୀନାଥ ଷଡଙ୍ଗୀ
ସମ୍ପାଦକ
ତା ୪ । ୩ । ୮୩

# ବିଶ୍ୱସେବା ଅନୁଷ୍ଠାନରେ ଅଧ୍ୟକ୍ଷ ପଦ ଗ୍ରହଣ

ଓଡ଼ିଶାରେ ବିଶ୍ୱସେବା ଅନୁଷ୍ଠାନର ପାଞ୍ଚଗୋଟି ହାଇସ୍କୁଲ ଏବଂ କଲେଜ ଅଛି । ତନ୍ମଧ୍ୟରୁ ସମ୍ବଲପୁରରେ ଗୋଟିଏ ହାଇସ୍କୁଲ ଓ ଗୋଟିଏ କଲେଜ ରହିଛି । ବରଗଡ଼ରେ ସେହିପରି ଏକ ଅନୁଷ୍ଠାନ ମଧ୍ୟ ଖୋଲା ଯାଇ-ଥିଲା । ଅନୁଷ୍ଠାନରେ ମେଟ୍ରିକ ଫେଲ, ୧୦ମ, ୯ମ ଶ୍ରେଣୀରୁ ପିଲାଙ୍କୁ ନେଇ ହାଇସ୍କୁଲ ଷ୍ଟାଣ୍ଡାର୍ଡ ପାଠ ପଢ଼ା ଯାଉଥାଏ । ଉକ୍ତ ଅନୁଷ୍ଠାନର ହେଡ ମାଷ୍ଟରଙ୍କୁ ପ୍ରିନ୍ସିପାଲ କୁହାଯାଏ । ମୋତେ ସେଥି ସକାଶେ ଅନୁଷ୍ଠାନର ଡାଇରେକ୍ଟର ଦିନେ ଆସି କହିଲେ ଯେ ଅନୁଷ୍ଠାନର ସୁରକ୍ଷା ଏବଂ ଉନ୍ନତି ଦୃଷ୍ଟିରୁ ଆପଣ ତହିରେ ପ୍ରିନ୍ସିପାଲ ଦାୟିତ୍ୱ ଗ୍ରହଣ କରନ୍ତୁ — ତାଂକର ସେହି ଅନୁରୋଧ ମୁଁ ରକ୍ଷା କରିବି କି ନାହିଁ ଚିନ୍ତା କରି କହିବି ବୋଲି କହି ତାଙ୍କୁ ସେଦିନ ବିଦାୟ କରି ଦେଇଥିଲି ।

କିଛିଦିନ ପରେ ମୋ ନିକଟକୁ ନିମ୍ନମତେ ଏକ ନିଯୁକ୍ତି ପତ୍ର ସେ ରେଜିଷ୍ଟ୍ରର୍ଡ ପୋଷ୍ଟରେ ପଠାଇ ଦେଲେ ।

VISWA SEVA (Seal) INSTITUTION
Sambalpur - 768001 (Orissa)
(Regd. No. 15122 / 1966 of 1978 - 79)

Office Order No. 21 Dated 30th June 1981

Sri Birabar Dash is hereby appointed with immense delight as the Principal of the School wing of Viswa Seva Institute (Bargarh Branch) with a consolidated honorarium of Rs. 325 /— (Rupees three hundred twenty five) only with the usual privilages and incentives decided by the Board of Management from time to time.

This appointment is purely temporary and terminable at any time without any assignment there of.

He is requested to submit his joining report on 1st July, 1981

positively the Secretary of the institute.

Sd/ VS. N. K. Pujari
Director 30. 6. 81
Viswa Seva Institution
Sambalpur (Orissa)

Memo No. 22, dated 30th June 1981.

Copy forwarded to the person concerned for information and necessary action.

Sd/ VS. N. K. Pujari
Director 30. 6. 81
Viswa Seva Institution
Sambalpur (Orissa)

ନିଯୁକ୍ତି ପତ୍ରଟି ପାଇ ବରଗଡ ବିଶ୍ୱସେବା ଅନୁଷ୍ଠାନରେ ପ୍ରିନ୍ସିପାଲ ଦାୟିତ୍ୱ ଗ୍ରହଣ କରିଥିଲି । ଅନୁଷ୍ଠାନଟି ବେଶ ସୁରୁଖୁରୁରେ ଚାଲିଲା । ତିନୋଟିଦଳ ପିଲା ପରୀକ୍ଷା ଦେଇ ଯଥାକ୍ରମେ ୪୭%, ୫୭% ଏବଂ ୯୯% ପାସ କରିଥିଲେ । ଅନୁଷ୍ଠାନର ସୁଖ୍ୟାତି ବଢ଼ିଗଲା । ତାପରେ ମୁଁ ଉକ୍ତ ଦାୟିତ୍ୱରୁ ଅବ୍ୟାହତି ନେଇଥିଲି ।

ଅନୁଷ୍ଠାନର ଡାଇରେକ୍ଟର ମୋଠୁ ଅନୁଷ୍ଠାନର ସମସ୍ତ ଦାୟିତ୍ୱ ଗ୍ରହଣ କରି ନିମ୍ନମତେ କାର୍ଯ୍ୟମୁକ୍ତି ଆଦେଶ ନାମା ଦେଇଥିଲେ ।

## THE VISWA SEVA INSTITUTE

(An Institution of socio spiritual for the moral culture intellectual & economic revolution of Mankind in the Modern age)
Regd. No. 15122/1966 of 1978-79
H. Q. - Sambalpur, P. O. / Dist. Sambalpur (Orissa)

---

President
SRI A. K. TRIPATHY, I. A. S.
District Magistrate & Collector
Sambalpur

Director General
PROF. D. P. NAYAK

Executive Director
VS. N. K. PUJARI

---

D. V. S. 45 (a) Dated the 3rd April, 1983

To Sri Birabar Dash, At/P.O. Bargarh is hereby relieved from the post of Principal of the School wing of the Viswa Seva Institution, Bargarh Branch, P. O. Bargarh, Dist. Sambalpur today the 3rd of April

1983. This Institution is Inordinately thankful to Sri Dash for his benevolent and tenacious service for the upliftment of the Institution at Bargarh and development of moral standard in the students of this school from the date of his joining.

I wish him to receive puennial benedection from the omniscient Lord for this self less service rendered to this Institution.

Further the Board of Management of the Viswa Seva Institution has decided to accept Mr. Dash as an honorary life member of the institution and he is requested to continue as a member as mentioned and render services at any and every need of the Institution.

Sd/- N. K. PUJARI
3-4-83
Executive Director
The Viswa Seva Institution
Sambalpur

ଏହାପରେ ଉକ୍ତ ବିଶ୍ୱ ସେବା ସଂସ୍ଥା ଉଦ୍ୟୋଗରେ ଆୟୋଜିତ ଏକ ବିରଟ ସମ୍ମିଳନୀରେ ବିବିଧ କାର୍ଯ୍ୟ ସମନ୍ୱିତ କାର୍ଯ୍ୟକ୍ରମ ମଧ୍ୟରୁ ମୋତେ ଏକ ମାନପତ୍ର ଦେବା ବିଷୟ ସ୍ଥିରୀକୃତ ହୋଇ ନିମ୍ନଲିଖିତ ମତେ ଉପାୟନ ତଥା ମାନପତ୍ର ଗତ ୨୩।୪।୮୩ ଦିନ ସମ୍ବଲପୁର ବଡବଜାର ସ୍ଥିତ ବିଶ୍ୱ ସେବା ଗ୍ରାମୋଦ୍ୟୋଗ ଟ୍ରେନିଂ ଇନଷ୍ଟିଚ୍ୟୁଟ୍ ପକ୍ଷରୁ ଦିଆ ଯାଇଥିଲା ।

To, Sri Birabar Dash, At/P.O. Bargarh, Dist. Sambalpur, Orissa

Sir,

You are teacher in true sense working for long 43 years as a teacher.

You have set example for the present derailed youths that they will come forward to dedicate their lives in the greater cause of the nation.

You had received the President Gold Medal in the year 1962 for your active social service and also the State award as a good teacher in 1964.

You have written a good number of books and tried your best to induce a sense of study and meditation in the minds of present students of schools and colleges of the Country.

The Viswa Seva High School at Bargarh was established In January 1981. There after the school had to face hundreds of hurdles and obstructions and in July 1981, we invited you to be the Principal of the school when it was in a very very precarious position and you gladly accepted it. You worked hard. Your untiring efforts brought flow-tide of hopes in the despondent sea.

Fiftyseven candidates of our institution belonging to (Dejected, Deprived, Desoarate, Dormant and Delinquent) group appeared at the Annual, Suppl., Annual H. S. C. Examination of 1982 - 83 respectively and in total fiftythree passed with self confidence.

It is a glorious result. Besides you had struggled to the maximum extent for the subtenance of the institution.

No comparison to your service, only we present you a few lines today the 23rd day of April 1983 on the occasion of inaugural ceremony of the Viswa Seva gramodyog training Institution, Sambalpur.

Please accept it and oblige.

| | | |
|---|---|---|
| Sd/ D. P. Nayak<br>23 - 4 - 83<br>Director General<br>Viswa Seva Institution<br>Sambalpur | Sd/ A. K. Tripathy<br><br>District Magistrate &<br>Collector, Sambalpur<br>President<br>V. S. I., Sambalqur | Sd/ U. S. Mishra<br>23 - 4 - 83<br>Superintendent of<br>Police & Cheif Guest<br>of the Function |

ଏହି ବର୍ଷ କବି ଦିବ୍ୟକିଶୋର ସାହୁଙ୍କ ଜୀବନୀ ପୁସ୍ତକଟି ପ୍ରକାଶିତ ହୋଇଥିଲା । ପୁସ୍ତକଟିର ପ୍ରକାଶକ ଶ୍ରୀ ଚନ୍ଦ୍ରଶେଖର ସାହୁ, ପାଣିମୋରା । ପୁସ୍ତକଟିର ଉଦ୍‌ଘାଟନ ଉତ୍ସବ ପଦ୍ମପୁରଠାରେ ହୋଇଥିଲା । ଉକ୍ତ ଉଦ୍‌ଘାଟନ ସଭାଟି ପଦ୍ମପୁରର ତତ୍କାଳୀନ ଏସ୍.ଡ଼ ଓ. ଶ୍ରୀ ଦିଲିପ ମହାନ୍ତଙ୍କ ସଭାପତିତ୍ୱରେ ପଦ୍ମପୁରର ବୟୋବୃଦ୍ଧ ସାହିତ୍ୟିକ, ଏଡଭୋକେଟ୍ ଶ୍ରୀ ଗଙ୍ଗାଧର ଗୁରୁ ଉଦ୍‌ଘାଟକ ରୂପେ, ଅଧ୍ୟାପକ ଶ୍ରୀ ନାରାୟଣ ପୁଷେଠ ମୁଖ୍ୟ ଅତିଥି, ଶ୍ରୀ ଶଶିଭୂଷଣ, ଜିଲ୍ଲା ଶିକ୍ଷା ପରିଦର୍ଶକ ମୁଖ୍ୟବକ୍ତା ଏବଂ ହାଇସ୍କୁଲ ହେଃ ମାଃ ଶ୍ରୀଯୁକ୍ତ ସାନବରଷା ସମ୍ମାନିତ ବକ୍ତା ଭାବେ ଜୀବନୀ ସମ୍ବନ୍ଧରେ ସ୍ୱୀୟ ଭାଷଣମାନ ପ୍ରଦାନ କରି ସେଥିରେ ଲେଖକଙ୍କ ପ୍ରତି ଯଥେଷ୍ଟ ସମ୍ମାନ ମଧ୍ୟ ପ୍ରଦାନ କରିଥିଲେ ।

ସ୍କୁଲର ମ୍ୟୁଜିକ ଶିକ୍ଷକ ଏକ ଉଦ୍‌ବୋଧନା ସଂଗୀତ ନିଜେ ରଚନା କରି ତାକୁ ହାରମୋନିୟମ ଧରି ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ସହ ଗାନ କରିଥିଲେ ।

ଶତାଧିକ ବ୍ୟକ୍ତିଙ୍କ ଗହଣରେ ଉଦ୍‌ଘାଟନ ଉତ୍ସବଟି ସମାହିତ ହୋଇ-ଥିଲା । ତା ୧୦ । ୭ । ୮୩ ଇ: ସନ୍ଧ୍ୟା ୬ ଟାରେ ଆରମ୍ଭ ହୋଇ ରାତି ୯ ଟା ଯାଏ ସତ୍‌କାର୍ଯ୍ୟ ଚାଲିଥିଲା । 'ମଧୁଝଙ୍କାର', 'ସର୍ବେ ଭବନ୍ତୁ ସୁଖୀନା' ୨ ଖଣ୍ଡ କ୍ଷୁଦ୍ର କବିତା ପୁସ୍ତିକା ମଧ୍ୟ ପ୍ରକାଶିତ ହୋଇଥିଲା । ୧୯୮୪ ଖ୍ରୀ:ରେ 'ଆଶୀଃ' ନାମରେ ଆଉ ଏକ କବିତା ପୁସ୍ତିକା ମଧ୍ୟ ପ୍ରକାଶିତ ହୋଇଥିଲା ।

ଏହି ବର୍ଷ ସ୍ୱାଧୀନତା ସଂଗ୍ରାମୀ ଭଗୀରଥି ପଟ୍ଟନାୟକଙ୍କ ଜନ୍ମ ଶତ-ବାର୍ଷିକୀ ତା ୯ । ୧୧ । ୮୪ ରେ ବରପାଲିରେ ବଡ ଆଡମ୍ବର ସହକାରେ ପାଳନ କରଯିବା ଅବସରରେ ଭଗୀରଥି ବାବୁଙ୍କ ସୁଯୋଗ୍ୟ ପୁତ୍ର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କ ପତ୍ନୀ ସମ୍ବଲପୁର ଜିଲ୍ଲାରେ ଥିବା ପ୍ରତ୍ୟେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ନିମନ୍ତ୍ରଣ କରିଥିଲେ । ଏହି ସମ୍ମେଳନରେ ପ୍ରତ୍ୟେକ ସ୍ୱାଧୀନତା ସଂଗ୍ରାମୀଙ୍କ ପତ୍ନୀ ମାନଙ୍କୁ ସମ୍ମାନୀତ କରି ସେମାନଙ୍କୁ ଏକ ଏକ ମାନପତ୍ର ସହ ଖଣ୍ଡିଏ ଲେଖାଏ ମଠା ସ୍କାର୍ଫ ଉପହାର ଦେଇଥିଲେ ।

ଭଗୀରଥି ବାବୁଙ୍କର ଦିନେ ମୁ ବନ୍ଧୁ ଥିଲି ଅସହଯୋଗ ଆନ୍ଦୋଳନ ବେଳେ । ସେହିକଥା ସେ ତାଙ୍କର ଜୀବନୀ ପୁସ୍ତକରେ ମୋ କଥା ବାରମ୍ବାର ଉଲ୍ଲେଖ କରି ଯାଇ ଥିବାର ନଜିର ରହିଅଛି । ଏହି ଅବସରରେ ପ୍ରତ୍ୟେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ମଧ୍ୟ ଉକ୍ତ ଜୀବନୀ ପୁସ୍ତକ ଖଣ୍ଡିଏ ଲେଖା ବିତରଣ କରଯାଇଥିଲା ।

ମୁ ଏବଂ ମୋର ପତ୍ନୀ ଶ୍ରୀମତୀ ଭଗବତୀ ଦାଶ ନିମନ୍ତ୍ରିତ ହୋଇ ବରପାଲି ଯାଇଥିଲୁ । ସେଠାରେ ମୋତେ ତ ପୁସ୍ତକ ଖଣ୍ଡିଏ ମିଳିଲା । ମୋର ପତ୍ନୀଙ୍କୁ ମାନପତ୍ର ଓ ଟସର ସ୍କାର୍ଫ ଖଣ୍ଡିଏ ଦେଲେ । ଯେଉଁ ମାନପତ୍ର ତାଙ୍କୁ ଦିଆଯାଇଥିଲା ତାହାର ବିବରଣ ହେଲା ଏହା—

ଆବିର୍ଭାବ ୯ । ୧୧ । ୧୮୮୪ ତିରୋଧାନ ୯ । ୭ । ୧୯୮୦

ସଂଗ୍ରାମୀ ସ୍ୱର୍ଗତ ଭଗୀରଥି ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ସମାରୋହ

ବ ର ପା ଲି

## ମା ନ ପ ତ୍ର

ଶ୍ରୀମତୀ ଭଗବତୀ ଦାଶ, ସ୍ୱାଃ ଶ୍ରୀ ବୀରବର ଦାଶ, ବରଗଡ କରକମଳେଷୁ ।

ହେ ମନସ୍ୱିନୀ;

ଆମର ପ୍ରିୟ ମାତୃଭୂମିର ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଆପଣଙ୍କ

ପରିବାର ଯେଉଁ ମହନୀୟ ଅବଦାନ ବଳରେ ଜାତିର ଇତିହାସ ସୃଷ୍ଟି କରି ଯାଇଛନ୍ତ ତାହା ଚିର ସ୍ମରଣୀୟ ।

ବ୍ୟକ୍ତିଗତ ଦୃଷ୍ଟିରୁ ଆପଣ ଦୁଷ୍କର ପରିବାର କଲ୍ୟାଣ ବ୍ରତ ପାଳନ ସଙ୍ଗେ ସଙ୍ଗେ ସଂଗ୍ରାମର ଅମରକୀର୍ତ୍ତି ସଂଗ୍ରାମୀମାନଙ୍କ କଣ୍ଟକିତ ପଥରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସହଯୋଗ ତଥା ଉତ୍ସାହ ଯୋଗାଇ ଦେଶ ପ୍ରାଣତାର ଯେଉଁ ଉଜ୍ଜ୍ୱଳ ଆଦର୍ଶ ପ୍ରତିଷ୍ଠା କରି ଯାଇଅଛନ୍ତ ତାହା ଏ ଦେଶର ନାରୀ ସମାଜର ଅମ୍ଳାନ ମହତ୍ତ୍ୱର ପ୍ରତୀକ ତଥା ଉତ୍ତର ଦାୟାଦଙ୍କ ନିମିତ୍ତ ଚିରନ୍ତନ ପ୍ରେରଣାର ଉତ୍ସ ।

ଆଜିର ପବିତ୍ର ଅବସରରେ ଆପଣଙ୍କ ପ୍ରତି ଆମର ବିନମ୍ର ସମ୍ବର୍ଦ୍ଧନାରେ ଆପଣଙ୍କ ସେହି ସ୍ୱଦେଶ ପ୍ରତିଭା ସଂପ୍ରସାରିତ ହୋଇ ଜାତୀୟ ଉଦ୍‌ବୋଧନାର କାରଣ ହେଉ ।

| | |
|---|---|
| ସ୍ୱାଃନଃ ଶ୍ରଦ୍ଧାକର ସୁପକାର | ସ୍ୱାଃନଃ ପ୍ରଫୁଲ୍ଲ କୁମାର ପତି |
| ମୁଖ୍ୟଅତିଥି | ସଭାପତି |
| ୯ । ୧୧ । ୮୪ | ୯ । ୧୧ । ୮୪ |

୧୯୮୪ ସାଲରେ 'ବ୍ୟପଦେଶେ' ନାମଧେୟ ଏକ କ୍ଷୁଦ୍ର ପୁସ୍ତିକା ପ୍ରକାଶ ଲାଭ କରିଥିଲା ।

ଗତ ତା ୧୨ । ୨ । ୮୮ ରେ ବରପାଲି ମହାବିଦ୍ୟାଳୟ 'ବାସନ୍ତୀ' ସାହିତ୍ୟ ସଂସ୍ଥାର କର୍ମକର୍ତ୍ତାଗଣ ମୋତେ ନିମନ୍ତ୍ରଣ କରି ଏକ ଉପାୟନ ପ୍ରଦାନ କରିଥିଲେ ।

## ବାସନ୍ତୀ

(ସାପ୍ତାହିକ ପ୍ରାଚୀର ସାହିତ୍ୟ ପତ୍ରିକା)

ବରପାଲି ମହାବିଦ୍ୟାଳୟ, ବରପାଲି

ମାନନୀୟ ଶ୍ରୀଯୁକ୍ତ ବୀରବର ଦାଶ ମହୋଦୟ,

ଆପଣ ପଶ୍ଚିମ ଓଡଶାର ଜଣେ ସୁପରିଚିତ ସାହିତ୍ୟିକ । ଆପଣ ବହୁ ପୁସ୍ତକର ରଚୟିତା । ଗଳ୍ପ, କବିତା, ପ୍ରବନ୍ଧ, ଉପନ୍ୟାସ, ଜୀବନୀ, ଗୀତିନାଟ୍ୟ, ଏକାଙ୍କିକା ଆଦି ସାହିତ୍ୟର ବହୁ ବିଭାଗରେ ଆପଣ ଲେଖନୀ ଚାଳନା କରି ପାରି ଅଛନ୍ତ । ଏହି ପରିଣତ ବୟସରେ ମଧ୍ୟ ଆପଣଙ୍କ ଉତ୍ସାହ ଓ ଆଗ୍ରହ ଅମ୍ଳାନ ରହିଛି ।

ଆପଣଙ୍କ ସାହିତ୍ୟ ସାଧନା ଏ ଅଞ୍ଚଳର ବହୁ ଯୁବ ସାହିତ୍ୟିକ ମାନଙ୍କୁ ପ୍ରେରଣା ପ୍ରଦାନ କରିଛି ।

ଏଣୁ ଆପଣଙ୍କ ପରି ଜଣେ କବି, ଗାଳ୍ପିକ, ପ୍ରାବନ୍ଧକ, ଔପନ୍ୟାସିକ, ନାଟ୍ୟକାର ଓ ଜୀବନୀ ଲେଖକଙ୍କୁ ସମ୍ବର୍ଦ୍ଧିତ କରି ଆମେ ଗୌରବ ଅନୁଭବ କରୁଅଛୁ ।

ସ୍ୱାଃନଃ ଶ୍ରୀ ଗଣନାଥ ପ୍ରଧାନ
ମୁଖ୍ୟ ଅତିଥି
୧୨-୨-୮୮

ସ୍ୱାଃନଃ ଶ୍ରୀ କୁମରମଣି ଚୌଧୁରୀ
ପ୍ରିନ୍‌ସିପାଲ
ସ ଭ ପ ତି
୧୨-୨-୮୮

ବିନୀତ
ଛାତ୍ରଛାତ୍ରୀ ବୃନ୍ଦ
ବରପାଲି ମହାବିଦ୍ୟାଳୟ
୧୨-୨-୮୮

'ଆଧ୍ୟାତ୍ମିକ ସୌରଭ ଓ କୃଷ୍ଣପ୍ରେମ' ଏକ ପୁସ୍ତକ ୧୯୮୮ ସାଲରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟିର ପ୍ରକାଶକ ହେଉଛନ୍ତି ଶ୍ରୀ ସଂଗ୍ରାମ କେଶରୀ ଦାଶ, ପ୍ରଧାନ ଶିକ୍ଷକ, ବରଗଡ । ଉମାଇ ୭୬ ପୃଷ୍ଠା ବିଶିଷ୍ଟ ଏହି ପୁସ୍ତକଟିର ସମୀକ୍ଷା ଗତ ତା ୨ । ୧୨ । ୮୮ଇ: ଶୁକ୍ରବାର ୮୬ ସଂଖ୍ୟା ଦୈନିକ 'ଅଗ୍ନିଶିଖା' ପତ୍ରିକା, ସମ୍ବଲପୁରରେ ପ୍ରକାଶିତ ହୋଇଥିଲା ।

ସମୀକ୍ଷକ ଅଧ୍ୟାପକ ଶ୍ରୀ ରଜକିଶୋର ମେହେର ସମୀକ୍ଷାଟି ନିମ୍ନମତେ ପ୍ରଦାନ କରିଥିଲେ ।

## — ମହାନଦୀ —

ବୀରବର ଦାଶଙ୍କ ପରବର୍ତ୍ତୀ ଗ୍ରନ୍ଥ

ଆଧ୍ୟାତ୍ମିକ ସୌରଭ ଓ କୃଷ୍ଣପ୍ରେମରେ ଭରତୀୟ ଧର୍ମ ଓ ସଂସ୍କୃତିର ତତ୍ତ୍ୱାଦର୍ଶ ।

ସାଂପ୍ରତିକ ଯନ୍ତ୍ର ଯୁଗରେ ପରିଚାଳିତ ମଣିଷ ଆଧ୍ୟାତ୍ମିକ ପଣତ କାନିରେ ସୁଖର ସନ୍ଧା ତଥା ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର ବର୍ଣ୍ଣାଳୀ ବୀରବର ଦାଶଙ୍କ ସଦ୍ୟ ପ୍ରକାଶିତ ଗ୍ରନ୍ଥ 'ଆଧ୍ୟାତ୍ମିକ ସୌରଭ ଓ କୃଷ୍ଣପ୍ରେମ' ପାଠକ ମାନଂକ ଦୃଷ୍ଟି ଆକର୍ଷଣ କରେ ।

ଉପରୋକ୍ତ ଗ୍ରନ୍ଥ ଶ୍ରୀ ଦାଶଂକ ଅନ୍ୟାନ୍ୟ ଗ୍ରନ୍ଥାପେକ୍ଷା ଏହା ଏକ ଭିନ୍ନ

ସ୍ୱାଦର । ଏତଦ୍‌ଭିନ୍ନ ସେ କଥୋପକଥନ ଶୈଳୀରେ ଆଧ୍ୟାତ୍ମ ରସର ନିଷ୍ଠା ପ୍ରଦ-ର୍ଶନ କରିବାରେ ପ୍ରୟାସ କରିଛନ୍ତି ।

ଆଧ୍ୟାତ୍ମବାଦ ଉପରେ ଅତୁଟ ବିଶ୍ୱାସ ସ୍ଥାପନ କରିବା ପୂର୍ବକ ଶ୍ରୀ ଦାଶ ଆଧ୍ୟାତ୍ମରସର ସେହି ପୁରୁଣା ନିତ୍ୟ ପାରମ୍ପରିକ ସ୍ୱାଦ ଆସ୍ୱାଦନ କରିବାକୁ ପାଠକ ବର୍ଗଙ୍କୁ ବାଧ୍ୟ କରୁଛନ୍ତି କାରଣ ଆଧୁନିକତାର ଅସତ୍ୟ ଯୋନିରେ ଆଧୁନିକ ମଣିଷ ଆଧୁନିକତାର ଦ୍ୱାହି ଦେଇ ଯେଉଁ ସୃଷ୍ଟି ନାମରେ ଧ୍ୱଂସାଭିମୁଖୀ ହୋଇ ଉଠିଛି ତାହାର ନୀରବ ବା ମୌନ ପ୍ରତିବାଦ କରିବା ଏକାନ୍ତ ଭବେ ସ୍ୱାଭବିକ । କାଳର ହସ୍ତରେ ପରିଚ୍ଚାଳିତ ହୋଇ ଇଂରେଜ ଯୁବକ କିଭଳି ହିନ୍ଦୁଧର୍ମ, ସଂସ୍କୃତି ପ୍ରତି ଆକୃଷ୍ଟ ହୋଇ ଉଠିଲା ତାହା ଏହାର ଶ୍ରେଷ୍ଠ ଉଦାହରଣ । କେବଳ ଯେ ଆକୃଷ୍ଟ ହୋଇଛି ତାହା ନୁହ ବରଂ ହିନ୍ଦୁଧର୍ମ ଓ ସଂସ୍କୃତିକୁ ଦୀକ୍ଷା ନେଇ ପର-ବର୍ତ୍ତୀ କାଳରେ ତାହାକୁ ଗଭୀର ଶ୍ରଦ୍ଧା, ଭକ୍ତି ତଥା ନିଷ୍ଠା ପ୍ରଦର୍ଶନ ପୂର୍ବକ ମହାନ୍ ଭରତୀୟ ସଂସ୍କୃତି ଓ ଉଚ୍ଚାଦର୍ଶକୁ ଅନ୍ୟ ଆଗରେ ପ୍ରତିଷ୍ଠିତ ମଧ୍ୟ କରି ପାରିଛି । ଏହାର ସ୍ପଷ୍ଟ ମୁଦ୍ରାଂକନ ଗ୍ରନ୍ଥର ପ୍ରାରମ୍ଭରେ ଶ୍ରୀ ଦାଶ ଭୂମିକାରେ ଦର୍ଶାଇଛନ୍ତି ।

ଭରତୀୟ ସଂସ୍କୃତିଗତ ପରମ୍ପରା ଯେ କେତେ ମହାନ୍ ଓ ଉଚ୍ଚ ଭବାପନ୍ନ ତାହା ଏହି ପୁସ୍ତକ ପାଠରୁ ପାଠକ, ପାଠିକା ନିଶ୍ଚିତ ଭବେ ଅନୁଭବ କରିପାରେ । କାରଣ ଆଧ୍ୟାତ୍ମିକ ଚିନ୍ତା ଓ ଚେତନାରେ ମଣିଷ ପାଏ— ଉତ୍ସର୍ଗୀ-କୃତ ଦ୍ୱିଧାହୀନ ଅନ୍ତର୍ହିତ ନିର୍ଦ୍ଦେଶ । ଯେଉଁ ନିର୍ଦ୍ଦେଶରେ ଅନୁଗାମୀ ହୋଇ ମଣିଷ ପାଏ — ଚିନ୍ମୟ ସତ୍ତା ତଥା ସତ୍ୟ, ଶିବ, ସୁନ୍ଦର ତ୍ରିମୂର୍ତ୍ତିର ଯଷ୍ଟି । କିନ୍ତୁ ସେ ଚର୍ମ ଚକ୍ଷୁ ଅପେକ୍ଷା ସନ୍ଦର୍ଶନ କରେ ଅନ୍ତର୍ଦୃଷ୍ଟିରେ ବା ମର୍ମ ଚକ୍ଷୁରେ । କାରଣ ଭକ୍ତ ଏବଂ ଭଗବାନଙ୍କର ଭେଟ ହୁଏ ମଣିଷ ମନର ଛବି ଧାମରେ । ଆଉ ମନରେ ସେଇ ଆସ୍ଥା ଉପରେ ହିଁ ଏହି ଛବି ଧାମର ଭିତ୍ତି ।

ଶ୍ରୀ ଦାଶ ସ୍ଥଳ ବିଶେଷରେ ଏଣୁ କହନ୍ତି — ଏକ ଚିନ୍ତା, ଏକ ସ୍ୱପ୍ନ, ଏକ ସାଧନା ଓ ଏକ ଆରାଧନା ଫଳରେ ଶ୍ରୀକୃଷ୍ଣଂକ ବଂଶୀଧ୍ୱନୀ ଯେ ଶୁଣିହେବ ଏହା ଧ୍ରୁବସତ୍ୟ । ନିକ୍‌ସନ୍ ଯଶୋଦା ମାଈ (ମାଣିକ ଚକ୍ରବର୍ତ୍ତୀ)ଙ୍କ ସାନ୍ନିଧ୍ୟରେ ତଥା ହିନ୍ଦୁଧର୍ମ ସଂସ୍କୃତି ଓ ଉଚ୍ଚାଦର୍ଶର ନୈତିକ ମୂଲ୍ୟବୋଧ ମନରେ ଉପ-ଲବ୍ଧି କରି — ନିକ୍‌ସନ୍ କୃଷ୍ଣପ୍ରେମରେ ପ୍ରଲୁବ୍ଧ ହୋଇ ନିଜ ନାମ ମଧ୍ୟ କୃଷ୍ଣପ୍ରେମ ଭବରେ ପରିଚିତ କରାଇ ଅଛନ୍ତି । କୃଷ୍ଣପ୍ରେମ ଆଶ୍ରମସ୍ଥ ସମବେତ ଜନସାଧାରଣଙ୍କୁ ବିଭିନ୍ନ ଉପାଖ୍ୟାନମାନ ଶୁଣାଇବାରେ ଲାଗିଛନ୍ତି । କୁମାରୀ ପୂଜା

ପରିପ୍ରେକ୍ଷୀରେ କୁମାରୀକୁ ମାତୃତ୍ୱର ସ୍ଥାନାଧିକାର ପୂର୍ବକ ହିନ୍ଦୁଧର୍ମ ଓ ସଂସ୍କୃତିର ମର୍ଯ୍ୟାଦା ପୁନଃ ବୋଦ୍ଧରଇଛନ୍ତି ।

ପରବର୍ତ୍ତୀ ଅଧ୍ୟାୟରେ ମୂର୍ତ୍ତିପୂଜା ପରିପ୍ରେକ୍ଷୀରେ ମଧ୍ୟ ଅଯଥାଶ୍ରମ ଓ ଶକ୍ତିର କ୍ଷୟ ନ ଘଟାଇ ଅଜ୍ଞତାର ଭ୍ରମରେ ନ ପଡ଼ିବାର ନୈତିକ ବାର୍ତ୍ତା ପାଠକ ବା ଶ୍ରୋତା ପାଇଥାଏ । ଏହାହିଁ ହିନ୍ଦୁଧର୍ମର ସଂସ୍କୃତିର ଅନ୍ୟ ଏକ ଦର୍ଶନ ।

ସାଧୁଙ୍କର ସାଧନାରେ ପ୍ରତିଭ ସନ୍ଦର୍ଶନ ଗୁହ୍ୟ ଓ ଜୀବନ୍ତକୁ ବଚନୀୟ ଓ ଅନିର୍ବଚନୀୟ ଦର୍ଶନାଲ୍ଲେଖର ପରିଚୟ ଭୁକ୍ତ କରିଛନ୍ତି । ଏଣୁ ଏଥିରୁ ପାଠକ ହିନ୍ଦୁଧର୍ମ ସାଧନାର ନିଷ୍ଠା, ସାଧନା ଓ ସମୟର ଆବଶ୍ୟକତା ଯେ ରହିଛି ଏହା ସ୍ୱୀକାର କରେ । ସେହିପରି ଭରତୀୟ ଜ୍ୟୋତିଷୀ ଓ ଯୋଗତତ୍ତ୍ୱର ଆଦର୍ଶ ଶ୍ରମ ଓ ସଂଯମ, ସାଧନା ଓ ସମୟର ଆବଶ୍ୟକତା ମଧ୍ୟ ଉପଲବ୍ଧ କରେ । ଯୋଗ ଜ୍ୟୋତିଷୀ ଯେପରି ଶ୍ରମ ଓ ସଂଯମ, ସମୟ ଓ ସାଧନାର ଆବଶ୍ୟକତା ନିର୍ଭର କରେ ସେହିପରି ତ୍ୟାଗର ପରମ୍ପରା ଭରତୀୟ ଦର୍ଶନର ଏକ ଉଚ୍ଚାଦର୍ଶ ତାହା ମଧ୍ୟ ପାଠକ ପ୍ରସଙ୍ଗ କ୍ରମେ ପାଏ ।

ପରିଶେଷ ବକ୍ତବ୍ୟରେ ଏତିକି କହିଲେ ହେବ ଭରତୀୟ ହିନ୍ଦୁଧର୍ମ ଓ ଦର୍ଶନରେ ଯେଉଁ ଏକତା ଭିତରେ ଭିନ୍ନତା ପରିଦୃଷ୍ଟ ହୋଇଥାଏ – ତାହା ଅନ୍ୟ ଧର୍ମ ଓ ଦର୍ଶନରେ ସମ୍ଭବତଃ ଦୁଃପ୍ରାପ୍ୟ । ଉପରୋକ୍ତ ଉଚ୍ଚାଦର୍ଶନରେ ଜନ-ମାନସକୁ ଶ୍ରୀ ଦାଶ ବିଭିନ୍ନ ଗ୍ରନ୍ଥ ସମୂହରୁ ଉପାଦାନ ମାନ ସଂଗ୍ରହ କରି କୃଷ୍ଣପ୍ରେମ ମୁଖରେ ଯେଉଁ ଭରତୀୟ ମହାନତା ଓ ତତ୍ତ୍ୱଦର୍ଶନ ଜଣାଇଛନ୍ତି ତାହା ନିଶ୍ଚିତ ଭବେ ଏକ ଭିନ୍ନ ସ୍ୱାଦର ଗ୍ରନ୍ଥ ହେଲେହେଁ- କର୍ତ୍ତବ୍ୟନିଷ୍ଠା ଦୃଷ୍ଟିରୁ ଆଧୁନିକ ଧ୍ୱଂସଗାମୀ ସମାଜରେ ଆଧ୍ୟାତ୍ମିକ ଚିନ୍ତାର ପୁନରୁତ୍‌ଥାନ ପୂର୍ବକ ମୌନ ପ୍ରତିବାଦ ମଧ୍ୟ ଯେ ସେ କରିଛନ୍ତି ଏହା ନିଃସନ୍ଦେହ । × × × ×

ସମଗ୍ର ଓଡ଼ିଶାର ସାମଗ୍ରିକ ଉନ୍ନତି ଦୃଷ୍ଟିରୁ ବିଚ୍ଚର କଲେ ଜଣାଯାଏ ପଶ୍ଚିମ ଓଡ଼ିଶାରେ ଅବସ୍ଥାନ କରୁଥିବା ଲେଖକ, କବି, ସାହିତ୍ୟିକ ମାନେ ପୁସ୍ତକ ପ୍ରକାଶନ ଦିଗରେ ଘୋର ନିରାଶରେ କାଳଯାପନ କରନ୍ତି । କାରଣ ଏଆଡେ ପୁସ୍ତକ ପ୍ରକାଶନ ନିମିତ୍ତ କୌଣସି ପ୍ରକାଶନ ସଂସ୍ଥା ନାହିଁ । ଫଳରେ ଲେଖକ ବା କବି ମାନଙ୍କର ଲେଖା ଗୁଡ଼ିକ ପ୍ରକାଶିତ ହେବାରେ ସର୍ବଦା ବ୍ୟାଘାତ ଜନ୍ମୁଛି । ଯଦି ବା କେହି ଏ ଦିଗରେ ଉଦ୍ୟମଶୀଳ ହୋଇ ସ୍ୱକୀୟ ଖର୍ଚ୍ଚରେ ପୁସ୍ତକଟାଏ ପ୍ରକାଶିତ କରନ୍ତି ତେବେ ତାହା ବିକ୍ରୀ ହେବାପାଇଁ କୌଣସି ମାଧ୍ୟମ ନ ଥିବା ଯୋଗୁଁ ପୁସ୍ତକ ଗୁଡ଼ିକ ଲେଖକ ନିକଟରେ ଜମା ହୋଇ ରହି ଯାଉଛି । ଫଳରେ ଜଣେ ଜଣେ ଲେଖକଙ୍କ ଅନେକ ପାଣ୍ଡୁଲିପି ଥିଲେ ମଧ୍ୟ ସେ ଗୁଡ଼ିକ ଉପଯୋଗୀ

ଅନ୍ତରାୟ ଯୋଗୁଁ ପ୍ରେସ୍‌ର ମୁଖ ଦେଖି ପାରୁନାହିଁ । ତଥାପି ଏଥିପାଇଁ ମଧ୍ୟେ ମଧ୍ୟେ ଆଞ୍ଚଳିକ, ଜିଲ୍ଲା କିମ୍ବା ରାଜ୍ୟସ୍ତରୀୟ ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ ଲେଖକ, କବି, ସାହିତ୍ୟିକ ବର୍ଗଙ୍କୁ ଉପାୟନ, ପ୍ରଶଂସା ପତ୍ର ଆଦି ପ୍ରଦାନ କରି ଯେଉଁ ଉତ୍ସାହ ପ୍ରଦର୍ଶନ କରି ଥାଆନ୍ତି ତାହା ସେମାନଙ୍କ ମନରେ କଥଞ୍ଚିତ୍ ସମୁଲ୍ଲାସ ପ୍ରଦାନ କରିଥାଏ ।

ଗତ ତା ୧୮ । ୩ । ୮୯ରେ ଓଡ଼ିଶା ସାହିତ୍ୟ ଏକାଡେମୀ ସଂସ୍ଥା ପକ୍ଷରୁ ପୁରୀ ଠାରେ ଜିଲ୍ଲା କଲେକ୍ଟରଙ୍କ ସମ୍ମିଳନୀ ଗୃହରେ ଓଡ଼ିଶାର ଆଠଜଣ ବିଶିଷ୍ଟ କବି, ସାହିତ୍ୟିକଙ୍କୁ ଯେଉଁ ସମ୍ମାନ ପ୍ରଦର୍ଶନ କରଗଲା ସେମାନଙ୍କ ମଧ୍ୟରେ ମୁଁ ମଧ୍ୟ ଅନ୍ୟତମ ଥିଲି ।

ଉପରୋକ୍ତ ଦିବସରେ ଆମ୍ଭମାନଙ୍କୁ ତାମ୍ରଫଳକ, ମୂଲ୍ୟବାନ ଶାଲ, ପ୍ରଶଂସାପତ୍ର ତଥା ପାଥେୟ ଖର୍ଚ୍ଚ ଆଦି ଯାହା ପ୍ରଦାନ କରାଗଲା ତାହା ନିଶ୍ଚିତ ରୂପେ ଉଭୟଥା ପ୍ରଶଂସାର୍ହ ଅଟେ । ଏ ପ୍ରସଙ୍ଗରେ ମୋତେ ନିମ୍ନଲିଖିତମତେ ତାମ୍ରଫଳକ ଓ ଏକ ଛପା ପ୍ରଶଂସାପତ୍ର ସହ ଏକ କାଶ୍ମିରୀ ଶାଲ ଓ ଦୁଇଶହ ଟଙ୍କା ମିଳିଥିଲା ।

ତାମ୍ରଫଳକର ନକଲ

ତା ୧୮ । ୩ । ୮୯

## ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର

ମାନନୀୟ ଶ୍ରୀଯୁକ୍ତ ବୀରବର ଦାଶ ମହୋଦୟ

ମହାଶୟ,

କବି, ଔପନ୍ୟାସିକ ଓ ଜୀବନୀକାର ଭାବରେ ଆପଣ ଯଶ ଅର୍ଜନ କରି ଅଛନ୍ତି । ବିଗତ ଅର୍ଦ୍ଧଶତାବ୍ଦୀ ଧରି ନିରବଚ୍ଛିନ୍ନ ଭାବରେ ସାରସ୍ୱତ ସାଧନାରେ ବ୍ରତୀ ହୋଇ ଆପଣ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ ଓ ପୁଷ୍କଳ କରି ଆସିଅଛନ୍ତି ।

ଏଣୁ ଆଜି ଏହି ଶୁଭ ଅବସରରେ ଓଡ଼ିଶା ସାହିତ୍ୟ ଏକାଡେମୀ ଆପଣଙ୍କର ସାରସ୍ୱତ ପ୍ରତିଭାକୁ କିଞ୍ଚିତ୍ ସମ୍ମାନ ଜ୍ଞାପନ କରିବାର ସୁଯୋଗ ଲାଭ କରି ନିଜକୁ ଗୌରବାନ୍ୱିତ ମନେ କରୁଛି ।

ସ୍ୱାଃନଃ ସୁରେନ୍ଦ୍ର ନାଥ ଶତପଥୀ
ସମ୍ପାଦକ
୧୮ । ୩ । ୮୯

ସ୍ୱାଃନଃ ମହାପାତ୍ର ନୀଳମଣି ସାହୁ
ସଭାପତି
୧୮ । ୩ । ୮୯

ଛପା ପ୍ରଶଂସା ପତ୍ରର ନକଲ

## ସାରସ୍ୱତ ସମ୍ବର୍ଦ୍ଧନା ଉତ୍ସବ

ମାର୍ଚ୍ଚ ୧୮, ୧୯୮୯

ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର – ୭୫୧୦୧୪

ଶ୍ରୀ ବୀରବର ଦାଶ

ଜନ୍ମ ତା ୨୩ । ୫ । ୧୯୧୫

( ଫଟୋ ) ଜନ୍ମସ୍ଥାନ – ରେମଣ୍ଡା

ସମ୍ବଲପୁର

ଶ୍ରୀ ଦାଶ କବି, ଔପନ୍ୟାସିକ, ଜୀବନୀକାର ଓ କ୍ଷୁଦ୍ରଗଳ୍ପ ଲେଖକ । ଅଦ୍ୟାବଧି ପ୍ରକାଶିତ ରଚନାବଳୀ ମଧ୍ୟରେ ପାଞ୍ଚଗୋଟି କାବ୍ୟ, ଗୋଟିଏ କବିତା ସଂକଳନ, ଛଅଗୋଟି ପଦ୍ୟାବଳୀ, ଦୁଇଗୋଟି କ୍ଷୁଦ୍ରଗଳ୍ପ ସଙ୍କଳନ, ତିନିଗୋଟି ଜୀବନୀ ଗ୍ରନ୍ଥ, ଗୋଟିଏ ଉପନ୍ୟାସ ଓ ଦୁଇଟି ଆଲୋଚନା ମୂଳକ ଗ୍ରନ୍ଥ ଅନ୍ତର୍ଭୁକ୍ତ । ଏହା ବ୍ୟତୀତ ତାଙ୍କର ଛଅଗୋଟି ପାଣ୍ଡୁଲିପି ଅପ୍ରକାଶିତ ଅବସ୍ଥାରେ ରହିଅଛି । ତାଙ୍କର ସାହିତ୍ୟକୃତି ପାଇଁ ସମ୍ବଲପୁର ଜିଲ୍ଲା ଲେଖକ ସମ୍ମେଳନ, ବିଶ୍ୱସେବା ଅନୁଷ୍ଠାନ, ସିଦ୍ଧେଶ୍ୱରୀ ଧର୍ମ ସଂସଦ, ବିଶାଳ ହୀରାଖଣ୍ଡ ସାହିତ୍ୟ ବିହାର ଇତ୍ୟାଦି ସାଂସ୍କୃତିକ ଅନୁଷ୍ଠାନ ମାନଙ୍କ ଦ୍ୱାରା ସେ ସମ୍ମାନିତ । ସମାଜ ସେବା ପାଇଁ ୧୯୬୨ ମସିହାରେ ଭାରତ ସରକାରଙ୍କ ଠାରୁ ସ୍ୱର୍ଣ୍ଣ ପଦକ ଓ ୧୯୬୪ ମସିହାରେ କୃତୀ ଶିକ୍ଷକ ଭାବରେ ସେ ଓଡ଼ିଶା ରାଜ୍ୟପାଳଙ୍କ ଠାରୁ ପୁରସ୍କାର ଲାଭ କରିଅଛନ୍ତି ।

ଉଲ୍ଲେଖନୀୟ ରଚନାବଳୀ — କୁମୁଦ୍ୱତୀ, ଅବିସ୍ମରଣୀୟ ମୁହୂର୍ତ୍ତ, ଉଲ୍ଲାସ ମୂର୍ଚ୍ଛନା, ନୀତି ମଞ୍ଜୁଷା, ମରୀଚିକାର ଭେଦ, ଐତିହାସିକ ଶିବ ପ୍ରସାଦ ଦାଶ, ପ୍ରେମର ପ୍ରତିଦାନ, ଆଧ୍ୟାତ୍ମିକ ସୌରଭ ଓ କୃଷ୍ଣପ୍ରେମ, ଯୁଗପଥେ ବ୍ରାହ୍ମଣ ଇତ୍ୟାଦି ।

ଗତ ତା ୨୨ । ୪ । ୮୯ ରେ 'ଆଧ୍ୟାତ୍ମିକ ସୌରଭ ଓ କୃଷ୍ଣପ୍ରେମ' ପୁସ୍ତକର ଉଦ୍‌ଘାଟନୀ ଉତ୍ସବ ବରଗଡ ନିଶାମଣି ହାଇସ୍କୁଲରେ ସ୍ଥାନୀୟ ମହିଳା ସଭ ଦ୍ୱାରା ହୋଇଥିଲା । ପୁସ୍ତକଟିର ପ୍ରକାଶକ ହେଉଛନ୍ତି ଶ୍ରୀ ସଂଗ୍ରାମ କେଶରୀ ଦାଶ, ଶିକ୍ଷକ, ବରଗଡ ।

ଏହି ସଭରେ ଶ୍ରୀମତୀ ଶୈବଳନୀ କର ସଭନେତ୍ରୀ, ଶ୍ରୀମତୀ ମାଳତୀ

ଶର୍ମା ଉପ ସଭନେତ୍ରୀ ଭବେ ସଭକାର୍ଯ୍ୟ ପରିଚ୍ଚଳନା କରିଥିଲେ । ଶ୍ରୀମତୀ ଚଞ୍ଚଳା ଆଚ୍ଚର୍ଯ୍ୟ ଓ ଶ୍ରୀମତୀ ଗୌରୀପ୍ରିୟା ମିଶ୍ର ସମ୍ମାନିତା ଅତିଥି ଭବେ ଯୋଗଦାନ କରିବା ସଙ୍ଗେ ସଙ୍ଗେ ଅଧ୍ୟାପକ ଶ୍ରୀ ରମାକାନ୍ତ ମିଶ୍ର ମୁଖ୍ୟବକ୍ତା ଭବେ ଅଂଶ ଗ୍ରହଣ କରିଥିଲେ । ଉଦ୍‌ଘାଟିକା ରୂପେ ଶ୍ରୀମତୀ ଶୈବଳନୀ କର ପ୍ରଥମେ ପବିତ୍ର ଗାୟତ୍ରୀ ମନ୍ତ୍ର ଉଚ୍ଚାରଣ କରି ସଭର ସମସ୍ତଙ୍କୁ ତାହା ବୋଲିବାକୁ ଅନୁରୋଧ କରି ଥିଲେ । ମନ୍ତ୍ରପାଠ ପରେ ପୁସ୍ତକଟିର ଉଦ୍‌ଘାଟନ କ୍ରିୟା ବିପୁଳ କରତାଳି ମାଧ୍ୟମରେ କରିଥିଲେ ।

ସଭନେତ୍ରୀଙ୍କ ନିର୍ଦ୍ଦେଶ କ୍ରମେ ମୁଖ୍ୟବକ୍ତା ତାଙ୍କର ଭଷଣ ଦୀର୍ଘ ସମୟ ଧରି ଦେଇଥିଲେ ।

ଭଟଲି କଲେଜର ଅଧ୍ୟକ୍ଷ ଶ୍ରୀ ନେତ୍ରାନନ୍ଦ ପୂଜାରୀ, ଅବସର ପ୍ରାପ୍ତ ସ୍କୁଲ ଡ:ଆଇ: ଶ୍ରୀ ଶଶୀଭୂଷଣ ଦାଶ ତଥା ପୁସ୍ତକର ଲେଖକ ଶ୍ରୀ ଦାଶ ପୁସ୍ତକଟିରେ ଲେଖାଥିବା ବିଷୟାବଳୀ ନେଇ ବିସ୍ତୃତ ଆଲୋଚନା କରିଥିଲେ ।

ସଭରେ ଉପସ୍ଥିତ ଥିବା ବିଶିଷ୍ଟ ବ୍ୟକ୍ତି ମାନଙ୍କ ମଧ୍ୟରୁ ସର୍ବଶ୍ରୀ ରାମଚନ୍ଦ୍ର ଶତପଥି, ଲେଙ୍ଗୁ ମିଶ୍ର, ଭଗବାନ ମିଶ୍ର, ଗୌରୀ ଶଂକର ପାଣିଗ୍ରାହୀ, ସମ୍ବଲପୁର, ଚନ୍ଦ୍ରଶେଖର ମିଶ୍ର, ଗଣେଶ ଚନ୍ଦ୍ର ସାହୁ ପ୍ରମୁଖ ଓ ମହିଳା ମାନଂକ ମଧ୍ୟରୁ ସର୍ବଶ୍ରୀମତୀ ସରୋଜିନୀ ପୂଜାରୀ, ଜନକନନ୍ଦନୀ ମିଶ୍ର, ଯଶୋଦା ମିଶ୍ର, ଯୋଗେଶ୍ୱରୀ ଦାଶ, ରୀତା ମିଶ୍ର, ବୀଣାପାଣି ଆଚ୍ଚର୍ଯ୍ୟ; ରତ୍ନଲତା ଆଚ୍ଚର୍ଯ୍ୟ, ସୀମା ମଜୁମଦାର, ମଞ୍ଜୁଶ୍ରୀ ମିଶ୍ର, କୁମୁଦିନୀ ମିଶ୍ର, ବସନ୍ତ ବାରିକ, ରେବତୀ ବାରିକ; ସରୋଜିନୀ ଦାଶ ଓ ଉଷା ପ୍ରସାଦ ସିଂହ ପ୍ରଭୃତିଂକ ଉପସ୍ଥିତି ବିଶେଷ ଉତ୍ସାହପ୍ରଦ ତଥା ଉଲ୍ଲେଖନୀୟ ଘଟଣା ଅଟେ ।

## ଏକ ଅଭୁଲା ସ୍ମୃତି

ମୋର ରଚିତ ପୁସ୍ତକ ଗୁଡକର ପ୍ରଚ୍ଚର ତଥା ପ୍ରସାର ନିମିତ୍ତ ଶ୍ରୀଯୁକ୍ତ ଶଶିଭୂଷଣ ଦାଶ, ପୂର୍ବତନ ସ୍କୁଲ ଡ. ଆଇ.ଙ୍କ ଉଦ୍ୟମ ଏକ ଅଭୁଲା ସ୍ମୃତି ଅଟେ ।

ସେ କଳାହାଣ୍ଡି ଜିଲ୍ଲାର ଧର୍ମଗଡ ଶିକ୍ଷାଜିଲ୍ଲାରେ ଜିଲ୍ଲା ପରିଦର୍ଶକ ଥିବା ବେଳେ ମୋର ଦୁଇ ଖଣ୍ଡ ପୁସ୍ତକ ସ୍ୱାମୀ ଜ୍ଞାନାନନ୍ଦ ସରସ୍ୱତୀ (ବୁଢଆ ବାବା) ଓ ନୀତି ମଂଜୁଷା ବିଭିନ୍ନ ସ୍କୁଲ ମାନଙ୍କରେ ରହିଥିବା ଶିକ୍ଷକମାନଙ୍କୁ ସେମାନଂକ ସ୍କୁଲ ଲାଇବ୍ରେରୀ ମାନଂକରେ କିଣି ରଖିବା ପାଇଁ ଏକ ପ୍ରକାର ଉଦ୍‌ବୋଧନ ମୂଳକ ପରାମର୍ଶ ଦେଇଥିଲେ ।

ଉକ୍ତ ଦୁଇଖଣ୍ଡ ପୁସ୍ତକର ଗୁଣାତ୍ମକ ମାନ ପରୀକ୍ଷା କରିବା ନିମିତ୍ତ ଏକ କମିଟି ମଧ୍ୟ ଗଠନ କରାଇ କମିଟିର ସୁଚିନ୍ତିତ ମତ ଆବଶ୍ୟକ କରିଥିଲେ । ଶିକ୍ଷକ ମାନଂକ ମଧ୍ୟରୁ ଏକ ନିର୍ବାଚୀତ କମିଟି ମଧ୍ୟ ଏଥିପାଇଁ ଗଠିତ ହୋଇ ଉପର୍ଯ୍ୟୁକ୍ତ ପୁସ୍ତକ ଦୁଇଟିର ଗୁଣାତ୍ମକ ମାନ ସମୀକ୍ଷା କରି ଯେଉଁ ରିପୋର୍ଟ ଦେଇଥିଲେ ତାହା ଅନୁକୂଳ ଭବାପନ୍ନ ହେବା ସଙ୍ଗେ ସଙ୍ଗେ ପୁସ୍ତକ ଦୁଇଟିର ପ୍ରସାର ନିମିତ୍ତ ଅଶେଷ ସହାୟକ ହୋଇଥିଲା ।

ଫଳରେ ସେଦିଗରେ ମୋର ସହସ୍ରାଧିକ ପୁସ୍ତକ ବିକ୍ରୟ ହୋଇ ପାରିଥିଲା । ସେହିପରି ସମୟ ଅନୁକ୍ରମେ ଉକ୍ତ ମହାଶୟ ଯେତେବେଳେ ବିଭାଗୀୟ ନିର୍ଦ୍ଦେଶମତେ ସମ୍ବଲପୁର ଜିଲ୍ଲାର ପଦ୍ମପୁର ଶିକ୍ଷା ଜିଲ୍ଲାକୁ ପରିବର୍ତ୍ତିତ ହୋଇ ଆସନ୍ତି ସେତେବେଳେ ମଧ୍ୟ ସେହିପରି ଏକ ସୁଯୋଗ ମୋ ଭାଗ୍ୟରେ ଟାଙ୍ଗରି ଦ୍ୱାରା ଘଟିଥିଲା ।

ଏହି ପରିପ୍ରେକ୍ଷୀରେ ଶ୍ରୀଯୁକ୍ତ ଦାଶ ମୋତେ ତାଂକର ଶିକ୍ଷାଜିଲ୍ଲା ଅନ୍ତର୍ଭୁକ୍ତ ଝାରବନ୍ଧର ଏକ ଶିକ୍ଷା ସମ୍ମିଳନୀକୁ ଡାକି ନେଇ ଏକ ବିରାଟ ଶିକ୍ଷକ ସମ୍ମିଳନୀରେ ଜଣେ ପୂର୍ବତନ କୃତୀ ଶିକ୍ଷକ ଭବେ ଏବଂ ଜନୈକ ବିଶିଷ୍ଟ କବି, ଗାଳ୍ପିକ ଓ ଲେଖକ ରୂପେ ଯେଉଁ ସମ୍ବର୍ଦ୍ଧନା ଦିଆଇଥିଲେ ତାହା ଥିଲା ମୋ ପକ୍ଷେ ଯେପରି ଆହ୍ଲାଦକର ବିଷୟ ସେହିପରି ଗୌରବାବହ ମଧ୍ୟ ।

ଗୁଣୀ, ମାନୀ ତଥା ବିଜ୍ଞ ବ୍ୟକ୍ତିମାନଂକର ପ୍ରତିଭା ପୂଜା କରିବା ତାଙ୍କର ଏକ ଅନନ୍ୟ ସାଧାରଣ ଗୁଣ । କାରଣ ସେ ଯେପରି ଜଣେ ବିଜ୍ଞମନା ଓ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଅନ୍ୟର ଗୁଣ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଓ କରାଇବା ତାଂକର ଏକ କର୍ତ୍ତବ୍ୟ ବୋଲି ସେ ମନେ କରିଥାନ୍ତି ।

ଶ୍ରୀଯୁକ୍ତ ଶଶିଭୂଷଣ ଦାଶ ଯେଉଁ ଜିଲ୍ଲାକୁ ଜିଲ୍ଲାଶିକ୍ଷା ପରିଦର୍ଶକ ଭାବେ ଯାଇଛନ୍ତି ସେହିସବୁ ଶିକ୍ଷାଜିଲ୍ଲାର ଶିକ୍ଷକଗଣଂକ ଶିକ୍ଷାର ମାନ ବୃଦ୍ଧି କରି ଛାତ୍ର ସମାଜର ପ୍ରଭୂତ ଉନ୍ନତି କରିବା ନିମିତ୍ତ ଆପ୍ରାଣ ଉଦ୍ୟମ କରି ଆସିଥିବାର ଦୃଷ୍ଟାନ୍ତ ରହି ଆସିଅଛି ।

ଶିକ୍ଷକ ସମାଜକୁ ଉନ୍ନତ ପୁସ୍ତକ ପାଠ କରିବା ଏବଂ କେଉଁ ବିଶିଷ୍ଟ ପୁସ୍ତକ ଗୁଡକ ପାଠକଲେ ଶିକ୍ଷକମାନେ ଉନ୍ନତ ତଥା ବିଶିଷ୍ଟ ଜ୍ଞାନର ଅଧିକାରୀ ହୋଇ ପାରିବେ ସେଥିପାଇଁ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରି ସେ ବିଭିନ୍ନ କେନ୍ଦ୍ର ସ୍କୁଲ ସଭମାନଂକରେ ଉପଦେଶ ମାନ ଦେଉଥାନ୍ତି । ଏହିପରି ଭାବେ ଓଡ଼ିଶାର ବିଭିନ୍ନ ବିଶିଷ୍ଟ ଲେଖକ ମାନଂକର ଲିଖିତ ପୁସ୍ତକ ଗୁଡ଼ିକର ଏକ ତାଲିକା ସେ ଶିକ୍ଷକମାନଙ୍କ ଆଗରେ ଲିଖିତ ଆକାରରେ ଉପସ୍ଥାପନ କରିଥିଲେ ।

ସୁଖର କଥା ସେହି ଲେଖକମାନଂକ ପୁସ୍ତକମାନଂକ ମଧ୍ୟରେ ମୋର ମଧ୍ୟ ଏକାଧିକ ପୁସ୍ତକ ସ୍ଥାନ ପାଇଥିଲା । ଫଳରେ ପଦ୍ମପୁର ଶିକ୍ଷାଜିଲ୍ଲାର ଶିକ୍ଷକ ସମାଜର ଜନୈକ ଶିକ୍ଷକ ପ୍ରତିନିଧି ମୋ ନିକଟକୁ ଆସି ବହୁ ପୁସ୍ତକ ମୋ ଠାରୁ କ୍ରୟ କରିନେବା ଦ୍ୱାରା ମୁ ସେହି କ୍ଷେତ୍ରରେ ଅଶେଷ ଉପକୃତ ହୋଇଥିଲି ।

ଜଣେ ଲେଖକ ଘବେ ଏ ପ୍ରକାର ସୁଯୋଗ ଶ୍ରୀଯୁକ୍ତ ଦାଶ ମୋତେ କରାଇ ଦେଇ ପାରିଥିବା ହେତୁ ମୋର ଲେଖକ ଜୀବନରେ ତାହା ଏକ ଅତୁଳ ସ୍ମୃତି ରୂପେ ରହି ଆସିଅଛି ।

# ଶେଷୋକ୍ତ ଅଭିବ୍ୟକ୍ତି

**ମୋ**ର ପଞ୍ଚସ୍ତରୀ ବର୍ଷ ଜୀବନ କାଳ ମଧ୍ୟରେ ବହୁ ସୁଖ, ଦୁଃଖ, ମାନ, ସମ୍ମାନ, ଆନନ୍ଦ, ନିରାନନ୍ଦ, ଘାତ, ପ୍ରତିଘାତ ଜନିତ ନାନାବିଧ ଘଟଣାମାନ ଯେ ଘଟି ଯାଇଛି ସେ ସବୁ ବିଷୟ ମୋର ଅନ୍ତର-ପୁସ୍ତକରେ ଲିପିବଦ୍ଧ ହୋଇ ରହି ଆସିଅଛି ତାକୁ ଲିଖିତ ଆକାରରେ ପ୍ରକାଶ କଲେ ଯେ ଏକ ବୃହତ୍ ପୁସ୍ତକ ହୋଇଯିବ ଏହା ନିଃସନ୍ଦେହ । ତାପର ସେହି ସମସ୍ତ ଘଟଣା ରାଜିର ଟିକିନିଖି ବିବରଣୀ ପ୍ରଦାନ କଲେ ଘଟଣା ସଂପୃକ୍ତ ବହୁ ବ୍ୟକ୍ତି ଲଜ୍ଜାବୋଧ କରିବେ । ଫଳରେ ତଦ୍ୱାରା କାହାରି କିଛି ଲାଭ ହେବ ନାହିଁ । ବରଂ ଲେଖକ ପ୍ରତି କେତେକ ପାଠକ ବିସ୍ମୟ ମନୋଭବ ତଥା ସହାନୁଭୂତି ପ୍ରଦର୍ଶନ କରିବେ ସିନା କାହାରି କିଛି ଲାଭ ହେବ ନାହିଁ । ତେଣୁ ବହୁ ଅତୀତ କଥାର ତିକ୍ତ ଅନୁଭୂତିର ମୁ ପୁନରାବୃତ୍ତି ନ କରି ଏ ସମ୍ପର୍କରେ ସଂକ୍ଷେପରେ କେବଳ ଏତିକି ସୂଚନା ଦେବି ଯେ ମୋ ଜୀବନରେ ସୁଖ ପାଇବା ଅପେକ୍ଷା ଦୁଃଖର ମାତ୍ରା ସମଧିକ ଅଟେ । ମଣିଷ ଜୀବନ ହାର ଜିତ୍ ଖେଳର ଏକ ରୂପାନ୍ତର ମାତ୍ର ।

କାହାରି ଭାଗ୍ୟରେ ନିରବଚ୍ଛିନ୍ନ ସୁଖ ବା ଦୁଃଖ ଘଟେ ନାହିଁ । କେତେକ ମୁଷ୍ଟିମେୟ ବ୍ୟକ୍ତି ଅବଶ୍ୟ ଏଥିରୁ ବଞ୍ଚିତ ହୋଇଥାନ୍ତି । ଭୌତିକବାଦୀ ମାନେ ଏ କଥାକୁ ବୁଦ୍ଧିର ଉତ୍କର୍ଷ ବା ଅପକର୍ଷ କହିଥାନ୍ତି । ଆଧ୍ୟାତ୍ମିକ ବାଦୀ ମାନେ ଏହାକୁ ପ୍ରାରବ୍ଧ ବୋଲି କହିବା ଶୁଣାଯାଏ ।

ମୋର ପ୍ରାକ୍ ଯୌବନ କାଳରୁ ମୁ ଭୌତିକବାଦ ଅର୍ଥାତ୍ ନିଜର ପୌରଷେୟ ଉପରେ ଆସ୍ଥା ସ୍ଥାପନ କରି ଆସିଛି । ୟୁରେପୀୟ ମାନେ ଯେପରି ଭବନ୍ତି "ଜଣେ ମଣିଷ ଯାହା କରି ପାରିଛି ଚେଷ୍ଟା କଲେ ଆଉ ଜଣେ ତାହା

ନିଶ୍ଚିତ ରୂପେ କରି ପାରିବ" । ଏହି ନୀତିକୁ ମୁ ଚିରଦିନ ସମର୍ଥନ କରି ଆସିଛି ।

ଦୃଢ଼ ମନୋବଳ ଥିବା ବ୍ୟକ୍ତି ସ୍ୱକୀୟ ଉଦ୍ୟମ ଯୋଗୁଁ ସବୁ କାର୍ଯ୍ୟରେ ସଫଳତା ଲାଭ କରିପାରେ ।

ମୋର ମୁଖ୍ୟଧନ୍ଦା ଶିକ୍ଷକତା ଏହା ସ୍ୱୀକାର୍ଯ୍ୟ । ହେଲେ ମଧ୍ୟ ମୁ ସ୍ୱକୀୟ ଉଦ୍ୟମରେ କବିରାଜୀ, ଜ୍ୟୋତିଷ, ତଥା କର୍ମକର୍ମାଣୀ (ଯାହା ବୈଦିକ ରୀତିରେ ପୁରୋହିତ ମାନେ କରିଥାନ୍ତି) ଆଦି ବିଦ୍ୟା ହାସଲ କରିବାରେ ପଟୁତା ଲାଭ କରି ପାରିଛି । ଏହି ବିଦ୍ୟାରେ ଦକ୍ଷତା ଅର୍ଜନ କରିବା ବ୍ୟକ୍ତିଗତ ପ୍ରଚେଷ୍ଟାରେ କାଠିକର ପାଠ । ପ୍ରତ୍ୟେକ ବିଦ୍ୟା ନିମିତ୍ତ ଜଣେ ଜଣେ ଉପଯୁକ୍ତ ଗୁରୁ ଆବଶ୍ୟକ । କାରଣ ଏଥିପାଇଁ କୌଣସି ଅନୁଷ୍ଠାନ ଖୋଲା ଯାଇନାହିଁ । ଅତୀତରେ ପିତା ପୁତ୍ରକୁ ବା ସେହି ପରି କୌଣସି ବ୍ୟକ୍ତି ବିଶେଷ ତାହା ଶିଷ୍ୟ ମାନଙ୍କୁ ବିଶେଷ ସ୍ୱାର୍ଥ ସାଧନ ହାସଲ ପୂର୍ବକ ଏହି ସମସ୍ତ ବିଦ୍ୟା ଶିକ୍ଷା ପ୍ରଦାନ କରୁଥିଲେ । ସାଧାରଣତଃ ଏହା ଅର୍ଥକାରୀ ବିଦ୍ୟା ହୋଇଥିବା ଯୋଗୁଁ ଏଥିପାଇଁ ଗୁରୁ ଶିଷ୍ୟ ମଧ୍ୟରେ ଅନୁଦାର ମନୋଭାବ ଦେଖା ଦେଇଥାଏ ।

ତଥାପି ଦୃଢ଼ ମନୋବଳ ନେଇ ମୁ ସେହି ତିନିଗୋଟି ବିଦ୍ୟା ଯେପରି ଭାବରେ ଆୟତ୍ତ କଲି ତାହା ବାସ୍ତବିକ ଏକ ଆଶ୍ଚର୍ଯ୍ୟ ଜନକ ବ୍ୟାପାର । ପ୍ରତ୍ୟେକ କଠିନ ସମସ୍ୟାରେ ପଡ଼ି ମୁ ମୋର ସ୍ୱର୍ଗତ ପିତା ମାତାଙ୍କର ତଥା ପିତାମହୀଙ୍କର ଆଶୀର୍ବାଦ ମୋ ଉପରେ ଅଛି ମୁ ନିଶ୍ଚିତ ଭାବେ ଏହା ହାସଲ କରିବି ବୋଲି ଅଗ୍ରସର ହୋଇ ଶେଷରେ ସଫଳତା ଯେ ପାଇଛି ତାହା ତାଙ୍କରି କରୁଣାର ନିଦର୍ଶନ ବୋଲି ମନେ କରେ ।

ଉପରୋକ୍ତ ତିନୋଟି ବିଦ୍ୟା ଶିକ୍ଷା କରିବା ଯୋଗୁଁ ମୁ ବର୍ଷକୁ ସହସ୍ରାଧିକ ଅର୍ଥ ଉପାର୍ଜନ କରିବାକୁ ସମର୍ଥ ହୋଇ ପାରିଅଛି ।

ଆମ ବଂଶରେ ଯେଉଁ କାର୍ଯ୍ୟ ଗୁଡ଼ିକ କେହି କରି ପାରି ନ ଥିଲେ ସେହି ସମସ୍ତ କାର୍ଯ୍ୟ ମୁ ଅକ୍ଳେଶରେ ନିଜ ଉଦ୍ୟମରେ କରି ପାରିଥିବା ଯୋଗୁଁ ଆଜି ଆତ୍ମ ପ୍ରସାଦ ଲାଭ କରୁଅଛି ।

ସମଗ୍ର ଜୀବନ ମୁ ଅଭାବର ତାଡ଼ନାରେ ପ୍ରପୀଡ଼ିତ ହୋଇ ମଧ୍ୟ କୌଣସି କାମ କରିବାକୁ ଯାଇ ମୁ ଅର୍ଥର ଅଭାବ କେବେ ଅନୁଭବ କରିନାହିଁ । ନୈରାଶ୍ୟ ବା ହତାଶ ମନୋଭାବ ମୋର ଅନ୍ତରକୁ କେବେ ମଧ୍ୟ ସ୍ପର୍ଶ କରିନାହିଁ ।

ଜୀବନ ସଂଗ୍ରାମରେ ମୋ ଉପରେ ବହୁବିଧ ମାଲି ମୋକଦ୍ଦମା ଯଥା ଦେଓ୍ୱାନି, ଫୌଜଦାରୀ, ଭରଣ ପୋଷଣ, ମାନହାନି ଆଦି ମୋକଦ୍ଦମା ଗୁଡ଼ିକ ପଡ଼ିଥିଲା ।

ସୁଖର କଥା କୌଣସି ଗୋଟିକରେ ମଧ୍ୟ ମୋତେ କୌଣସି ଦଣ୍ଡ ବା ଜରିବାନା ଆଦି ଦେବାକୁ ପଡନାହିଁ । ପ୍ରତ୍ୟେକ ପ୍ରକାର ମୋକଦମା ଗୁଡକ ସୁରୁଖୁରୁ ଉତ୍ତମ ସମାଧାନ ହୋଇ ଯାଇଥିବା ଘଟଣା ଯୋଗୁଁ ମୋ ଉପରକୁ କୌଣସି ପ୍ରକାର ଆଞ୍ଚ ଆସି ପାରି ନାହିଁ ।

ଭଗ୍ୟର ବିଡମ୍ବନା ଯୋଗୁଁ ହେଉ ଅବା ଭଗବାନଙ୍କ ଆଶୀର୍ବାଦ ହେତୁ ହେଉ ମୁଁ ଆଜି ମୋ ନିଜ ଜନ୍ମଭୂମି ରେମଣ୍ଡା ଗ୍ରାମରୁ ଆସି ବରଗଡରେ ଅବସ୍ଥାନ କରୁ ଅଛି । ରେମଣ୍ଡାରୁ ମୁ ଯେଉଁ ପରିସ୍ଥିତିରେ ପଡ ବରଗଡ ଆସିଲି ତାହା ଅନ୍ୟତ୍ର ବର୍ଣ୍ଣିତ ହୋଇଛି । ରେମଣ୍ଡା ଠାରୁ ବରଗଡ ଅବସ୍ଥାନ ମୋ ପକ୍ଷେ ସୁଖ ଓ ଶାନ୍ତିର ଅନ୍ୟତମ କାରଣ ଅଟେ ଏହା ସତ୍ୟ, ହେଲେ ମଧ୍ୟ ବେଳେ ବେଳେ ଜନ୍ମଭୂମିର ମାୟା, ସେଠାକାର ପରିବେଶ ମୋ ମନକୁ ବ୍ୟାକୁଳିତ କରି ଦେଉଅଛି ।

ମୋର ଜୀବନ ସାୟାହ୍ନରେ ମୁ ଯେଉଁ ଜୀବନୀ ଲେଖିଗଲି ଜାଣେନା ଜୀବନ ବର୍ତ୍ତି ପାହିବା ପୂର୍ବରୁ ମୋର ଜୀବନ ପ୍ରଦୀପ କେତେ ସମୟ ଯାଏ ପ୍ରଜ୍ୱଳିତ ଥିବ ତଥାପି ଯଦି ସୁବିଧା ସୁଯୋଗ ମିଳିବ ତେବେ ୟା ପରେ ୟାର ପରବର୍ତ୍ତୀ ଅଧ୍ୟାୟ ଲିପିବଦ୍ଧ କରିବାକୁ ବାସନା ରଖି ଆଜି ଏଠିକିରେ ଏହି ଜୀବନୀ ଗ୍ରନ୍ଥ ମୋର ୭୫ ବର୍ଷ ବୟସର ଜନ୍ମ ଦିବସ (ସ୍ୱନକ୍ଷତ୍ର)ରେ ସମାପ୍ତ କରୁଅଛି ।

ଆଷାଢ଼ କୃଷ୍ଣ ନବମୀ ମଙ୍ଗଳବାର
ତା ୨୭ । ୬ । ୮୯